

ନୂଆଦିଲ୍ଲୀଠାରେ ଆୟୋଜିତ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୨୩ରେ ସ୍ଥାନିତ ଓଡ଼ିଶା ମଣ୍ଡପ ଶ୍ରେଷ୍ଠ ମଣ୍ଡପ ଭାବେ ହାସଲ କରିଥିବା **ସ୍ୱର୍ଣ୍ଣ ପଦକ** ସହ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏବଂ ମାନ୍ୟବର ସୂଚନା ଓ ଲୋକସଂପର୍କ ମନ୍ତ୍ରୀ ଶ୍ରୀ ପ୍ରଦିପ କୁମାର ଅମାତ । ଏହି ଅବସରରେ ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀ ସଂଜୟ କୁମାର ସିଂ ଏବଂ ନିର୍ଦ୍ଦେଶକ ଶ୍ରୀ ସରୋଜ କୁମାର ସାମଲ ଉପସ୍ଥିତ ଅଛନ୍ତି ।



ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଆୟୋଜିତ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୨୩ ଅବସରରେ ଓଡ଼ିଶା ରାଜ୍ୟ ଦିବସ ସମାରୋହରେ ମାନ୍ୟବର ସୂଚନା ଓ ଲୋକସଂପର୍କ ମନ୍ତ୍ରୀ ଶ୍ରୀ ପ୍ରଦିପ କୁମାର ଅମାତ *ଉତ୍କଳ ପ୍ରସଙ୍ଗ* ଓ *ଓଡ଼ିଶା ରିଭ୍ୟୁ*ର ସ୍ୱତନ୍ତ୍ର ବିଶେଷାଙ୍କ ଉନ୍ମୋଚନ କରୁଛନ୍ତି । ଏହି ଅବସରରେ ଓଟିଡିସିର ଅଧ୍ୟକ୍ଷ ଡ. ଲେନିନ୍ ମହାନ୍ତି, ନିର୍ଦ୍ଦେଶକ ଶ୍ରୀ ସରୋଜ କୁମାର ସାମଲ, ପତ୍ରିକା ଦ୍ୱୟର ସଂପାଦିକା କସ୍ତୁରୀ ମହାପାତ୍ର ଏବଂ ବିଶିଷ୍ଟ ବ୍ୟକ୍ତିବିଶେଷ ଉପସ୍ଥିତ ଅଛନ୍ତି ।

# ଉତ୍କଳ ପ୍ରସଙ୍ଗ


**The Utkal Prasanga**

**December - 2023**

୮୦ ଭାଗ ୫ମ ସଂଖ୍ୟା ମାର୍ଗଶିର-ପୌଷ ଡିସେମ୍ବର-୨୦୨୩



ସଂଜୟ କୁମାର ସିଂ, ଆଇ.ଏ.ଏସ୍

ପ୍ରମୁଖ ଶାସନସଚିବ

ସରୋଜ କୁମାର ସାମଲ, ଆଇ.ଏ.ଏସ୍

ନିର୍ଦ୍ଦେଶକ

କସ୍ତୁରୀ ମହାପାତ୍ର

ସମ୍ପାଦିକା

ସମ୍ପାଦନା ସହଯୋଗୀ

ସଚ୍ଚିଦାନନ୍ଦ ବାରିକ

ସାଧନା ମିଶ୍ର

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ

ମାନସ ନାୟକ

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ

ଅରୁଣ କୁମାର କର

ଫଟୋ :

ରାଜୁ ସିଂ, ନିରଞ୍ଜନ ବରାଳ

ମନୋରଂଜନ ମହାନ୍ତି, ସନ୍ତୋଷ କୁମାର ସାହୁ


---


'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ଡିସେମ୍ବର–୨୦୨୩





**ବିଶ୍ୱ ମତ୍ସ୍ୟ ଦିବସ ଅବସରରେ**

# ‘ମୁଖ୍ୟମନ୍ତ୍ରୀ ମତ୍ସ୍ୟଜୀବୀ କଲ୍ୟାଣ ଯୋଜନା’ର ଶୁଭାରମ୍ଭ



ବିଶ୍ୱ ମତ୍ସ୍ୟ ଦିବସ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟବାସୀଙ୍କ ପାଇଁ ‘ମୁଖ୍ୟମନ୍ତ୍ରୀ ମତ୍ସ୍ୟଜୀବୀ କଲ୍ୟାଣ ଯୋଜନା’ ଆରମ୍ଭ କରିଛନ୍ତି । ଏହି ଯୋଜନାରେ ମତ୍ସ୍ୟଜୀବୀମାନଙ୍କ ପାଇଁ ୧୬ଟି କାର୍ଯ୍ୟକ୍ରମ ରହିଛି ଏବଂ ଏ ବର୍ଷ ଏଥିପାଇଁ ୪୪୮ କୋଟି ଟଙ୍କା ଖର୍ଚ୍ଚ କରାଯିବ ।

ଯୋଜନାର ଶୁଭାରମ୍ଭ କରି ମୁଖ୍ୟମନ୍ତ୍ରୀ ମତ୍ସ୍ୟଜୀବୀ, ମତ୍ସ୍ୟଚାଷୀ ଓ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ନିବେଦନ କରି କହିଛନ୍ତି ଯେ ଆପଣମାନଙ୍କ କଲ୍ୟାଣ ଓ ବିକାଶ ପାଇଁ ଏହି ଯୋଜନା ଆରମ୍ଭ କରାଯାଇଛି । ଆପଣମାନେ ଏହାର ସୁଯୋଗ ନେଇ ନିଜର ଓ ରାଜ୍ୟର ସମୃଦ୍ଧିରେ ଯୋଗଦାନ ରଖନ୍ତୁ ।

- ରାଜ୍ୟ ସରକାରଙ୍କ 5T ଉପକ୍ରମରେ କାର୍ଯ୍ୟକାରୀ ହେବ
- ଯୋଜନାରେ ରହିଛି ୧୬ଟି କାର୍ଯ୍ୟକ୍ରମ, ଚଳିତ ବର୍ଷ ଖର୍ଚ୍ଚ ହେବ ୪୪୮ କୋଟି
- ଉପକାର ପାଇବେ ଏକ ଲକ୍ଷରୁ ଅଧିକ ମତ୍ସ୍ୟଜୀବୀ, ୫୦ ହଜାରରୁ ଅଧିକ ମତ୍ସ୍ୟଚାଷୀ ଓ ୧୧ ହଜାର ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ
- ଆମ ଜଳ ସଂପଦର ପୂର୍ଣ୍ଣ ବିନିଯୋଗ ଆମର ଲକ୍ଷ୍ୟ
- ମତ୍ସ୍ୟଜୀବୀମାନଙ୍କୁ ଯୋଜନାର ସୁଯୋଗ ନେବାକୁ ମୁଖ୍ୟମନ୍ତ୍ରୀଙ୍କ ଆହ୍ୱାନ

ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆମ ରାଜ୍ୟରେ ପ୍ରଚୁର ଜଳସଂପଦ ରହିଛି । ଅର୍ଥନୀତିର ବିକାଶ ପାଇଁ ଜଳସଂପଦର ପୂର୍ଣ୍ଣ ବିନିଯୋଗ ଆମର ଲକ୍ଷ୍ୟ ବୋଲି ସେ କହିଥିଲେ । ମୁଖ୍ୟମନ୍ତ୍ରୀ ପୁଣି କହିଥିଲେ ଯେ ଏହି ଯୋଜନାର ମୁଖ୍ୟ ଲକ୍ଷ୍ୟ ହେଉଛି, ମତ୍ସ୍ୟ ଉତ୍ପାଦନ ବୃଦ୍ଧି କରିବା, ସେମାନଙ୍କ ପାଇଁ ରୋଜଗାର ସୁଯୋଗ ସୃଷ୍ଟି କରିବା, ମା’ମାନଙ୍କୁ ସଶକ୍ତ କରିବା ଏବଂ ସର୍ବୋପରି ରାଜ୍ୟର ଆର୍ଥିକ ବିକାଶ କରିବା ।

‘ମୁଖ୍ୟମନ୍ତ୍ରୀ ମତ୍ସ୍ୟଜୀବୀ କଲ୍ୟାଣ ଯୋଜନା’ ଏ ସବୁ କାର୍ଯ୍ୟକ୍ରମକୁ ଆହୁରି ଆଗକୁ ନେବ ବୋଲି କହିଥିଲେ । ଏହି କାର୍ଯ୍ୟକ୍ରମ ଆମର 5T ନୀତିରେ କାର୍ଯ୍ୟକାରୀ କରାଯିବ । ଏଥିରେ ୧୧,୦୦୦ରୁ ଅଧିକ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ, ୫୦ ହଜାର ମାଛ ଚାଷୀ ଓ ଏକ ଲକ୍ଷରୁ ଅଧିକ ମତ୍ସ୍ୟଜୀବୀ ଉପକାର ପାଇବେ ବୋଲି ସେ କହିଥିଲେ ।

ରାଜ୍ୟରେ ମତ୍ସ୍ୟ ବିକାଶ କ୍ଷେତ୍ରରେ ହୋଇଥିବା ଉନ୍ନତି ସଂପର୍କରେ ଆଲୋକପାତ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଗତ ୨୦ ବର୍ଷ ଭିତରେ ରାଜ୍ୟରେ ମତ୍ସ୍ୟ ଉତ୍ପାଦନ ଚାରି ଗୁଣ ବୃଦ୍ଧି ପାଇଛି । ସାମୁଦ୍ରିକ ମତ୍ସ୍ୟ ରପ୍ତାନି ୪୫୦୦ କୋଟି ଟଙ୍କାରେ ପହଞ୍ଚିଛି । ମତ୍ସ୍ୟ ଉତ୍ପାଦନ ବୃଦ୍ଧି ପାଇଁ 'ଓଡିଶା ମତ୍ସ୍ୟନୀତି-୨୦୧୫' ଏବଂ 'ଓଡିଶା ଜଳଭଣ୍ଡାର ମତ୍ସ୍ୟନୀତି-୨୦୧୨' ଆଣିବାରେ ଓଡିଶା ଦେଶର ପ୍ରଥମ ରାଜ୍ୟ ବୋଲି ସେ କହିଥିଲେ । ଓଡିଶା ଆଜି ମାଛ ଯାଆଁଳ ଉତ୍ପାଦନରେ ଆତ୍ମନିର୍ଭର ହୋଇପାରିଛି ବୋଲି ସେ କହିଥିଲେ ।

ମତ୍ସ୍ୟଜୀବୀମାନଙ୍କ କଲ୍ୟାଣ ପାଇଁ ଏବଂ ଗରିବ ଲୋକଙ୍କ କଲ୍ୟାଣ ପାଇଁ ମୋ ସରକାର କାମ କରୁଛନ୍ତି ବୋଲି ମତଦେଇ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆପଣମାନଙ୍କ ସାମାଜିକ ସୁରକ୍ଷା, ଖାଦ୍ୟ ସୁରକ୍ଷା, ରୋଜଗାର ଓ ପୁଷ୍ଟିକୁ ଅଧିକ ଗୁରୁତ୍ୱ ଦେଇ ଅନେକ ପଦକ୍ଷେପ ନିଆଯାଇଛି ।

କାର୍ଯ୍ୟକ୍ରମରେ ଯୋଗ ଦେଇ ମତ୍ସ୍ୟ ଓ ପ୍ରାଣିସଂପଦ ବିଭାଗ ମନ୍ତ୍ରୀ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ କହିଲେ ଯେ, ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହେଉଛନ୍ତି ଜନତାଙ୍କ ମୁଖ୍ୟମନ୍ତ୍ରୀ । ଜନତାଙ୍କ କଲ୍ୟାଣ ପାଇଁ ସେ ସବୁବେଳେ ନୂଆ ନୂଆ ଯୋଜନା କରିଆସିଛନ୍ତି । ଆଜି ବିଶ୍ୱ ମତ୍ସ୍ୟ ଦିବସରେ ଏହି ଯୋଜନା ରାଜ୍ୟର ମତ୍ସ୍ୟ କ୍ଷେତ୍ରରେ ରୂପାନ୍ତର ଆଣିବାରେ ସହାୟକ ହେବ ବୋଲି ସେ କହିଥିଲେ । ଏହି ଯୋଜନାର ବିଭିନ୍ନ ଆଭିମୁଖ୍ୟ ସଂପର୍କରେ ଶ୍ରୀ ସ୍ୱାଇଁ ବିସ୍ତୃତ ସୂଚନା ଦେଇଥିଲେ ।

ଏହି କାର୍ଯ୍ୟକ୍ରମରେ ନିଜର ଅଭିଜ୍ଞତା ବର୍ଣ୍ଣନା କରି ଗଞ୍ଜାମ ଜିଲ୍ଲାର ମତ୍ସ୍ୟଜୀବୀ ଶ୍ରୀ ବ୍ରହ୍ମାନନ୍ଦ ଦାସ କହିଲେ ଯେ, କୋଭିଡ ସମୟରେ ତାଙ୍କର ରୋଜଗାର ବନ୍ଦ ହୋଇଯିବାରୁ ସେ ମତ୍ସ୍ୟଜୀବୀମାନଙ୍କ ପାଇଁ Bioflock ଯୋଜନାରେ ୪୦ ପ୍ରତିଶତ ରିହାତି ପାଇ ମାଛଚାଷ ଆରମ୍ଭ କରିଥିଲେ । ଏବେ ସେ ଲକ୍ଷାଧିକ ଟଙ୍କା ରୋଜଗାର କରି ସ୍ୱାବଲମ୍ବୀ ହୋଇପାରିଛନ୍ତି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିଥିଲେ ।

ସେହିପରି ବାଲେଶ୍ୱରର ଗୀତାରାଣୀ ପଣ୍ଡା କହିଥିଲେ ଯେ, ତାଙ୍କ ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ ପଞ୍ଚାୟତ ପୋଖରୀ ଯୋଜନାରେ ସେମାନ ଋଣ ନେଇ ଏବେ ବର୍ଷକୁ ୫ ଲକ୍ଷ ଟଙ୍କା ଲାଭ କରୁଛନ୍ତି ।

ଏହାଦ୍ୱାରା ସେମାନଙ୍କର ଆର୍ଥିକ ସମସ୍ୟା ଦୂର ହୋଇପାରିଛି ବୋଲି ସେ କହିଥିଲେ ଏବଂ ମୁଖ୍ୟମନ୍ତ୍ରୀଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିଥିଲେ ।

ପୁରୀ ଜିଲ୍ଲାର ବ୍ରଜସୁନ୍ଦର ବେହେରା କହିଲେ ଯେ, ସେ ଜଣେ ସାମୁଦ୍ରିକ ମତ୍ସ୍ୟଜୀବୀ । ଅଲିଭ ରିଡ୍ଲେ କଇଁଚ ପାଇଁ ତାଙ୍କର ଜୀବିକା ପ୍ରଭାବିତ ହେଉଥିଲା । ଏଥିପାଇଁ ସହାୟତା ପରିମାଣକୁ ମୁଖ୍ୟମନ୍ତ୍ରୀ ୭୫୦୦ ଟଙ୍କାରୁ ୧୫ ହଜାର ଟଙ୍କା ବୃଦ୍ଧି କରିଥିବାରୁ, ତାଙ୍କ ପରିବାର ଆଜି ସୁରକ୍ଷିତ ହୋଇପାରିଛି ବୋଲି କହି ସେ ମୁଖ୍ୟମନ୍ତ୍ରୀଙ୍କୁ ଧନ୍ୟବାଦ ଦେଇଥିଲେ ।

କାର୍ଯ୍ୟକ୍ରମରେ ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ଜେନା, ଉନ୍ନୟନ କମିଶନର ଶ୍ରୀମତୀ ଅନୁ ଗର୍ଗ, ସମବାୟ ସଚିବ ଶ୍ରୀ ଅରବିନ୍ଦ ଅଗ୍ରୱାଲ, କୃଷି ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ପ୍ରଭାତ କୁମାର ରାଉଳ ଓ ଅନ୍ୟ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ । ଏହି କାର୍ଯ୍ୟକ୍ରମରେ ବିଭିନ୍ନ ଜିଲ୍ଲାରେ ଜିଲ୍ଲାପାଳ ଓ ମତ୍ସ୍ୟଜୀବୀମାନେ ଅନ୍‌ଲାଇନ୍ ଜରିଆରେ ଯୋଡି ହୋଇଥିଲେ ।

ଏହି କାର୍ଯ୍ୟକ୍ରମରେ ବିଭାଗୀୟ ପ୍ରମୁଖ ସଚିବ ଶ୍ରୀ ସୁରେଶ କୁମାର ବଶିଷ୍ଠ ସ୍ୱାଗତ ଭାଷଣ ଦେଇଥିଲେ ଓ ମତ୍ସ୍ୟ ନିର୍ଦ୍ଦେଶକ ଧନ୍ୟବାଦ ଅର୍ପଣ କରିଥିଲେ ।



# ‘ସହରର ବିକାଶରେ ବସ୍ତି ଲୋକଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି’ – ମୁଖ୍ୟମନ୍ତ୍ରୀ




ଭୁବନେଶ୍ୱରର ବସ୍ତିବାସିନ୍ଦା ଓ ଗରିବ ଲୋକଙ୍କୁ ମିଳିଛି ରହିବା ପାଇଁ ଘର । ଆଶ୍ରୟ ଅଧିକାର । ସମ୍ମାନର ସହ ବଞ୍ଚିବାର ଅଧିକାର ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱରରେ ବସ୍ତିବାସିନ୍ଦାଙ୍କ ପାଇଁ ୩ଟି ‘ସୁଲଭ ବାସଗୃହ ପ୍ରକଳ୍ପ’ ଲୋକାର୍ପିତ କରିଛନ୍ତି । ଏହି ପ୍ରକଳ୍ପ ଗୁଡିକ ହେଲା– ଚନ୍ଦ୍ରଶେଖରପୁର ବୁଦ୍ଧବିହାରରେ ସୁଲଭ ବାସଗୃହ, ସତ୍ୟନଗର ଶାନ୍ତିପଲ୍ଲୀରେ ବସ୍ତି ପୁନଃବିକାଶ ପ୍ରକଳ୍ପ ଓ ସୁବୁଦ୍ଧିପୁରରେ ସୁଲଭ ବାସଗୃହ ପ୍ରକଳ୍ପ । ଏହିସବୁ ପ୍ରକଳ୍ପ ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ ହିତାଧିକାରୀମାନଙ୍କୁ ନୂଆ ଘରର ଚାବି ହସ୍ତାନ୍ତର କରିଛନ୍ତି । ଏହି ୩ଟି ପ୍ରକଳ୍ପରେ ସମୁଦାୟ ୧୭୨୨ ଜଣ ହିତାଧିକାରୀ ଘର ପାଇଛନ୍ତି । ଏହି ସମସ୍ତ ପ୍ରକଳ୍ପ ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷଙ୍କ ଦ୍ୱାରା ନିର୍ମାଣ କରାଯାଇଛି ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, ସହରର ବିକାଶରେ ବସ୍ତିଲୋକଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ଏବଂ ଗରିବ ଲୋକମାନଙ୍କୁ ନୂଆ ଘର ଭଲ ଘର ଯୋଗାଇ ଦେଇ ସେ ବହୁତ ଖୁସି ।

ମୁଖ୍ୟମନ୍ତ୍ରୀ ଚନ୍ଦ୍ରଶେଖରପୁର ବୁଦ୍ଧବିହାର ଯାଇ ସେଠାରେ ‘ସୁଲଭ ବାସଗୃହ ପ୍ରକଳ୍ପ’ ଉଦ୍‌ଘାଟନ କରିଥିଲେ । ସହରାଞ୍ଚଳରେ ‘ସମସ୍ତଙ୍କ ପାଇଁ ଘର’ କାର୍ଯ୍ୟକ୍ରମରେ ଏହି ପ୍ରକଳ୍ପଟି ୫ ମହଲା ବିଶିଷ୍ଟ ଏବଂ ଏହା ୧୨ ଏକର ଜମିରେ ନିର୍ମାଣ କରାଯାଇଛି । ଏଥିରେ ୮୨୦ଟି ଘର ସମ୍ପୂର୍ଣ୍ଣ ହୋଇ ହିତାଧିକାରୀମାନଙ୍କୁ ପ୍ରଦାନ କରାଯାଉଛି । ଆର୍ଥିକ ଅନଗ୍ରସର ବର୍ଗର ଲୋକଙ୍କ ପାଇଁ ସମୁଦାୟ ୨୬୦୦ଟି ଘର ନିର୍ମାଣର ଲକ୍ଷ୍ୟ ରଖାଯାଇଛି ।

ସେହପରି ସତ୍ୟନଗର ଶାନ୍ତିପଲ୍ଲୀଠାରେ ବସ୍ତି ପୁନଃ ଉନ୍ନୟନ ଯୋଜନାରେ (In Situ Slum Redevelopment Project) ସମୁଦାୟ ୧୩୦୦ଟି ଘର ନିର୍ମାଣ କରାଯାଉଛି । Bhubaneswar Town Centre District (BTCD) ଅଞ୍ଚଳରେ ଥିବା ବସ୍ତି ଅଞ୍ଚଳଗୁଡିକର ରୂପାନ୍ତର ଲକ୍ଷ୍ୟରେ ଏହା ହେଉଛି ପ୍ରଥମ ପ୍ରକଳ୍ପ । ୫୬୦ଟି ଘର ନିର୍ମାଣ କରାଯାଇ ହିତାଧିକାରୀଙ୍କୁ ଆବଣ୍ଟନ କରାଯାଇଛି ।

ସୁବୁଦ୍ଧିପୁରରେ 'ସୁଲଭ ବାସଗୃହ ପ୍ରକଳ୍ପ'ରେ ୩୪୨ଟି ଘର ନିର୍ମାଣ କରାଯାଇ ହିତାଧିକାରୀଙ୍କୁ ଆବଣ୍ଟନ କରାଯାଇଛି । ଏହି ସମସ୍ତ ପ୍ରକଳ୍ପଗୁଡିକ ୫ ମହଲା ବିଶିଷ୍ଟ ।

ଏହି ସବୁ ପ୍ରକଳ୍ପ ପାଇଁ ପାନୀୟ ଜଳଯୋଗାଣ, ଡ୍ରେନେଜ୍ ବ୍ୟବସ୍ଥା, ସ୍ୱେରେଜ୍ ବ୍ୟବସ୍ଥା, ରାସ୍ତା ଆଲୋକୀକରଣ, ଦୋକାନ ଘର ସହିତ ପାଠାଗାର, ରିଡ଼ିଙ୍ଗ ରୁମ୍, ଡ଼ିସ୍‌ପେନ୍‌ସାରୀ ଆଦି ଅନେକ ସୁବିଧାର ବ୍ୟବସ୍ଥା କରାଯାଇଛି ।

- ବସ୍ତିବାସିନ୍ଦାଙ୍କୁ ମିଳିଲା ଆଶ୍ରୟ, ସମ୍ମାନର ସହ ବଞ୍ଚିବାର ଅଧିକାର
- ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୩ଟି ସୁଲଭ ବାସଗୃହ ପ୍ରକଳ୍ପ ଲୋକାର୍ପିତ
- ୧୭୨୨ଟି ଜଣ ହିତାଧିକାରୀ ଘର ପାଇଲେ
- ଚନ୍ଦ୍ରଶେଖରପୁର ବୁଦ୍ଧବିହାରରେ ସୁଲଭ ବାସଗୃହ
- ସତ୍ୟନଗର ଶାନ୍ତିପଲ୍ଲୀରେ ବସ୍ତି ପୁନଃବିକାଶ ପ୍ରକଳ୍ପ ଓ ସୁବୁଦ୍ଧିପୁରରେ ସୁଲଭ ବାସଗୃହ ପ୍ରକଳ୍ପ

ଏହି ଉଦ୍‌ଘାଟନ କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀଙ୍କ ସହିତ 5T ତଥା ନବୀନ ଓଡ଼ିଶା ଅଧକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ ଉପସ୍ଥିତ ଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଗୃହ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀମତୀ ଉଷା ଦେବୀ, ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ମନ୍ତ୍ରୀ ଶ୍ରୀ ଅଶୋକ ପଣ୍ଡା, ଭୁବନେଶ୍ୱର ମଧ୍ୟ ବିଧାୟକ ଶ୍ରୀ ଅନନ୍ତ ନାରାୟଣ ଜେନା, ଭୁବନେଶ୍ୱର ଉତ୍ତର ବିଧାୟକ ଶ୍ରୀ ସୁଶାନ୍ତ ରାଉତ, ମେୟର ଶ୍ରୀମତୀ ସୁଲୋଚନା ଦାସ, ଡେପୁଟି ମେୟର, ମୁଖ୍ୟ ଶାସନ ସଚିବ ଶ୍ରୀ ପି.କେ. ଜେନା, ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀମତୀ ଅନୁ ଗର୍ଗ ଏବଂ ବି.ଏମ୍.ସି, ବି.ଡି.ଏ. ଗୃହ ଓ ନଗର ଉନ୍ନୟନ ବିଭାଗର ବରିଷ୍ଠ ପଦାଧିକାରୀମାନେ ଏହି କାର୍ଯ୍ୟକ୍ରମରେ ଉପସ୍ଥିତ ଥିଲେ ।



# ‘ସାଧାରଣ ଲୋକଙ୍କ ସମସ୍ୟାର ସମାଧାନ ପାଇଁ ମୁଁ ସବୁବେଳେ ନିଷ୍ଠାପର ଉଦ୍ୟମ କରିଆସିଛି’ – ମୁଖ୍ୟମନ୍ତ୍ରୀ



ରାଜ୍ୟର ପ୍ରଶାସନିକ ଇତିହାସରେ ଆଜି ଏକ ଯୁଗାନ୍ତକାରୀ ଦିବସ । ବିସ୍ଥାପିତ ଲୋକମାନଙ୍କର ୧୦୦ ବର୍ଷର ସମସ୍ୟାର ଅନ୍ତ ହୋଇଛି । 5T ରୂପାନ୍ତରଣ ପ୍ରକ୍ରିୟାରେ ମାତ୍ର ୧୦୦ ଦିନରେ ସେମାନଙ୍କର ବର୍ଷ ବର୍ଷର ସମସ୍ୟା ଦୂର ହୋଇଛି ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟର ବିଭିନ୍ନ ଅଞ୍ଚଳର ବିସ୍ଥାପିତ ଲୋକମାନଙ୍କର ଦୀର୍ଘ ଦିନର ଜମିଜମା ସମସ୍ୟା ଦୂର କରି ସେମାନଙ୍କୁ ଜମିପଟ୍ଟା ବଣ୍ଟନ କରିଛନ୍ତି ।

- ବିସ୍ଥାପିତ ଲୋକଙ୍କୁ ପଟ୍ଟା ବାଣ୍ଟିଲେ ମୁଖ୍ୟମନ୍ତ୍ରୀ
- 5T ଅଧକ୍ଷଙ୍କ ଜିଲ୍ଲା ଗସ୍ତ ପରେ
  ୧୦୦ ବର୍ଷର ସମସ୍ୟାର ସମାଧାନ ହେଲା ୧୦୦ ଦିନରେ
- ଝାରସୁଗୁଡା ଜିଲ୍ଲା ଲଖନପୁର ତହସିଲର ୯୦୦ ପରିବାର
  ସୋରଡା ତହସିଲର ୧୬୬୨ ଲୋକ ହେଲେ ଉପକୃତ
- ଗଞ୍ଜାମର ଆଉ ୧୮ ହଜାର ହିତାଧିକାରୀଙ୍କୁ ଖୁବ୍‌ଶୀଘ୍ର ମିଳିବ ଗ୍ରାମକଣ୍ଠ ପଟ୍ଟା
- ଆଗରୁ ପାଇଥିଲେ ୨୦ ହଜାର
- ବିକାଶ ପାଇଁ ଆପଣମାନଙ୍କ ତ୍ୟାଗକୁ ମୁଁ ସମ୍ମାନ ଜଣାଉଛି
- ଆପଣମାନଙ୍କ ଖୁସି ହିଁ ମୋର ସବୁଠାରୁ ବଡ ସଫଳତା – ମୁଖ୍ୟମନ୍ତ୍ରୀ

ଝାରସୁଗୁଡା ଜିଲ୍ଲା ଲଖନପୁର ତହସିଲର ଲୋକମାନେ ବର୍ଷ ବର୍ଷ ଧରି ଜମି ସମସ୍ୟା ପାଇଁ ବିଭିନ୍ନ ଅସୁବିଧାର ସମ୍ମୁଖୀନ ହେଉଥିଲେ । ଗତ ଅଗଷ୍ଟ ୨୦ ତାରିଖରେ 5T ଅଧକ୍ଷ ଶ୍ରୀ ଭି.କେ. ପାଣ୍ଡିଆନଙ୍କ

ଗସ୍ତ ପରେ ସମାଧାନ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥିଲା । ଏମାନଙ୍କର ୧୮ଟି ରାଜସ୍ୱ ଗ୍ରାମ ପାଇଁ ସର୍ଭେ ଆରମ୍ଭ ହୋଇଥିଲା । ଏଥିମଧ୍ୟରୁ ୭ଟି ଗାଁର ୮୬୬ଟି ପରିବାର ପାଇଁ ସର୍ଭେ ସଂପୂର୍ଣ୍ଣ କରାଯାଇ ଜମିପଟ୍ଟା ଦିଆଯାଇଛି । ବାକି ୧୧ଟି ଗାଁର ସର୍ଭେ ଚାଲିଛି । ଏହି ୧୧ଟି ଗାଁର ୧୩୩୯ଟି ପରିବାର ଖୁବ୍‌ଶୀଘ୍ର ଜମିପଟ୍ଟା ପାଇବେ ।

ସେହିପରି ଗଞ୍ଜାମ ଜିଲ୍ଲା ସୋରଡା ତହସିଲର ୨୨ଟି ଗାଁର ଜମି ୧୯୮୩ ମସିହାରେ ଜଳସଂପଦ ବିଭାଗ ନାମରେ ରେକର୍ଡ ହୋଇଥିଲା । ୧୭ଟି ଗାଁର ଜମି ରାଜସ୍ୱ ବିଭାଗକୁ ଯାଇଛି ଏବଂ ସେଗୁଡିକର settlement ଚାଲିଛି । ଏମାନଙ୍କ ମଧ୍ୟରୁ ୯୬୨ ଜଣଙ୍କୁ ଘରଡିହ ପଟ୍ଟା ଓ ୭୦୦ ଜଣଙ୍କୁ ଜମିପଟ୍ଟା ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବଣ୍ଟନ କରିଛନ୍ତି । ଅଗଷ୍ଟ ମାସ ୨୬ ଓ ୨୭ରେ 5T ଅଧ୍ୟକ୍ଷଙ୍କ ଗସ୍ତ ପରେ ଏଠାରେ ସର୍ଭେ କାମ ତ୍ୱରାନ୍ୱିତ କରାଯାଇ ସମସ୍ୟାର ସମାଧାନ ପାଇଁ ପ୍ରକ୍ରିୟା ଆରମ୍ଭ ହୋଇଥିଲା ।

ଭିଡିଓ କନ୍‌ଫରେନ୍ସିଂ ଜରିଆରେ ଆୟୋଜିତ ଏହି କାର୍ଯ୍ୟକ୍ରମରେ ସ୍ଥାନୀୟ ଲୋକ ଓ ହିତାଧିକାରୀମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ସାଧାରଣ ଲୋକଙ୍କ ସମସ୍ୟାର ସମାଧାନ ପାଇଁ ମୁଁ ସବୁବେଳେ ନିଷ୍ଠାପର ଉଦ୍ୟମ କରିଆସିଛି । ଆପଣମାନଙ୍କ ଖୁସି ହିଁ ମୋର ସବୁଠାରୁ ବଡ ସଫଳତା ।

ଜମିପଟ୍ଟା ପାଇବା ଦ୍ୱାରା ଆପଣମାନେ ବିଭିନ୍ନ ସରକାରୀ କଲ୍ୟାଣ ଯୋଜନାରେ ସାମିଲ ହୋଇପାରିବେ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ସେ କହିଥିଲେ ଯେ ଗଞ୍ଜାମ ଜିଲ୍ଲାରେ ଚଳିତ ବର୍ଷ ପ୍ରଥମ ପର୍ଯ୍ୟାୟରେ ୨୦ ହଜାର ହିତାଧିକାରୀଙ୍କୁ ଗ୍ରାମକଣ୍ଠ ପଟ୍ଟା ଦିଆଯାଇଥିଲା । ଖୁବ୍‌ଶୀଘ୍ର ଆଉ ୧୮ ହଜାର ହିତାଧିକାରୀ ଗ୍ରାମକଣ୍ଠ ପଟ୍ଟା ପାଇବେ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ।

ମୁଖ୍ୟମନ୍ତ୍ରୀ ପୁଣି କହିଥିଲେ ଯେ ଲଖନପୁର ଓ ସୋରଡା ତହସିଲର ଲୋକମାନଙ୍କ ବହୁ ଦିନର ଜମିବାଡି ସମସ୍ୟା ଦୂର ହୋଇଥିବାରୁ ସେ ନିଜେ ବହୁତ ଖୁସି ଅନୁଭବ କରୁଛନ୍ତି । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ବିକାଶ ପାଇଁ ଆପଣମାନଙ୍କ ତ୍ୟାଗକୁ ମୁଁ ସମ୍ମାନ ଜଣାଉଛି ।

ସମସ୍ୟାର ସମାଧାନ ପ୍ରକ୍ରିୟା ଉପରେ ଆଲୋକପାତ କରି ସେ କହିଥିଲେ ଯେ ମୋ ନିର୍ଦ୍ଦେଶରେ 5T ତଥା ନବୀନ ଓଡିଶା ଅଧ୍ୟକ୍ଷ ଆପଣଙ୍କ ଅଞ୍ଚଳକୁ ଯାଇ ଆପଣମାନଙ୍କୁ ଭେଟିଥିଲେ ଓ ଆପଣମାନଙ୍କ ସମସ୍ୟା ବିଷୟରେ ଆଲୋଚନା କରିଥିଲେ । ଏହାପରେ ସେ ମୋତେ ଆପଣମାନଙ୍କର ଏହି ସମସ୍ୟା ସଂପର୍କରେ ଅବଗତ କରାଇଥିଲେ । ସାଧାରଣ ଲୋକଙ୍କ ହିତ ମୋ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତେଣୁ ଆପଣମାନଙ୍କ ହିତକୁ ଦୃଷ୍ଟିରେ ରଖି ଆମେ ଖୁବ୍‌ଶୀଘ୍ର ଏହାର ସମାଧାନ ପାଇଁ ନିଷ୍ପତ୍ତି ନେଇଥିଲୁ ।

ସୂଚନାଯୋଗ୍ୟ ଯେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ 5T ତଥା ନବୀନ ଓଡିଶା ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ ଅଗଷ୍ଟ ୨୦ ତାରିଖରେ ଝାରସୁଗୁଡା ଏବଂ ଅଗଷ୍ଟ ୨୬ ଓ ୨୭ ତାରିଖରେ ଗଞ୍ଜାମ ଜିଲ୍ଲା ଗସ୍ତ କରି ସ୍ଥାନୀୟ ଲୋକମାନଙ୍କ ବିଭିନ୍ନ ସମସ୍ୟା ସହିତ ବିସ୍ଥାପିତମାନଙ୍କ ସମସ୍ୟା ସଂପର୍କରେ ମଧ୍ୟ ଆଲୋଚନା କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ସହିତ ଏ ସଂପର୍କରେ ଆଲୋଚନା କରିବା ପରେ, ଏହିସବୁ ଜମିଗୁଡିକର ତୁରନ୍ତ ସର୍ଭେ କରାଯାଇ ପଟ୍ଟା ପ୍ରଦାନ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା ।

ଏହି ଅବସରରେ 5T ଓ ନବୀନ ଓଡିଶା ଅଧକ୍ଷ ଶ୍ରୀ ଭି. କେ. ପାଣ୍ଡିଆନ୍ କହିଥିଲେ ଯେ ସାଧାରଣ ଲୋକଙ୍କ ସ୍ୱାର୍ଥ ସର୍ବୋପରି ମୁଖ୍ୟମନ୍ତ୍ରୀଙ୍କ ଆନ୍ତରିକ ଉଦ୍ୟମ ଯୋଗୁଁ ବହୁ ବର୍ଷର ସମସ୍ୟା ସମାଧାନ ହୋଇପାରିଛି ।

ଲଖନପୁର କାର୍ଯ୍ୟକ୍ରମରେ ଯୋଗ ଦେଇ ଶ୍ରମ ମନ୍ତ୍ରୀ ଶ୍ରୀ ସାରଦା ନାୟକ ଏହି ଜମି ସମସ୍ୟା ସମାଧାନକୁ ଏକ ଐତିହାସକ ପଦକ୍ଷେପ ଭାବରେ ବର୍ଣ୍ଣନା କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଆସ୍କା ସାଂସଦ ଶ୍ରୀମତୀ ପ୍ରମିଳା ବିଶୋଇ, ବ୍ରଜରାଜନଗର ବିଧାୟକ ଅଳକା ମହାନ୍ତି ଓ ସୋରଡା ବିଧାୟକ ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ ପ୍ରମୁଖ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀଙ୍କ ଏହି ଯୁଗାନ୍ତକାରୀ ପଦକ୍ଷେପର ଉଚ୍ଚ ପ୍ରଶଂସା କରିଥିଲେ ।



# ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାର ଅବଧିକୁ ଆଉ ୫ ବର୍ଷ ବଢ଼ାଇଲେ ମୁଖ୍ୟମନ୍ତ୍ରୀ



ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାର ଅବଧିକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଉ ୫ ବର୍ଷକୁ ବୃଦ୍ଧି କରିଛନ୍ତି ।

ସୂଚନାଯୋଗ୍ୟ ଯେ, ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାରେ ରାଜ୍ୟର ୩,୧୪,୯୨୩ ପରିବାରର ୯,୯୭,୦୫୫ ଜଣ ବ୍ୟକ୍ତି ଅନ୍ତର୍ଭୁକ୍ତ ହୋଇଛନ୍ତି । ସେମାନେ ପ୍ରତ୍ୟେକ ମାଗଣାରେ ମାସକୁ ୫ କେଜି ଲେଖାଏଁ ଚାଉଳ ପାଉଛନ୍ତି । ଯୋଜନାର ଅବଧି ଆଉ ୫ ବର୍ଷ ବଢିବା ଦ୍ୱାରା ଏହି ହିତାଧିକାରୀମାନେ ୨୦୨୪ ଜାନୁଆରୀ ୧ ଠାରୁ ୨୦୨୮ ଡିସେମ୍ବର ୩୧ ପର୍ଯ୍ୟନ୍ତ ଏହି ସୁବିଧା ପାଇବେ ।

ଏଥିପାଇଁ ରାଜ୍ୟ ସରକାର ବର୍ଷକୁ ୨୫୦ କୋଟି ଟଙ୍କା ହିସାବରେ ୫ ବର୍ଷରେ ୧୨୫୦ କୋଟି ଟଙ୍କା ନିଜ ପାଣ୍ଠିରୁ ଖର୍ଚ୍ଚ କରିବେ । ରାଜ୍ୟର ଜଣେ ବି ଗରିବ ଲୋକ ଯେପରି ଖାଦ୍ୟ ସୁରକ୍ଷାରୁ ବଞ୍ଚିତ ନ ହୁଏ ସେଥିପ୍ରତି ଦୃଷ୍ଟି ରଖିବାକୁ ମୁଖ୍ୟମନ୍ତ୍ରୀ ଦୃଢ ନିର୍ଦ୍ଦେଶ ଦେଇଛନ୍ତି ।

- ୨୦୨୪ ଜାନୁଆରୀ ୧ ତାରିଖରୁ ୨୦୨୮ ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଅବଧି ବଢିଲା
- ୧୦ ଲକ୍ଷ ହିତାଧିକାରୀ ମାସକୁ ୫ କେଜି ଲେଖାଏଁ ମାଗଣା ଚାଉଳ ପାଇବେ
- ଖର୍ଚ୍ଚ ହେବ ୧୨୫୦ କୋଟି
- ବହନ କରିବେ ରାଜ୍ୟ ସରକାର



# ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ୩୪୯ଟି ନୂଆ ଆମ୍ବୁଲାନ୍ସ ଲୋକାର୍ପିତ

ତ୍ୱରିତ ସ୍ୱାସ୍ଥ୍ୟ ସେବା ଦିଗରେ ଅନ୍ୟ ଏକ ଉଲ୍ଲେଖନୀୟ ପଦକ୍ଷେପ ଭାବେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୩୪୯ଟି ନୂଆ ଆମ୍ବୁଲାନ୍ସ ଓଡିଶାବାସୀଙ୍କ ନିମନ୍ତେ ଲୋକାର୍ପଣ କରିଛନ୍ତି । ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମଠାରେ ଅନୁଷ୍ଠିତ ଏହି ଲୋକାର୍ପଣ ଉତ୍ସବରେ ପ୍ରଥମ ଥର ପାଇଁ ଏତେ ସଂଖ୍ୟକ ଆମ୍ବୁଲାନ୍ସ ରାଜ୍ୟର ମେଡିକାଲ ଆମ୍ବୁଲାନ୍ସ ସେବାରେ ଯୋଗ କରାଯାଇଛି ।



ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, ଏହା ଆହୁରି ଅନେକ ମୂଲ୍ୟବାନ ଜୀବନ ବଞ୍ଚାଇବାରେ ସହାୟକ ହେବ । 'ପ୍ରତି ଜୀବନ ମୂଲ୍ୟବାନ' ନୀତି ଅନୁଯାୟୀ ଆମର ଉଦ୍ୟମ ଜାରି ରହିବ ବୋଲି ସେ କହିଛନ୍ତି ।

ସୂଚନାଯୋଗ୍ୟ, ଲୋକାର୍ପିତ ଆମ୍ବୁଲାନ୍ସଗୁଡିକ ମଧ୍ୟରୁ ୨୭୯ଟିକୁ ୧୦୮-ଆମ୍ବୁଲାନ୍ସ ସେବାରେ ସାମିଲ କରାଯାଇଛି । ବାକି ୭୦ଟିକୁ ସରକାରୀ ମେଡିକାଲ କଲେଜ ଓ ହସ୍ପିଟାଲ ଏବଂ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟମାନଙ୍କୁ ଯୋଗାଇ ଦିଆଯାଇଛି । ଏହି ୭୦ଟି ଆମ୍ବୁଲାନ୍ସ ମଧ୍ୟରୁ ୪୦ଟି ହେଉଛି ଜୀବନ ରକ୍ଷାକାରୀ ମୌଳିକ ଆମ୍ବୁଲାନ୍ସ ଏବଂ ୩୦ଟି ଜୀବନ ରକ୍ଷାକାରୀ ଅତ୍ୟାଧୁନିକ ଆମ୍ବୁଲାନ୍ସ । ସମୁଦାୟ ୩୪୯ଟି ଆମ୍ବୁଲାନ୍ସ ବାବଦରେ ୧୪୮.୪୫ କୋଟି ଟଙ୍କା ବିନିଯୋଗ କରାଯାଇଛି ।

୧୦୮-ଆମ୍ବୁଲାନ୍ସ ସେବାରେ ଏହି ନୂଆ ଆମ୍ବୁଲାନ୍ସଗୁଡିକ ସାମିଲ ହେବା ପରେ ମୋଟ ଆମ୍ବୁଲାନ୍ସ ସଂଖ୍ୟା ୧୩୬୬କୁ ବୃଦ୍ଧି ପାଇଛି । ବର୍ତ୍ତମାନ ପ୍ରତିଦିନ ହାରାହାରି ୪୦୦୦ରୁ ଅଧିକ ସଂଖ୍ୟକ ରୋଗୀ ଏହି ୧୦୮-ଆମ୍ବୁଲାନ୍ସ ସେବା ଦ୍ୱାରା ଡାକ୍ତରଖାନାକୁ ସ୍ଥାନାନ୍ତରିତ ହେଉଛନ୍ତି । ନୂଆ ଆମ୍ବୁଲାନ୍ସଗୁଡିକ ସାମିଲ ହେବା ପରେ ୧୦୮-ଆମ୍ବୁଲାନ୍ସ ସେବା ଆହୁରି ତ୍ୱରିତ ଏବଂ ସୁବିଧାଜନକ ହେବ ।

ସରକାରୀ ମେଡିକାଲ କଲେଜ ଓ ହସ୍ପିଟାଲ ଏବଂ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟଗୁଡ଼ିକୁ ଯୋଗାଉଥିବା ୭୦ଟି ଆମ୍ବୁଲାନ୍ସ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଅନ୍ତର୍ଭୁକ୍ତ ରୋଗୀମାନଙ୍କୁ ଆବଶ୍ୟକ ସ୍ଥଳେ ସରକାରୀ ଡାକ୍ତରଖାନାରୁ ଘରୋଇ ହସ୍ପିଟାଲକୁ ଜରୁରିକାଳୀନ ସ୍ଥାନାନ୍ତରରେ ବ୍ୟବହାର ହେବା ସହ ଜିଲ୍ଲା ସ୍ତରରେ ଅନ୍ୟ ରୋଗୀମାନଙ୍କ ଜରୁରୀ ଆବଶ୍ୟକତା ପୂରଣରେ ସହାୟକ ହେବ ।

- **୧୪୮.୪୫ କୋଟି ଟଙ୍କା ବିନିଯୋଗ**
- **୨୭୯ଟି ଆମ୍ବୁଲାନ୍ସ ୧୦୮ ଫ୍ଲିଟ୍‌ରେ ଯୋଡ଼ିହେଲେ, ୭୦ଟି ଆମ୍ବୁଲାନ୍ସ ସରକାରୀ ମେଡିକାଲ ହସ୍ପିଟାଲ ଏବଂ ଜିଲ୍ଲା ମୁଖ୍ୟାଳୟ ହସ୍ପିଟାଲ ପାଇଁ ସେବା ଯୋଗାଇବେ**
- **୧୦୮–ଫ୍ଲିଟ୍‌ରେ ଆମ୍ବୁଲାନ୍ସ ସଂଖ୍ୟା ୧୩୬୬କୁ ବୃଦ୍ଧି**
- **ଏଣିକି ୨୦ ମିନିଟ୍ ମଧ୍ୟରେ ରୋଗୀଙ୍କୁ ଡାକ୍ତରଖାନା ଆଣିବ ଆମ୍ବୁଲାନ୍ସ, ଆଗରୁ ୩୦ ମିନିଟ୍ ଲାଗୁଥିଲା, ଦେଶର ସର୍ବଶ୍ରେଷ୍ଠ ରେସ୍‌ପନ୍ସ ଟାଇମ**
- **ଆହୁରି ଅନେକ ମୂଲ୍ୟବାନ ଜୀବନ ବଞ୍ଚାଇବାରେ ସହାୟକ ହେବ – ମୁଖ୍ୟମନ୍ତ୍ରୀ**

ଏହି କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀଙ୍କ ସହିତ 5T ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ ଉପସ୍ଥିତ ଥିଲେ । ଅନ୍ୟମାନଙ୍କ ମଧ୍ୟରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପୂଜାରୀ, ବିଭାଗୀୟ ସଚିବ ଶ୍ରୀମତୀ ଶାଳିନୀ ପଣ୍ଡିତ ଓ ଅନ୍ୟ ବରିଷ୍ଠ ଅଧିକାରୀମାନେ ମଧ୍ୟ ଉପସ୍ଥିତ ଥିଲେ ।



‘ଦି ଗଭର୍ଣ୍ଣାନ୍ସ ଚ୍ୟାଲେଞ୍ଜ’ ଦ୍ୱିତୀୟ ସଂସ୍କରଣର ସମାପନ ସମାରୋହ

# ‘ମହିଳା ସଶକ୍ତିକରଣ କ୍ଷେତ୍ରରେ ଓଡ଼ିଶା ଆଜି ଦେଶରେ ସ୍ୱତନ୍ତ୍ର ପରିଚିତି ହାସଲ କରିପାରିଛି’ – ମୁଖ୍ୟମନ୍ତ୍ରୀ



ଇଲେକ୍ଟ୍ରୋନିକ୍ସ ଓ ସୂଚନା–ପ୍ରଯୁକ୍ତିବିଦ୍ୟା ଏବଂ ‘ସମଗ୍ର’ ସହଭାଗିତାରେ ‘ଦି ଗଭର୍ଣ୍ଣାନ୍ସ ଚ୍ୟାଲେଞ୍ଜ, ୨୦୨୩’ପ୍ରତିଯୋଗିତାର ଚୂଡ଼ାନ୍ତ ପର୍ଯ୍ୟାୟ ରାଜ୍ୟ ଲୋକସେବା ଭବନ କନଭେନସନ୍ ହଲ୍‌ରେ ଅନୁଷ୍ଠିତ ହୋଇଯାଇଛି । ଚଳିତବର୍ଷ ଏ ସଂପର୍କିତ ପ୍ରତିଯୋଗିତା ପାଇଁ ‘ମହିଳା ସଶକ୍ତିକରଣ’ ଶୀର୍ଷକ ବିଷୟବସ୍ତୁ ସ୍ଥିର କରଯାଇଥିଲା । ଏଥିରେ ଦେଶର ୩୫ଟି ପ୍ରମୁଖ ବିଜିନେସ ସ୍କୁଲର ୩,୧୦୦ଟି ଦଳର ପାଖାପାଖି ୧୦ ହଜାର ଛାତ୍ରଛାତ୍ରୀ ଅଂଶଗ୍ରହଣ କରିଥିଲେ । ଏହି ପ୍ରତିଯୋଗିତାର ଚୂଡ଼ାନ୍ତ ପର୍ଯ୍ୟାୟକୁ ଆଇ.ଆଇ.ଏମ୍. ବାଙ୍ଗାଲୋର, ବି.ଆଇ.ଟି.ଏସ୍. ସ୍କୁଲ ଅଫ୍ ମ୍ୟାନେଜମେଣ୍ଟ, ଏଫ.ଏମ.ଏସ. ଦିଲ୍ଲୀ, ଆଇ.ଆଇ.ଏମ୍. କୋଲକାତା, ଆଇ.ଆଇ.ଏମ୍. ଲକ୍ଷ୍ନୌ ଏବଂ ଏକ୍ସ.ଆଇ.ଏମ.ବି. ଭୁବନେଶ୍ୱରର ୧୮ଜଣ ବିଦ୍ୟାର୍ଥୀ ଉତ୍ତୀର୍ଣ୍ଣ ହୋଇଥିଲେ । ସମାପନ ସମାରୋହରେ ଏହି ସଫଳ ପ୍ରତିଯୋଗୀମାନେ ସେମାନଙ୍କ ଅଧ୍ୟୟନ ବିଷୟବସ୍ତୁକୁ ନେଇ ପାୱାର ପଏଣ୍ଟ ପ୍ରେଜେଣ୍ଟେସନ ଉପସ୍ଥାପନ କରିଥିଲେ । ଏଥିରେ ଆଇ.ଆଇ.ଏମ୍. ବାଙ୍ଗାଲୋରକୁ ବିଜେତା ଭାବେ ୫ ଲକ୍ଷ ଟଙ୍କା, ଏକ୍ସ.ଆଇ.ଏମ.ବି. ଭୁବନେଶ୍ୱରକୁ ପ୍ରଥମ ଉପବିଜେତା ଭାବେ ୩ ଲକ୍ଷ ଟଙ୍କା ଏବଂ ଏଫ୍.ଏମ୍.ଏସ୍. ଦିଲ୍ଲୀକୁ ଦ୍ୱିତୀୟ ଉପବିଜେତା ଭାବେ ୧ ଲକ୍ଷ ଟଙ୍କା ସହିତ ବିଜେତା–ପ୍ରମାଣପତ୍ର ପ୍ରଦାନ କରଯାଇଥିଲା ।

ଏହି ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପ୍ରତିଯୋଗୀମାନଙ୍କୁ ସ୍ୱାଗତ କରି କହିଥିଲେ ଯେ, ‘ମହିଳା ସଶକ୍ତିକରଣ’ କ୍ଷେତ୍ରରେ ଓଡ଼ିଶା ଆଜି ଦେଶରେ ଏକ ସ୍ୱତନ୍ତ୍ର ପରିଚିତି ହାସଲ କରିଛି । ରାଜ୍ୟର ମହିଳାମାନେ ସରକାରୀ ପ୍ରୋତ୍ସାହନ ଯୋଗୁଁ ସଫଳତାର ଶୀର୍ଷରେ ପହଞ୍ଚିପାରିଛନ୍ତି । ରାଜ୍ୟ ସରକାର ମିଶନ ଶକ୍ତି ମାଧ୍ୟମରେ ବାର୍ଷିକ ୫,୦୦୦ କୋଟି ଟଙ୍କାର ବ୍ୟବସାୟ ସୁନିଶ୍ଚିତ କରିଥିବାବେଳେ ପ୍ରତ୍ୟେକ ଗୋଷ୍ଠୀକୁ ବାର୍ଷିକ ୫ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସୁଧମୁକ୍ତ ଋଣ ପ୍ରଦାନ କରୁଛନ୍ତି । ଓଡ଼ିଶାରେ ‘ମହିଳା ସଶକ୍ତିକରଣ’ ଏକ ସ୍ଲୋଗାନ ନୁହେଁ ବରଂ ଏହା ଏକ ଯୁଗାନ୍ତକାରୀ ପଦକ୍ଷେପ । ଲୋକସଭାରେ ରାଜ୍ୟର ୨୧ଟି ଲୋକସଭା ଆସନରୁ ୩୩ ପ୍ରତିଶତ ମହିଳା ଏବଂ ପଞ୍ଚାୟତ ଓ ପୌରପାଳିକାରେ ୫୦ ପ୍ରତିଶତରୁ ଅଧିକ ନିର୍ବାଚିତ ମହିଳା ପ୍ରତିନିଧି ରାଜ୍ୟ ସରକାରଙ୍କ ଦୃଢ଼ ପ୍ରତିବଦ୍ଧତାକୁ ପ୍ରମାଣିତ କରିଛି । ଓଡ଼ିଶା ଆଜି ମହିଳା ସଶକ୍ତିକରଣ କ୍ଷେତ୍ରରେ ଦେଶରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିବାବେଳେ ଅନ୍ୟ ରାଜ୍ୟମାନଙ୍କ ପାଇଁ ପଥପ୍ରଦର୍ଶକ ହୋଇପାରିଛି ।

ରାଜ୍ୟରେ 'ଦି ଗଭର୍ଣ୍ଣାନ୍ସ ଚ୍ୟାଲେଞ୍ଜ' ଦ୍ୱିତୀୟ ସଂସ୍କରଣ ତାହାର ଏକ ଦୃଷ୍ଟାନ୍ତ । ପ୍ରତିଯୋଗିତାରେ ଛାତ୍ରଛାତ୍ରୀମାନେ ସମାଧାନର ଯେଉଁ ପନ୍ଥା ଦେଖାଇଛନ୍ତି, ତାହା ଅତ୍ୟନ୍ତ ପ୍ରଶଂସନୀୟ । ଏସବୁ ଆହ୍ୱାନଗୁଡ଼ିକର ସମାଧାନ କ୍ଷେତ୍ରରେ ବ୍ୟାପକ ପ୍ରଭାବ ପକାଇବ ବୋଲି ସେ ଆଶାବ୍ୟକ୍ତ କରିଥିଲେ ।




ଏହି ବୈଠକରେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ଅଧକ୍ଷ ଶ୍ରୀ ଅସିତ ତ୍ରିପାଠୀ ବିଚାରକ ଭାବେ ଯୋଗଦେଇ ରାଜ୍ୟର ବିକାଶରେ ମହିଳା ଓ ଯୁବବର୍ଗଙ୍କ ପ୍ରମୁଖ ଭୂମିକା ବିଷୟରେ ବର୍ଣ୍ଣନା କରିଥିଲେ । ସେହିଭଳି ଉନ୍ନୟନ କମିଶନର ଶ୍ରୀମତୀ ଅନୁ ଗର୍ଗ କହିଲେ ଯେ ରାଜ୍ୟ ତଥା ଦେଶରେ ପ୍ରଣୟନ ହେଉଥିବା ବିଭିନ୍ନଜନକଲ୍ୟାଣକାରୀ ଯୋଜନା ସଂପର୍କରେ ମହିଳାମାନେ ସଚେତନ ହୋଇପାରିଲେ ରାଜ୍ୟର ଉନ୍ନତି ସମ୍ଭବପର ।

ସେହିପରି ଆଜି ସମଗ୍ର ଦେଶରେ ଯୁବକଯୁବତୀମାନେ ପରିବର୍ତ୍ତନର ବାହକ ରୂପେ କାର୍ଯ୍ୟ କରୁଛନ୍ତି ବୋଲି ମିଶନ ଶକ୍ତି ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀମତୀ ସୁଜାତା କାର୍ତ୍ତିକେୟନ୍ ଉଲ୍ଲେଖ କରିବା ସହ ମିଶନ ଶକ୍ତି କାଫେ ମହିଳାମାନଙ୍କୁ ସଶକ୍ତ କରିବା ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଛି ବୋଲି ପ୍ରକାଶ କରିଥିଲେ ।

ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀ ମନୋଜ ମିଶ୍ର ତାଙ୍କ ଅଭିଭାଷଣରେ ଦେଶର ଜଟିଳ ଆହ୍ୱାନଗୁଡ଼ିକର ମୁକାବିଲା ପାଇଁ ଶ୍ରେଷ୍ଠ ପ୍ରତିଭା ଅନ୍ୱେଷଣର ଦୃଢ଼ ଆବଶ୍ୟକତା ରହିଛି ବୋଲି କହିଥିଲେ । ସେ କହିଲେ ଯେ ଏଭଳି ପ୍ରତିଯୋଗିତା ଛାତ୍ରଛାତ୍ରୀମାନଙ୍କୁ ସାମାଜିକ ସମସ୍ୟାଗୁଡ଼ିକର ବାସ୍ତବିକ ଚିତ୍ର ସଂପର୍କରେ ଅବଗତ କରାଇବା ସହିତ ଦେଶର ବିକାଶରେ ସେମାନଙ୍କ ସହଭାଗିତା ପାଇଁ ସୁଯୋଗ ଦେଇଥାଏ । ଏଭଳି ପ୍ରତିଯୋଗିତା ଆୟୋଜନ ଦ୍ୱାରା ଛାତ୍ରଛାତ୍ରୀମାନେ ବିଶେଷ ଲାଭବାନ୍ ହେବେ ଏବଂ ସେମାନଙ୍କ ଅଭିଜ୍ଞତା ଓ ଦକ୍ଷତା ବୃଦ୍ଧି ପାଇବ ବୋଲି ସେ ପ୍ରକାଶ କରିଥିଲେ ।

ଏହି ଅବସରରେ ବି.ଏମ.ଜି.ଏଫର ପବ୍ଲିକ ପଲିସି ତଥା ଫାଇନାନ୍ସ ଜାତୀୟ ମୁଖ୍ୟ ଡ. ସନ୍ତୋଷ ମାଥ୍ୟୁ, କମିଶନର ତଥା ସଚିବ ଶ୍ରୀମତୀ ରୁପା ରୋଶନ ସାହୁ, ଓକାକ୍‌ର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ମାନସ ରଞ୍ଜନ ପଣ୍ଡା, ଓକାକ୍‌ର ଜେନେରାଲ ମ୍ୟାନେଜର ଶ୍ରୀମତୀ ମଧୁମିତା ରଥ ଏବଂ ଆୟୋଜକ 'ସମଗ୍ର'ର ପ୍ରତିଷ୍ଠାତା ତଥା ସି.ଇ.ଓ. ଗୌରବ ଗୋଏଲ ପ୍ରମୁଖ ଉପସ୍ଥିତ ଥିଲେ । 'ସମଗ୍ର' ପକ୍ଷରୁ ଅତିଥିମାନଙ୍କୁ ସମ୍ମାନିତ କରାଯାଇଥିଲା ।



# କଟକ ଜିଲ୍ଲା ମହାନଦୀରେ ବୈଦେଶ୍ୱର ନଦୀଗର୍ଭ ଜଳାଶୟ ପ୍ରକଳ୍ପକୁ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କଟକ ଜିଲ୍ଲା ପାଇଁ ଗୋଟିଏ ନଦୀଗର୍ଭ ଜଳାଶୟ ପ୍ରକଳ୍ପକୁ (Instream Storage Structure) ଅନୁମୋଦନ କରିଛନ୍ତି । ଏହି ପ୍ରକଳ୍ପ ପାଇଁ ମୁଖ୍ୟମନ୍ତ୍ରୀ ୩୫୦ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ଏହି ପ୍ରକଳ୍ପଟି ହେଉଛି – ମହାନଦୀରେ ବୈଦେଶ୍ୱର ନଦୀଗର୍ଭ ଜଳାଶୟ ପ୍ରକଳ୍ପ ।

ସୂଚନାଯୋଗ୍ୟ ଯେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ 5T ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ କଟକ ଜିଲ୍ଲା ଗସ୍ତ କରିଥିଲେ ଏବଂ ଜନସାଧାରଣଙ୍କଠାରୁ ବିଭିନ୍ନ ପ୍ରକଳ୍ପ ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ । ଲୋକଙ୍କ ପ୍ରସ୍ତାବ ଅନୁଯାୟୀ ମୁଖ୍ୟମନ୍ତ୍ରୀ ଏହି ପ୍ରକଳ୍ପକୁ ଅନୁମୋଦନ କରିଛନ୍ତି ।

ଏହାଦ୍ୱାରା ତିନୋଟି ବ୍ଲକ୍‌ର ଲୋକ ଉପକୃତ ହେବେ । ଭୂତଳ ଜଳର ସ୍ତର ବୃଦ୍ଧି ହେବା ସହିତ ପାନୀୟ ଜଳ ପ୍ରକଳ୍ପ, ମାଛ ଚାଷ, ପଶୁପାଳନ ଆଦି କ୍ଷେତ୍ରରେ ବିଶେଷ ସହାୟକ ହେବ । ବୈଦେଶ୍ୱର ପ୍ରକଳ୍ପ ଦ୍ୱାରା ବଡମ୍ବା, ବାଙ୍କୀ ଓ ଭାପୁର ବ୍ଲକ୍‌ର ଜନସାଧାରଣ ଉପକୃତ ହେବେ ।

- ୩୫୦ କୋଟି ଟଙ୍କା ମଞ୍ଜୁର
- ତିନୋଟି ବ୍ଲକ୍ – ବଡମ୍ବା, ବାଙ୍କୀ ଓ ଭାପୁରର ଜନସାଧାରଣ ଉପକାର ପାଇବେ
- ଭୂତଳ ଜଳର ସ୍ତର ବୃଦ୍ଧି, ପାନୀୟ ଜଳ ପ୍ରକଳ୍ପ, ମାଛ ଚାଷ, ପଶୁପାଳନ ଆଦିରେ ହେବ ସହାୟକ



# କଳାହାଣ୍ଡି ଓ ମୟୂରଭଞ୍ଜ ଜିଲ୍ଲାରେ ୨ଟି ନଦୀଗର୍ଭ ଜଳାଶୟ ପ୍ରକଳ୍ପକୁ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କଳାହାଣ୍ଡି ଓ ମୟୂରଭଞ୍ଜ ଜିଲ୍ଲା ପାଇଁ ଦୁଇଟି ନଦୀଗର୍ଭ ଜଳାଶୟ ପ୍ରକଳ୍ପକୁ (Instream Storage Structure) ଅନୁମୋଦନ କରିଛନ୍ତି ।

ପ୍ରକଳ୍ପ ଦୁଇଟି ହେଉଛି - କଳାହାଣ୍ଡି ଜିଲ୍ଲା ମୁରଲିଜୋର ଉପରେ ମୁରଲିଝର ନଦୀଗର୍ଭ ଜଳାଶୟ ପ୍ରକଳ୍ପ ଏବଂ ମୟୂରଭଞ୍ଜ ଗଙ୍ଗାହର ନଦୀ ଉପରେ ଦାମୋଦରପୁର ନଦୀଗର୍ଭ ଜଳାଶୟ ପ୍ରକଳ୍ପ । ଏହି ଦୁଇଟି ପ୍ରକଳ୍ପ ପାଇଁ ମୁଖ୍ୟମନ୍ତ୍ରୀ ସମୁଦାୟ ୮୬.୨୫ କୋଟି ଟଙ୍କା ମଞ୍ଜୁର କରିଛନ୍ତି ।

- ୮୬.୨୫ କୋଟି ଟଙ୍କା ମଞ୍ଜୁର
- କଳାହାଣ୍ଡି ମୁରଲୀଝର ପ୍ରକଳ୍ପ ପାଇଁ ୪୧.୨୫ କୋଟି
- ମୟୂରଭଞ୍ଜ ଦାମୋଦରପୁର ପ୍ରକଳ୍ପ ପାଇଁ ୪୫ କୋଟି
- ଉପକାର ପାଇବେ ଭବାନୀପାଟଣା ଓ ବଡସାହି ବ୍ଲକ୍‌ର ଜନସାଧାରଣ
- ଭୂତଳ ଜଳର ସ୍ତର ବୃଦ୍ଧି, ପାନୀୟ ଜଳ ପ୍ରକଳ୍ପ, ମାଛ ଚାଷ, ପଶୁପାଳନ ଆଦିରେ ହେବ ସହାୟକ

ଏଥିରେ କଳାହାଣ୍ଡି ମୁରଲୀଝର ପ୍ରକଳ୍ପ ପାଇଁ ୪୧.୨୫ କୋଟି, ମୟୂରଭଞ୍ଜ ଦାମୋଦରପୁର ପ୍ରକଳ୍ପ ପାଇଁ ୪୫ କୋଟି ମଞ୍ଜୁର ହୋଇଛି ।

ସୂଚନାଯୋଗ୍ୟ ଯେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ 5T ତଥା ନବୀନ ଓଡ଼ିଶା ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ କଳାହାଣ୍ଡି ଓ ମୟୂରଭଞ୍ଜ ଜିଲ୍ଲା ଗସ୍ତ କରିଥିଲେ ଏବଂ ଜନସାଧାରଣଙ୍କଠାରୁ ବିଭିନ୍ନ ପ୍ରକଳ୍ପ ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ । ଲୋକଙ୍କ ପ୍ରସ୍ତାବ ଅନୁଯାୟୀ ମୁଖ୍ୟମନ୍ତ୍ରୀ ଏହି ପ୍ରକଳ୍ପକୁ ଅନୁମୋଦନ କରିଛନ୍ତି ।

ଏହାଦ୍ୱାରା କଳାହାଣ୍ଡି ଜିଲ୍ଲା ଭବାନୀପାଟଣା ବ୍ଲକ୍ ଏବଂ ମୟୂରଭଞ୍ଜ ଜିଲ୍ଲା ବଡସାହି ବ୍ଲକ୍‌ର ଜନସାଧାରଣ ଉପକୃତ ହେବେ । ଭୂତଳ ଜଳର ସ୍ତର ବୃଦ୍ଧି ହେବା ସହିତ ପାନୀୟ ଜଳ ପ୍ରକଳ୍ପ, ମାଛ ଚାଷ ଓ ପଶୁପାଳନ ଆଦି କ୍ଷେତ୍ରରେ ଏହା ବିଶେଷ ସହାୟକ ହେବ ।



# ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଜଳବିଜ୍ଞାନ ତଥ୍ୟ କେନ୍ଦ୍ର ଉଦ୍‌ଘାଟିତ



ପାଣିପାଗ ତଥ୍ୟର ବୈଜ୍ଞାନିକ ବିଶ୍ଳେଷଣ ତଥା ଜଳସଂପଦର ସୁପରିଚାଳନାରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟ ଜଳସମ୍ପଦ ବିଭାଗରେ ଓଡ଼ିଶା ଜଳବିଜ୍ଞାନ ତଥ୍ୟ କେନ୍ଦ୍ର (ODISHA STATE HYDROLOGICAL DATA CENTER) ର ଶୁଭ ଉଦ୍‌ଘାଟନ କରିଛନ୍ତି ।

ଏହି କେନ୍ଦ୍ରରେ ଜଳସଂପଦର ସୁପରିଚାଳନା ପାଇଁ ପାଣିପାଗଜନିତ ତଥ୍ୟର ବୈଜ୍ଞାନିକ ବିଶ୍ଳେଷଣ କରାଯିବ । ବର୍ଷା, ନଦୀଜଳ ଓ ଜଳାଶୟମାନଙ୍କର ଜଳଧାରଣ କ୍ଷମତାର ସଠିକ ସମୟାନୁକ୍ରମିକ ତଥ୍ୟ ସଂଗ୍ରହ କରାଯାଇ ଏହାର ବୈଜ୍ଞାନିକ ବିଶ୍ଳେଷଣ କରାଯିବ ।

ରାଜ୍ୟ ଜଳବିଜ୍ଞାନ ତଥ୍ୟ କେନ୍ଦ୍ର ଦ୍ୱାରା ଜଳସମ୍ପଦ ବିଭାଗର ଦକ୍ଷତା ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇବ ।

ଏହି କେନ୍ଦ୍ରରେ ପାଣିପାଗ, ବର୍ଷା, ନଦୀମାନଙ୍କର ଜଳପ୍ରବାହ, ଭୂତଳ ଜଳ ତଥା ଜଳାଶୟମାନଙ୍କରେ ଉପଲବ୍ଧ ହେଉଥିବା ଜଳର ଆକଳନ ଆଦିର ତଥ୍ୟ କମ୍ପ୍ୟୁଟର ମାଧ୍ୟମରେ ସଂଗ୍ରହ କରାଯିବା ସହିତ ଏହାର ବୈଜ୍ଞାନିକ ବିଶ୍ଳେଷଣ କରାଯାଇପାରିବ । ଜଳସଂପଦ ବିଭାଗ, ସୂଚନା ପ୍ରଯୁକ୍ତି ଓ ଜଳବିଜ୍ଞାନର ସହାୟତାରେ ଏ ସଂପର୍କିତ ସମସ୍ତ ତଥ୍ୟ ସଂଗ୍ରହ, ସଂରକ୍ଷଣ ତଥା ବିଶ୍ଳେଷଣ କରାଯିବ ।

ରାଜ୍ୟ ଜଳବିଜ୍ଞାନ କେନ୍ଦ୍ରର ପରିଚାଳନା, ବିଭାଗର ତୃଣମୂଳ ସ୍ତର ତଥା ଆନ୍ତଃ ବିଭାଗୀୟ ସମନ୍ୱୟ ରକ୍ଷା, ବନ୍ୟା ବିପର୍ଯ୍ୟୟ ସମୟରେ ୨୪ ଘଣ୍ଟିଆ ତଦାରଖ ଓ ନିର୍ଦ୍ଦେଶନା କାର୍ଯ୍ୟ ନିର୍ବାହ କରିବା ପାଇଁ ଏକ ସମନ୍ୱିତ ନିର୍ଦ୍ଦେଶ ନିୟନ୍ତ୍ରଣ କେନ୍ଦ୍ର (INTREGRATED COMMAND CONTROL CENTER) ମଧ୍ୟ ଗଠନ କରାଯାଇଛି । ଜଳସମ୍ପଦ ବିଭାଗର ସୂଚନା ଓ ଜଳବିଜ୍ଞାନରେ ବିଶେଷ ରୁଚି ରଖିଥିବା ଯନ୍ତ୍ରୀମାନେ ଏଥିରେ ନିୟୋଜିତ ହୋଇଛନ୍ତି । ଜଳସମ୍ପଦ ବିଭାଗ(ରାଜୀବ ଭବନ)ର ୮ମ ମହଲାରେ ଆନୁଷଙ୍ଗିକ ସୁବିଧା ସହ ଏହି ତଥ୍ୟ କେନ୍ଦ୍ର ଅବସ୍ଥାପିତ ହୋଇଛି ।

ସୂଚନାଯୋଗ୍ୟ ଯେ ଜଳବାୟୁ ପରିବର୍ତ୍ତନର ପ୍ରଭାବକୁ ପ୍ରତିହତ କରିବା ପାଇଁ ଜଳସଂପଦର ବିକାଶ ସହିତ ଜଳ ସୁପରିଚାଳନାର ଗୁରୁତ୍ୱ ଯଥେଷ୍ଟ ବୃଦ୍ଧି ପାଇଛି । 5T ଉପକ୍ରମର ପ୍ରୟୋଗରେ ଜଳସଂପଦ ବିଭାଗ ଏହି ଆହ୍ୱାନକୁ ମୁକାବିଲା କରିବାକୁ ଅନେକାଂଶରେ ସକ୍ଷମ ହୋଇପାରିଛି ।

ଦୈନନ୍ଦିନ ଏବଂ ବର୍ଷାଋତୁରେ ଘଣ୍ଟାପ୍ରତି ସଂଗୃହିତ ଏହି ତଥ୍ୟ ସମୂହରୁ ଜଳଉତ୍ସଗୁଡିକର ମୂଲ୍ୟାଙ୍କନ,ବର୍ଷା ପୂର୍ବାନୁମାନ, ବର୍ଷାଜନିତ ବିପର୍ଯ୍ୟୟ ପରିଚାଳନା, କୃଷି ପାଇଁ କେନାଲ ମାଧ୍ୟମରେ ଜଳ ଯୋଗାଣ, କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଜଳଭଣ୍ଡାରମାନଙ୍କର ପରିଚାଳନା ଆଦି କାର୍ଯ୍ୟ ଏହି ଜଳବିଜ୍ଞାନ ତଥ୍ୟ କେନ୍ଦ୍ର ମାଧ୍ୟମରେ କରାଯିବ । ଏତଦ୍‌ବ୍ୟତୀତ କୃଷି ଓ କୃଷକ ସଶକ୍ତିକରଣ,ସ୍ୱତନ୍ତ୍ର ରିଲିଫ କମିଶନର ଓ ବିପର୍ଯ୍ୟୟ ପରିଚାଳନା ବିଭାଗ, ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ, ଜଙ୍ଗଲ, ପରିବେଶ ଓ ଜଳବାୟୁ ପରିବର୍ତ୍ତନ ବିଭାଗ ଆଦି ଆନ୍ତଃ ବିଭାଗୀୟ ବ୍ୟବହାର ଓ ବିଶ୍ଳେଷଣ ପାଇଁ ଜଳବିଜ୍ଞାନ କେନ୍ଦ୍ରର ତଥ୍ୟ ଯୋଗାଇ ଦିଆଯିବ । ଏଥିପାଇଁ ଜଳସମ୍ପଦ ବିଭାଗ Water ERP ପୋର୍ଟାଲର ପରିକଳ୍ପନା ଓ ବିକାଶ ପାଇଁ ପଦକ୍ଷେପ ଗ୍ରହଣ କରୁଛନ୍ତି ।

ଏହି କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀଙ୍କ ସହିତ 5T ତଥା ନବୀନ ଓଡିଶା ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ ଉପସ୍ଥିତ ଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଜଳ ସଂପଦ ମନ୍ତ୍ରୀ ଶ୍ରୀମତୀ ଟୁକୁନି ସାହୁ, ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀମତୀ ଅନୁ ଗର୍ଗ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ ସତ୍ୟବ୍ରତ ସାହୁ ଏବଂ ବରିଷ୍ଠ ପଦାଧିକାରୀ ଉପସ୍ଥିତ ଥିଲେ ।



# ସମ୍ପାଦକୀୟ



ଗୋଟିଏ ଦେଶର ମୂଲ୍ୟବୋଧ ଓ ମହନୀୟତା ସିଧାସଳଖ ଭାବେ ତା'ର ନାଗରିକମାନଙ୍କର ଅଧିକାରର ସୁରକ୍ଷା ଉପରେ ନିର୍ଭରଶୀଳ । ଏହା ମଧ୍ୟ କୁହାଯାଇଛି ଯେ ଗୋଟିଏ ଗୋଷ୍ଠୀର ଶକ୍ତି ତା'ର ଦୁର୍ବଳତମ ସଦସ୍ୟର ଶକ୍ତି ଉପରେ ନିର୍ଭର କରେ । ଆମେ ଅପେକ୍ଷାକୃତ ଶକ୍ତିଶାଳୀ ମଣିଷ କୌଣସି ଦୁର୍ବଳ ମଣିଷର ଜୀବନକୁ ପୂର୍ଣ୍ଣ ଭାବରେ ଜୀଇଁବାର କ୍ଷମତା ବଢେଇବାରେ ସାହାଯ୍ୟ କରିବାକୁ ମାନବିକତାର ନିଦର୍ଶନ ବୋଲି ଧରି ନେଇଥାଉ । ମାନବିକ ଅଧିକାର ମଣିଷକୁ ଜାତି ଧର୍ମ ବର୍ଣ୍ଣ ଲିଙ୍ଗ ଇତ୍ୟାଦି ଭେଦଭାବର ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ  ମଣିଷ ପରି ବ୍ୟବହାର କରିବା ପ୍ରତି ପ୍ରତିବଦ୍ଧତାକୁ ସୂଚାଏ । ଯେଉଁଠାରେ ନାଗରିକ ନିଜେ ଅସମର୍ଥ ସେଠାରେ ଲୋକପ୍ରିୟ ସରକାର ନିଜର ଗଣତାନ୍ତ୍ରିକ ମୂଲ୍ୟବୋଧକୁ ସମ୍ମାନ ଦେଇ ମାନବିକ ଅଧିକାରକୁ ସୁରକ୍ଷିତ କରିବା ପାଇଁ ଚେଷ୍ଟିତ ହୁଅନ୍ତି । ଓଡ଼ିଶା ସରକାର ଏକ ଜ୍ୱଳନ୍ତ ଉଦାହରଣ । ଚଳିତ ବର୍ଷ ଭିନ୍ନକ୍ଷମ ଦିବସ ଡିସେମ୍ବର ୩, ମାନବ ଅଧିକାର ଦିବସ ଡିସେମ୍ବର ୧୦ ଏବଂ ସଂଖ୍ୟାଲଘୁ ଅଧିକାର ଦିବସ ଡିସେମ୍ବର ୧୮ ତାରିଖ ଉପଲକ୍ଷେ ଆମର ପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା ବିଶେଷ ଭାବରେ ଏକତା, ସମାନତା ଏବଂ ସହଯୋଗର ରୂପାୟନ ଉପରେ ଗୁରୁତ୍ୱ ଦେଇଛି ।

ମାନବିକ ଅଧିକାର ହେଉଛି ପ୍ରତ୍ୟେକ ବ୍ୟକ୍ତିର ମୌଳିକ ଅଧିକାର, ଯାହା ଯେକୌଣସି ଦେଶ ହେଲେ ମଧ୍ୟ ତା'ର ନାଗରିକମାନେ ମଣିଷ ଭାବରେ ଉପଭୋଗ କରିବେ । ଏହାକୁ ଉଲ୍ଲଙ୍ଘନ କଲେ ଆନ୍ତର୍ଜାତିକ କ୍ଷେତ୍ରରେ ସମାଲୋଚନାର ସମ୍ମୁଖୀନ ହେବାକୁ ପଡେ । ତା' ସହିତ ସ୍ୱତନ୍ତ୍ର ଭାବରେ ଭିନ୍ନକ୍ଷମ ବ୍ୟକ୍ତିବିଶେଷ ତଥା ସଂଖ୍ୟାଲଘୁଙ୍କର ଅଧିକାରର ସୁରକ୍ଷା ଏହି ମାନବିକ ଅଧିକାରକୁ ଅଧିକ ଅର୍ଥପୂର୍ଣ୍ଣ କରେ ।

ସେହି ଦୃଷ୍ଟିରୁ ଭିନ୍ନକ୍ଷମ ବ୍ୟକ୍ତିବିଶେଷଙ୍କ ମନୋବଳକୁ ଦୃଢ କରିବା ପାଇଁ ଆହ୍ୱାନ ଦେଇ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ ଶାରୀରିକ ଅକ୍ଷମତା ବ୍ୟକ୍ତିଗତ ଅଭିବୃଦ୍ଧି ଏବଂ ସଫଳତାରେ ପ୍ରତିବନ୍ଧକ ନୁହେଁ । ପ୍ରୟୋଗାତ୍ମକ ଜ୍ଞାନ କୌଶଳ ଅଙ୍ଗ ହାନିର ସୀମୀତତାକୁ ଟପିଯାଇ ନୂଆ ଜୀବନ ଦେଉଛି । ତେଣୁ ସବୁକିଛି ମନୋଭାବ ଏବଂ ଇଚ୍ଛାଶକ୍ତି ଉପରେ ନିର୍ଭର କରେ । ସମାଜ ଓ ଭିନ୍ନକ୍ଷମଙ୍କ ପରିବାର ନିଜ ମନୋଭାବରେ ପରିବର୍ତ୍ତନ ଆଣି ସେମାନେ ଆତ୍ମବିଶ୍ୱାସର ସହ ଆଗକୁ ବଢ଼ିବାରେ ସକ୍ଷମ ହେବା ପାଇଁ ସାହାଯ୍ୟ କରିବା ଦରକାର । ଭିନ୍ନକ୍ଷମ ବ୍ୟକ୍ତିମାନେ ବିଭିନ୍ନ କ୍ଷେତ୍ରରେ ନିଜର ସାମର୍ଥ୍ୟ ଦେଖାଇଛନ୍ତି । କଳା, ସାହିତ୍ୟ, ଖେଳ,

ଶିକ୍ଷା କ୍ଷେତ୍ରରେ ନିଜର ପରିଚୟ ମଧ୍ୟ ସୃଷ୍ଟି କରିଛନ୍ତି । ସେମାନଙ୍କୁ ସବୁ ସ୍ତରରେ ପ୍ରୋତ୍ସାହିତ କରାଯିବା ଦରକାର ।

ଡିସେମ୍ବର ୧୮ ତାରିଖ ସଂଖ୍ୟାଲଘୁ ଅଧିକାର ଦିବସ ଅବସରରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏକ ନ୍ୟାୟସଂପନ୍ନ ସମାଜ ପାଇଁ ବିନା ଭେଦଭାବରେ ସଂଖ୍ୟାଲଘୁଙ୍କ ଅଧିକାରକୁ ସୁରକ୍ଷିତ ରଖିବାକୁ ପ୍ରତିଶ୍ରୁତି ଦେଇଛନ୍ତି । ଭେଦଭାବର ଊର୍ଦ୍ଧ୍ୱରେ ସଂଖ୍ୟାଲଘୁଙ୍କ ଜାତିଗତ, ସାଂସ୍କୃତିକ, ଧାର୍ମିକ ଓ ଭାଷାଗତ ପରିଚୟର ଗ୍ରହଣ ଓ ସୁରକ୍ଷା ପାଇଁ ସଂକଳ୍ପ ଦୋହରାଇଛନ୍ତି ।

ଚଳିତ ବର୍ଷ ମାନବାଧିକାର ଦିବସ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତାଙ୍କ ବାର୍ତ୍ତାରେ ସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ମୌଳିକ ଅଧିକାରକୁ ସମ୍ମାନ ଦେବା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତିଙ୍କୁ ସମାନତା ଏବଂ ନିରପେକ୍ଷତାର ସହ ବ୍ୟବହାର କରାଯିବା ଉଚିତ । ଅନ୍ତର୍ଭୁକ୍ତିକରଣ, ସମାନତା ଏବଂ ଶାନ୍ତିକୁ ପ୍ରୋତ୍ସାହିତ କରିବା ପାଇଁ ଏବଂ ବିଶ୍ୱକୁ ଆମେ ଦେଇଥିବା ପ୍ରତିଶ୍ରୁତିର ନବୀକରଣ କରିବା ଯେଉଁଥିରେ ସମସ୍ତଙ୍କ ପାଇଁ ନ୍ୟାୟ ଏବଂ ସମ୍ମାନ ସୁନିଶ୍ଚିତ ହେବ ବୋଲି ଆହ୍ୱାନ ଦେଇଛନ୍ତି ।

ଓଡିଶା ସରକାର ମାନବିକ ଅଧିକାର ସୁରକ୍ଷାକୁ କେବଳ ଏକ ସ୍ଲୋଗାନରେ ସୀମିତ ନ ରଖି ଏହାକୁ ଏକ ସଂସ୍କାରରେ ପରିଣତ କରିଛନ୍ତି ଏବଂ କରୁଛନ୍ତି ମଧ୍ୟ । ତାଙ୍କର ସୁଶାସନ ମଧ୍ୟରେ ମହିଳା, ଗରିବ, ବଂଚିତ, ବୟସ୍କ, ଭିନ୍ନକ୍ଷମ, ସଂଖ୍ୟାଲଘୁ ଏବଂ ଶୋଷିତ ସମାଜରେ ପଛୁଆ ହୋଇ ରହିଥିବା ବ୍ୟକ୍ତିମାନଙ୍କ ସମ୍ମାନକୁ ନିଶ୍ଚିତ କରିବା ଏବଂ ସେମାନଙ୍କର ଜୀବନରେ ଉନ୍ନତି ଆଣିବାକୁ ଗମ୍ଭୀର ପ୍ରୟାସ କରାଯାଇଛି । ଏହା ମାନବ ଅଧିକାର ସୁରକ୍ଷାକୁ ସୁନିଶ୍ଚିତ କରିବାରେ ସାହାଯ୍ୟ କରୁଛି । ବିଗତ ଦିନରେ ଯେତେ ସବୁ ଯୋଜନାମାନ ପ୍ରସ୍ତୁତ କରାଯାଇଛି, କାର୍ଯ୍ୟକାରୀ ହୋଇଛି ସବୁର ଉଦ୍ଦେଶ୍ୟ ହେଉଛି ଲୋକଙ୍କର ହିତ, ମୌଳିକ ଆବଶ୍ୟକତା ପୂରଣ ଏବଂ ଅଧିକାରକୁ ସୁନିଶ୍ଚିତ କରିବା । ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶ ପାଇଁ ଅଧିକାର ଏକ ଅପରିହାର୍ଯ୍ୟ ସତ୍ୟ ।ଏହି ଅଧିକାରଗୁଡିକ ଆମ ସମ୍ବିଧାନ ତଥା ମିଳିତ ଜାତିସଂଘ ଦ୍ୱାରା ପ୍ରଦତ୍ତ, ସୁରକ୍ଷିତ ତଥା ସାର୍ବଜନୀନ ।

ସମସ୍ତଙ୍କୁ ଶିକ୍ଷାଦାନର ସୁଯୋଗ ପ୍ରଦାନ, ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ସର୍ବୋଚ୍ଚ ମାନର ଉପଭୋଗ କରିବାର ଅଧିକାର, ସମସ୍ତଙ୍କୁ ଔଷଧ ଯୋଗାଣ, ସମସ୍ତଙ୍କ ପାଇଁ ରୋଜଗାର, ସମସ୍ତଙ୍କୁ ପର୍ଯ୍ୟାପ୍ତ ଖାଦ୍ୟ ବିଶେଷ କରି ଏକ କ୍ଷୁଧାମୁକ୍ତ ଓଡ଼ିଶା ପାଇଁ ଖାଦ୍ୟ ନିରାପତ୍ତା ଯୋଜନା ମିଆଦ ବୃଦ୍ଧି ଓଡ଼ିଶାବାସୀଙ୍କ କଲ୍ୟାଣ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଅଙ୍ଗୀକାରବଦ୍ଧତାର ଗୋଟିଏ ଗୋଟିଏ ଦୃଢ଼ ପ୍ରମାଣ ।

ମଣିଷର ଅଧିକାର ପ୍ରତିଶ୍ରୁତି ସହିତ ଅଙ୍ଗାଙ୍ଗୀ ଭାବେ ରହିଛି କର୍ତ୍ତବ୍ୟ । ଯଦି ଅଧିକାର ଓ କର୍ତ୍ତବ୍ୟ ସାଙ୍ଗ ହୋଇ ଗତି କରିବେ ଓ ପ୍ରତ୍ୟେକର ସହଯୋଗୀ ହେବେ ତା'ହେଲେ ଜୀବନ ଆହୁରି ସରଳ ହୋଇପାରିବ । ସ୍ୱାଧୀନତା ଆମର ଅଧିକାର, ତା'ର ଅପବ୍ୟବହାର ନ କରିବା ଓ ଅନ୍ୟର କ୍ଷତି ନ କରିବା ସହ ଅନ୍ୟର ଅଧିକାର ପ୍ରତି ସମ୍ମାନ ଦେଖାଇବା ମଣିଷର କର୍ତ୍ତବ୍ୟ ।

ସ୍ୱାଧୀନତା ମାନବର ଜନ୍ମଗତ ଅଧିକାର । ସ୍ୱାଧୀନଭାବେ ବଞ୍ଚିବାକୁ ସମସ୍ତେ ଚାହାନ୍ତି । ସେଥିପାଇଁ ସମସ୍ତଙ୍କ ସୁରକ୍ଷା ଓ ନିରାପତ୍ତା ମଧ୍ୟ ଆବଶ୍ୟକ । ଏହା ସତ୍ୟ ଯେ ମାନବିକ ଅଧିକାର ଉଲ୍ଲଘଂନ ମଣିଷର

ବିକୃତ ମାନସିକତାରୁ ସୃଷ୍ଟି । କିନ୍ତୁ ମଣିଷମାନଙ୍କ ଭିତରେ ମାନବିକତା ବା ମନୁଷତ୍ୱ ରହିଲେ କେହି କାହାର ଅଧିକାରକୁ କ୍ଷୁଣ୍ଣ କରିବେ ନାହିଁ ।

ମାନବାଧିକାର ସୁରକ୍ଷା ଆମ ସମସ୍ତଙ୍କ ଦାୟିତ୍ୱ ଏବଂ କର୍ତ୍ତବ୍ୟ । ମାନବିକ ଅଧିକାର ପ୍ରତି ସଚେତନତା ବୃଦ୍ଧିର ଆବଶ୍ୟକତା ରହିଛି । ପ୍ରତ୍ୟେକ ବ୍ୟକ୍ତିବିଶେଷ ସେମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱକୁ ବୁଝିବା ଜରୁରୀ । ଯେଉଁ ବ୍ୟକ୍ତି ନିଜର ଦାୟିତ୍ୱକୁ ଭଲ ଭାବେ ବୁଝିଛନ୍ତି, ସେମାନେ ଅନ୍ୟମାନଙ୍କ ଅଧିକାରକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିବା ଜାଣିଛନ୍ତି ବୋଲି ଆଶା କରିବା କଥା । ମାନବାଧିକାର ସୁରକ୍ଷା ପାଇଁ ସରକାର ବା କୌଣସି ସଂଗଠନ ସବୁଠି ଉପସ୍ଥିତ ରହିପାରିବେ ନାହିଁ । ଲୋକଙ୍କୁ ଯୋଜନା ବିଷୟରେ ଅବଗତ କରାଇବା, କାର୍ଯ୍ୟକାରୀ କରିବାରେ ସହଯୋଗ କରିବା, ସମ୍ବେଦନଶୀଳ ମନୋଭାବ ରଖିବା ହେଉଛି ପ୍ରତ୍ୟେକ ସଭ୍ୟ ବ୍ୟକ୍ତିଙ୍କ କର୍ତ୍ତବ୍ୟ । ତା'ହେଲେ ହିଁ ଆମେ ମାନବ ଅଧିକାରକୁ ସୁନିଶ୍ଚିତ କରିପାରିବା ।

ବର୍ଷର ଶେଷରେ ସେଇ ପୁରୁଣାକୁ ବିଦାୟ ଓ ନୂତନକୁ ସ୍ୱାଗତ ଏକ ଚିରାଚରିତ ପ୍ରକ୍ରିୟା । ତଥାପି ମଣିଷ ଜୀବନର ଆଶା ଓ ସ୍ୱପ୍ନ ମଣିଷ ଜୀବନକୁ ଆହୁରି ଶାଣିତ କରେ । ଆସନ୍ତୁ, ଆମେ ନୂତନକୁ ସ୍ୱାଗତ କରିବା ସେଇ ମାନବିକ ଅଧିକାର ପ୍ରତି ପ୍ରତିବଦ୍ଧତା ଓ କିଛି ନୂଆ କରିବାର ସ୍ୱପ୍ନ ନେଇ ।

କସ୍ତୁରୀ ମହାପାତ୍ର

**ସମ୍ପାଦିକା**
(କସ୍ତୁରୀ ମହାପାତ୍ର)



# ଜାତୀୟ ଆନ୍ଦୋଳନକାଳୀନ ଉପନ୍ୟାସ 'କଣାମାମୁ'

ଗୁରୁକଲ୍ୟାଣ ମହାପାତ୍ର

ସ୍ୱାଧୀନତା ପ୍ରାପ୍ତିର ଛଅସ୍ତରୀ ବର୍ଷ ପରେ ମଧ ଜାତୀୟ ଆନ୍ଦୋଳନକାଳୀନ ଓଡ଼ିଆ ସୃଷ୍ଟି ସମ୍ପଦକୁ ଓଡ଼ିଆ ସାହିତ୍ୟର ସମାଲୋଚକାମାନେ ଗବେଷଣାତ୍ମକ ଦୃଷ୍ଟିରୁ ଆଲୋଚନା କରିନାହାନ୍ତି । ଫଳରେ ଭାରତର ଜାତୀୟ ଆନ୍ଦୋଳନ କାଳରେ ଅନ୍ୟାନ୍ୟ ଭାରତୀୟ ଆଞ୍ଚଳିକ ଭାଷାର ସାହିତ୍ୟ ସମେତ ହିନ୍ଦୀ ଓ ଇଂରାଜୀ ଭାଷାର ସାହିତ୍ୟ ପରି ଓଡ଼ିଆ ସାହିତ୍ୟର ଦେଶାତ୍ମବୋଧକ ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ପାଇନାହିଁ । ଅତୀତରେ ଯଦିଓ ଓଡ଼ିଆ ଭାଷାକୁ ଭାରତର ଅନ୍ୟାନ୍ୟ ସ୍ୱୀକୃତିପ୍ରାପ୍ତ ଭାଷା ମଧ୍ୟରେ ସ୍ଥାନିତ କରାଯାଇଥିଲା ତଥାପି ଓଡ଼ିଆ ଭାଷାକୁ ଅଧିକ ମର୍ଯ୍ୟାଦିତ କରିବା ପାଇଁ ସ୍ୱାଧୀନତାର ପ୍ରାକ୍ କାଳରେ ଆରମ୍ଭ ହୋଇଥିବା ଉଦ୍ୟମ ସ୍ୱାଧୀନତାର ଉତ୍ତର କାଳରେ ଫଳପ୍ରଦ ହୋଇପାରିଛି । ଓଡ଼ିଶା ସରକାରଙ୍କ ଉଦ୍ୟମ ଓ ଭାରତ ସରକାରଙ୍କ ଆନ୍ତରିକତା ଯୋଗୁଁ ଓଡ଼ିଆ ଭାଷା ଏଇ ପ୍ରାୟ ନଅ ବର୍ଷ ତଳେ ୨୦୧୪ରେ ଷଷ୍ଠ ଶାସ୍ତ୍ରୀୟ ଭାଷାର ମର୍ଯ୍ୟାଦା ଲାଭ କରିପାରିଛି । ଉଲ୍ଲେଖନୀୟ ଯେ ୨୦୦୪ରେ ତାମିଲ, ୨୦୦୫ରେ ସଂସ୍କୃତ, ୨୦୦୮ରେ କନ୍ନଡ଼ ଓ ତେଲଗୁ ଏବଂ ୨୦୧୩ରେ ମାଲାୟାଲାମ ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇବା ପରେ ଷଷ୍ଠ ଶାସ୍ତ୍ରୀୟ ଭାଷା ରୂପେ ୨୦୧୪ରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ସ୍ୱୀକୃତି ମିଳିପାରିଛି ।



ଇତିମଧ୍ୟରେ ଓଡ଼ିଆ ଭାଷାର ଅନେକ ସାହିତ୍ୟ ପୁସ୍ତକ ଲକ୍ଷାଧିକ ସଂଖ୍ୟାରେ ପ୍ରକାଶ ପାଇଛି । ମୁଦ୍ରଣ ପଦ୍ଧତିର ଅଭିନବ ଆବିଷ୍କାର ଫଳରେ ସୁନ୍ଦର ସୁନ୍ଦର ପୁସ୍ତକମାନ ଏବେ ପ୍ରକାଶ ପାଉଥିଲେ ମଧ କେତୋଟି ଶାସ୍ତ୍ରୀୟ ମର୍ଯ୍ୟାଦାସମ୍ପନ୍ନ ଓଡ଼ିଆ ସାହିତ୍ୟ ପୁସ୍ତକ ଦୁଷ୍ପ୍ରାପ୍ୟ ହୋଇ ପଡ଼ିବାରୁ ଓଡ଼ିଶା ଭାଷା ପ୍ରତିଷ୍ଠାନ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ସେ ସବୁ ଦୁଷ୍ପ୍ରାପ୍ୟ ପୁସ୍ତକ ଲୋକଲୋଚନକୁ ଆଣିବାକୁ ରାଜ୍ୟ ସରକାର ଅତୀତରେ ଯେଉଁ ଯୋଜନା କରିଥିଲେ, ତାହାକୁ କାର୍ଯ୍ୟକାରୀ କରାଯିବାର ଆବଶ୍ୟକତା ଏବେ ଅନୁଭବ କରାଯାଇଛି ।

ଏସବୁ ଉଲ୍ଲେଖ କରିବାର ଉଦ୍ଦେଶ୍ୟ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ ଏକମାତ୍ର ଉପନ୍ୟାସ 'କଣାମାମୁ' ଯଦିଓ ଅସମ୍ପୂର୍ଣ୍ଣ ତଥାପି ଭାରତର ଜାତୀୟ ଆନ୍ଦୋଳନ ସମୟରେ ଏହା ଓଡ଼ିଆ ପାଠକମାନଙ୍କ ଉପରେ ଖୁବ୍ ପ୍ରଭାବ ବିସ୍ତାର କରିପାରିଥିଲା । ଏହାକୁ ଶାସ୍ତ୍ରୀୟ ଶ୍ରେଣୀୟ ସାହିତ୍ୟର ଅନ୍ତର୍ଭୁକ୍ତ କରାଯାଇପାରେ । ଏହା ଲେଖାଯାଇଥିଲା ୧୯୩୭ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ବର୍ଷକ ପରେ । ମାତ୍ର ଦୀର୍ଘ ଦଶ ବର୍ଷ କାଳ ଏହାର ଅସମ୍ପୂର୍ଣ୍ଣ ପାଣ୍ଡୁଲିପି ପଡ଼ିରହିଲା । ପୁସ୍ତକ ଆକାରରେ ପ୍ରକାଶ କରିବାକୁ କାନ୍ତକବିଙ୍କ ନିକଟରେ

ସମ୍ଭବ ନଥିଲା । ମାତ୍ର କାନ୍ତକବିଙ୍କର ଦୁଇ ପୁତ୍ର ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର ୧୯୪୭ ସେପ୍ଟେମ୍ବର ୮ ତାରିଖରୁ ସାପ୍ତାହିକ 'ଡଗର' ପତ୍ରିକାରେ କ୍ରମାନ୍ୱୟରେ ତାହାକୁ ପ୍ରକାଶ କରାଇଲେ– କାନ୍ତକବି ଲେଖୁଥିଲେ ଓ ତାହା ପ୍ରକାଶ ପାଇଁ ଦିଆଯାଉଥିଲା । ମାତ୍ର ତାହା ମଧ୍ୟ ସମ୍ଭବ ହେଲା ନାହିଁ । କାନ୍ତକବି ସ୍ୱଗ୍ରାମ ତାଳପଦା (ଭଦ୍ରକ)ରେ ବିଭିନ୍ନ ଜମିବାଡ଼ି ଓ ମାଲିମୋକଦ୍ଦମାରେ ବ୍ୟସ୍ତ ରହିବାରୁ ଆଉ ଲେଖିପାରି ନଥିଲେ । ଇତିମଧ୍ୟରେ 'ଡଗର' ପ୍ରେସ୍ ସ୍ଥାନାନ୍ତର ହୋଇ କଟକର ପିଠାପୁର ଅଞ୍ଚଳକୁ ଆସିଲା । ବିଶିଷ୍ଟ ହାସ୍ୟ ଲେଖକ ଫଟୁରାନନ୍ଦ (ଡାକ୍ତର ରାମଚନ୍ଦ୍ର ମିଶ୍ର) ଏହି 'ଡଗର' ପତ୍ରିକାର ପରିଚାଳନା ଦାୟିତ୍ୱ ନେଲେ । ଜଳବାୟୁ ପରିବର୍ତ୍ତନ ସକାଶେ କାନ୍ତକବି ତାଙ୍କର ସାଧନା ପୀଠ ଭଦ୍ରକରୁ ଆସୁଥିଲେ ୧୯୫୧ରେ କଟକର 'ଡଗର' ପ୍ରେସ୍‌କୁ ସହଧର୍ମିଣୀ ଲବଙ୍ଗଲତାଙ୍କ ସହ । 'ଡଗର' ପତ୍ରିକାର ସମ୍ପାଦନା କରୁଥାନ୍ତି ସେତେବେଳେ ନିତ୍ୟାନନ୍ଦ ମହାପାତ୍ର ଓ ତାହାର ପ୍ରକାଶକ ଥିଲେ ରାଇମୋହନ ଦାସ । 'ଡଗର' ସେତେବେଳକୁ ପାକ୍ଷିକରୁ ମାସିକ ପତ୍ରିକାରେ ପରିଣତ ହୋଇଥିଲା । ଫଟୁରାନନ୍ଦ ବାଧ୍ୟ କରିବାରୁ କାନ୍ତକବି ପୁଣି ଅସମ୍ପୂର୍ଣ୍ଣ 'କଣାମାମୁ' ଉପନ୍ୟାସକୁ ସମ୍ପୂର୍ଣ୍ଣ କରିବା ଲାଗି କିଛି କିଛି ଲେଖି ଚାଲିଲେ । 'ଡଗର'ରେ ପ୍ରକାଶ ପାଇ ତାହା ଆଦୃତ ହେଉଥାଏ । ମାତ୍ର କାନ୍ତକବି ତାହା ସମ୍ପୂର୍ଣ୍ଣ କରିନାହାନ୍ତି କି ତାହାର ଶେଷାଂଶ କେଉଁଠି ହଜିଗଲା, ତାହା ଈଶ୍ୱରଙ୍କୁ ଜଣା । ତାହା ରହିଗଲା ରହସ୍ୟାବୃତ ହୋଇ । ପରେ 'କଣାମାମୁ' ପୁସ୍ତକ ଆକାରରେ ପ୍ରକାଶିତ ହୋଇ ବେଶ୍ ଆଦୃତ ହୋଇଥିଲା–ସେହି ଅସମ୍ପୂର୍ଣ୍ଣ ଅବସ୍ଥାରେ । ଆମର ଜାତୀୟ ଆନ୍ଦୋଳନ ଆଧାରରେ 'କଣାମାମୁ' କିନ୍ତୁ ଏକ ସାର୍ଥକ ସୃଷ୍ଟି । ଗତାନୁଗତିକ ଧାରାରେ ଏଥିରେ କୌଣସି ନାୟିକା ବା ହିରୋଇନ୍ ନାହାନ୍ତି । କେବଳ କଣାମାମୁ ଚରିତ୍ର ହିଁ ନାୟକ ବା ହିରୋ । ନାୟିକାରହିତ ଏ ଉପନ୍ୟାସଟି ଏତେ ଜନପ୍ରିୟ ଯେ ଏବେବି ଓଡ଼ିଶା ପାଠକଙ୍କ ହୃଦୟରେ ତାହା ରହିଛି । ବିମଳ ହାସ୍ୟରସାତ୍ମକ ଶୈଳୀରେ ଏହି ଉପନ୍ୟାସଟି ଏକ ଅଦ୍ୱିତୀୟ ଓ ଅଦ୍ଭୁତ ସୃଷ୍ଟି । ଜଗନ୍ନାଥଙ୍କର ହାତ ସମ୍ପୂର୍ଣ୍ଣ ନୁହେଁ । ତଥାପି ସେ ପୂର୍ଣ୍ଣବ୍ରହ୍ମର ମାନ୍ୟତା ପାଆନ୍ତି । ସେହିପରି ଅସମ୍ପୂର୍ଣ୍ଣ ହୋଇ ବି 'କଣାମାମୁ' ଉପନ୍ୟାସଟି ସ୍ୱୟଂସମ୍ପୂର୍ଣ୍ଣ ବୋଲି ମନେ କରାଯାଏ ।

'କଣାମାମୁ'ର ପ୍ରକାଶକ, କାନ୍ତକବିଙ୍କର ଦୁଇ ପୁତ୍ର ନିତ୍ୟାନନ୍ଦ ଓ ଗୌରଚନ୍ଦ୍ର ନିଜ ନିଜର ନାମକୁ ଗୋପନ ରଖି 'ପ୍ରବେଶିକା' ମୁଖବନ୍ଧରେ ଏହି ଉପନ୍ୟାସ ସମ୍ପର୍କରେ ଲେଖିଛନ୍ତି ଏହିପରି – ତାଙ୍କର 'ନାହିଁ ମାମୁଠାରୁ କଣାମାମୁ ଭଲ' ଟିଏ କେହି ନଥିଲେ । ମାମୁ ଥିଲେ ଅତି ପ୍ରିୟ, ଅତି ଘନିଷ୍ଠ– ଏକା ବେଳକେ ପିତୃପ୍ରତିମ । ବାଳକ କାଳରେ, ମାତୁଳାଳୟରେ, ସେଇ ବୈତରଣୀ କୂଳର ଚିତ୍ର ତାଙ୍କ କବି ଜୀବନକୁ ପ୍ରଭୂତ ପ୍ରଭାବିତ କରିଛି । ଏ କଥା ସେ ବାରମ୍ବାର ସ୍ୱୀକାର କରିଛନ୍ତି– କଥାରେ,ପ୍ରସଙ୍ଗରେ । ଖଣ୍ଡକାବ୍ୟ 'ବୈତରଣୀ' ତା'ର ସାକ୍ଷୀ । ଆଉ 'କଣାମାମୁ'ର ପ୍ରାକୃତିକ ଚିତ୍ର ସତେଯେପରି ସେଇ ବୈତରଣୀ କୂଳଠାରୁ ଅନତି ଦୂର କୌଣସି ଗୋଟିଏ ଅଖ୍ୟାତ ପଲ୍ଲୀଗ୍ରାମ ।...ଇଚ୍ଛା ଥିଲା କଣାମାମୁଙ୍କୁ ୧୯୪୨ ବିଦ୍ରୋହର ନେତା କରି ଛାଡ଼ି ଦେବା ପାଇଁ । ମାତ୍ର ତାହା ହେବାର ନଥିଲା...ନ ହେଲା । କଣାମାମୁ କଣା ରହିଗଲେ, ପୂର୍ଣ୍ଣ ହୋଇପାରିଲା ନାହିଁ । ତଥାପି 'ଚକ୍ଷୁ ପୀଡ଼ୈବ୍ୟ କେବଳମ୍' ତ ନୁହେଁ... ଏହା ଏକ ଅକ୍ଷୟ କୃତି ।

ରାଜ୍ୟର ପଥଭ୍ରଷ୍ଟ ଯୁବକମାନଙ୍କୁ ତାଲିମ ଦେଇ ତତ୍‌କାଳୀନ ବ୍ରିଟିଶ ଶାସନ ପଦ୍ଧତି ବିରୋଧରେ ଏକଜୁଟ୍ କରିବା ପାଇଁ କଣାମାମୁ ଏହି ଉପନ୍ୟାସରେ ପ୍ରୟାସ କରିଛନ୍ତି । ଏହି ଉପନ୍ୟାସର ମୁଖ୍ୟ ଚରିତ୍ର କଣାମାମୁଙ୍କ ଚରିତ୍ର ସହିତ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଚରିତ୍ରର ସାମଞ୍ଜସ୍ୟ ଥିବା ପରି ମନେହୁଏ । ତଥାପି ଗବେଷକ ଓ ସାହିତ୍ୟ ସମାଲୋଚକମାନେ ସେ ସମ୍ପର୍କରେ ଅଧିକ ଗବେଷଣା କରିବା ଉଚିତ ହେବ ବୋଲି ଏ ଲେଖକ ମନେ କରେ ।

ଏହି ଉପନ୍ୟାସର ଶେଷାଂଶରେ କଣାମାମୁ ଜେଲ୍‌ରୁ ଖସି କେଉଁଆଡ଼େ ପଳାଇଛନ୍ତି – ବ୍ରିଟିଶ ପୋଲିସ ଆଖିରେ ଧୂଳି ଦେଇ । କାନ୍ତକବିଙ୍କ ଭାଷାରେ–'ହଗୁରି–ସେ କଥା କ'ଣ କେହି ନିର୍ଧାର୍ଯ୍ୟ କରି କହୁଛି । ଏଇ ତା' ଉପରେ, ସିଏ ୟା' ଉପରେ ଦୋଷ ଗଡ଼ାଇବାରେ ଲାଗିଛନ୍ତି ଖାଲି । ସିପେଇ ଦି'ଜଣ କଥାଭାଷା ହଉଥିଲେ କି ଫାଟକ ଖୋଲି କୟଦୀ ପୂରାଉଥିବା ବଖତରେ ଛଞ୍ଚାଣ ପରି କାହୁଁ ଆସି ପହରାବାଲାଙ୍କୁ ଧକ୍‌କାଏ ଲେଖା କଷି ଦେଇ–ଛୁ । ଶଳେ ଉଠିଲା ବେଳକୁ ଆଉ କିଏ ଥାଏ !'

ଏହି ଉପନ୍ୟାସଟି କଲେଜ ପାଠ୍ୟକ୍ରମରେ ସ୍ଥାନିତ ହୋଇଥିଲା । 'ଓ୍ୱାନ୍ ଆଇ ଅଙ୍କଲ' ନାମରେ ଏହାର ଇଂରାଜୀ ଅନୁବାଦ କରିଛନ୍ତି–ଶ୍ରୀ କେ.କେ. ମହାପାତ୍ର, ଯାହାକୁ ଓରିଏଣ୍ଟ ଲଙ୍ଗମେନ୍ ଛାପି ଥିଲେ । ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ ସ୍ୱର୍ଗୀୟ ନିରଦ ମହାପାତ୍ର ମଧ୍ୟ ଶାସ୍ତ୍ରୀୟ ଉପନ୍ୟାସ କ୍ରମରେ ଦୂରଦର୍ଶନରେ ଏହାକୁ ପ୍ରଦର୍ଶନ କରିଥିଲେ ଧାରାବାହିକ ଭାବରେ । ମାତ୍ର ସାତଗୋଟି ଅଧ୍ୟାୟରେ ସେ ଏହାକୁ ସୀମିତ ରଖିଥିଲେ । ସ୍ୱାଧୀନତା ଆନ୍ଦୋଳନକାଳୀନ ଏ ଉପନ୍ୟାସଟି ଯେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ମାଇଲଖୁଣ୍ଟ, ଏଥିରେ ସନ୍ଦେହ ନାହିଁ । ବିଶିଷ୍ଟ ସାହିତ୍ୟିକ ଓ ଦାର୍ଶନିକ ସ୍ୱର୍ଗୀୟ ମନୋଜ ଦାସ ଏହି 'କଣାମାମୁ' ଉପନ୍ୟାସ ସମ୍ପର୍କରେ ଥରେ ଉଲ୍ଲେଖ କରିଥିଲେ, 'ଜଣେ ବଙ୍ଗୀୟ ପ୍ରଗତିଶୀଳ ସାହିତ୍ୟିକଙ୍କୁ ମୁଁ କାନ୍ତକବିଙ୍କ 'କଣାମାମୁ'ର କେତେକ ଅଂଶ ଅନୁବାଦ କରି ଶୁଣାଇଥିଲି । ସେ ମନ୍ତବ୍ୟ କରିଥିଲେ, 'ବାସ୍ତବତାର ମାନଦଣ୍ଡ ଦିୟେ ବିଚାର କର୍‌ଲେ ଆପନାଦେର୍ କାନ୍ତକବି ସ୍ୱୟଂସିଦ୍ଧ ପ୍ରଗତିଶୀଲ୍ ।' ଏ କଥା ମୋ ମନରେ ଦୃଢ଼ ରେଖାପାତ କରିଛି । କିନ୍ତୁ ତାଙ୍କ ଭାଷାରେ, 'ଆପନାଦେର୍ କାନ୍ତକବି' 'ଆମାଦେର୍' ହୋଇ ରହିଗଲେ । ତାଙ୍କୁ ସାର୍ବଜନୀନ କରିପାରିଲୁ ନାହିଁ ।'*(ଅବିସ୍ମରଣୀୟ : ମନୋଜ ଦାସ, ଡିସେମ୍ବର ୨୦୦୨ ସଂଖ୍ୟା ଉତ୍କଳ ପ୍ରସଙ୍ଗ', ସଂପାଦନା – ଗୁରୁକଲ୍ୟାଣ ମହାପାତ୍ର)* କାନ୍ତକବି ଜନ୍ମ ହୋଇଥିଲେ ଡିସେମ୍ବର ୯ ତାରିଖ ୧୮୮୮ରେ । କଟକ ସହରରେ । ତାଙ୍କର ଦେହାନ୍ତ ହୋଇଥିଲା, ଫେବୃଆରୀ ୨୪, ୧୯୫୩ରେ । ତାଙ୍କର ପବିତ୍ର ଜନ୍ମ ମାସରେ ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭୁବନେଶ୍ୱର



# ଉତ୍କଳଗୌରବ ମଧୁସୂଦନ : ଏକ ବିହଙ୍ଗାବଲୋକନ

**ରବୀନ୍ଦ୍ର କୁମାର ବେହୁରିଆ**

ପ୍ରଫେସର ଡଃ ଅସିତ କବିଙ୍କ ଭାଷାରେ– ‘‘ମଧୁସୂଦନ ଆବିର୍ଭୂତ ହୋଇଥିଲେ ଓଡ଼ିଶାର ଚରମ ଦୁର୍ଦ୍ଦିନରେ– ସେତେବେଳେ ଆମ ଜାତୀୟ ଜୀବନରେ ଚରମ ନିର୍ବେଦତା, ଉତ୍କଳ ଜନନୀ ଛିନ୍ନ–ମସ୍ତା, ଆମର ରାଜନୈତିକ ଜୀବନ କଳଙ୍କିତ, ଅର୍ଥନୈତିକ ଜୀବନ ବିପର୍ଯ୍ୟସ୍ତ, ଆଉ ସାମାଜିକ ଜୀବନରେ ଅନେକ ଅନେକ ଅନ୍ଧକାର । ସେ ଆମ ଭିତରେ ସ୍ୱଦେଶ ପ୍ରେମର ଜାଗୃତି ପାଇଁ ଆମକୁ ଉଦ୍‌ବୁଦ୍ଧ କରିବାକୁ ଯାଇ କହିଗଲେ... (ସ୍ୱଦେଶ ପ୍ରେମ ମନୁଷ୍ୟର ଧର୍ମ । ଏହା ହିଁ ମନୁଷ୍ୟତା) ସେ ଆମକୁ କହିଗଲେ ଜାତିପ୍ରେମ ବହ୍ନି ପ୍ରଜ୍ଜ୍ୱଳିତ କରିବାକୁ, ସ୍ୱାର୍ଥକୁ ଆହୁତି ଦେବାକୁ । ଗୋଟିଏ ଇତିହାସ ପ୍ରସିଦ୍ଧ ଜାତି ଯେତେବେଳେ ଆତ୍ମପ୍ରତ୍ୟୟ ହରାଇ ଆର୍ତ୍ତନାଦ କରୁଥିଲା, ସେତେବେଳେ ତା’ର ପୁନରୁଦ୍ଧାର ପାଇଁ ଅତୀତର ପ୍ରେରଣା ଯେ ଅପରିହାର୍ଯ୍ୟ ତାହା ଅନୁଭବ କରି ସେ ଜାତିର ଇତିହାସ ସମ୍ପର୍କରେ ଜାତିକୁ ସଚେତନ କରିଗଲେ ଏବଂ କହିଗଲେ, ‘ଜାତି ଇତିହାସ ଜାତିର ନିର୍ଝର, ତହିଁ ବହେ ସଦା ଜାତି ପ୍ରାଣଧାର ।’ ପୁଣି ‘ସେ ଧାରାରୁ ନୀର ପିଏ ଯେଉଁ ନର, ନିଶ୍ଚେ ହେବ ସେହି ଜାତି କର୍ମବୀର ।’ ମଧୁସୂଦନଙ୍କ ଭିତରେ କଥା କହିଥିଲା ଏ ଦେଶର ଜାତୀୟ ସ୍ୱାଭିମାନ । ତାଙ୍କ ଜୀବନଗାଥା ସମକାଳୀନ ଓଡ଼ିଶାର ଇତିହାସ । ଏ ଇତିହାସ ନବଜାଗରଣର, ସଂକଳ୍ପ ଓ ପ୍ରତିଶ୍ରୁତିର, ତପସ୍ୟାର, ସ୍ୱାଭିମାନର ଓ ଆତ୍ମପ୍ରତ୍ୟୟର ।’’



**ଜୀବନ ପ୍ରବାହ**

ମଧୁସୂଦନ ଦାସ ୧୮୪୮ ଅପ୍ରେଲ ୨୮ ତାରିଖରେ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ମଧୁସୂଦନ ଥିଲେ ଚଉଧୁରୀ ରଘୁନାଥ ଦାସଙ୍କର ତୃତୀୟ ସନ୍ତାନ । ମଧୁସୂଦନଙ୍କ ଜନନୀ ପାର୍ବତୀ ଦେବୀ ଧର୍ମପରାୟଣା ମହିଳା ଥିଲେ । ଶିଶୁ ମଧୁସୂଦନଙ୍କର ନୈତିକ ଜୀବନ ଓ ଚରିତ୍ର ଗଠନ ଉପରେ ପାର୍ବତୀ ଦେବୀଙ୍କର ଧର୍ମପୂତ ଜୀବନର ପ୍ରଭାବ ବଡ଼ ଗଭୀର ଭାବରେ ପଡ଼ିଥିଲା । ପିଲାଟି ଦିନରୁ ମଧୁସୂଦନ ମା’ଙ୍କଠାରୁ ଶିଖିଥିଲେ, ‘‘ଆଲୋ ସଖୀ, ଆପଣା ମହତ ଆପେ ରଖି ।’’

ଚାଟଶାଳୀ ପାଠ ଶେଷ କରିବା ପରେ ମଧୁସୂଦନ ସତ୍ୟଭାମାପୁର ନିକଟବର୍ତ୍ତୀ ମହାସିଂହପୁର Middle Vernacular Schoolରେ ପଢିଥିଲେ । ସେଠାରେ ପଢା ସରିବା ପରେ ହାଇସ୍କୁଲରେ ପଢିବା ଲାଗି ସେ କଟକ ଯାଇଥିଲେ । ସେତେବେଳେ କଟକରେ ମାତ୍ର ଗୋଟିଏ ହାଇସ୍କୁଲ ଥାଏ । ପରେ ସେହି ସ୍କୁଲଟି ଓଡ଼ିଶା ଡିଭିଜନ୍‌ର

ସ୍ୱନାମଧନ୍ୟ କମିଶନର ଟି.ଇ. ରେଭେନ୍ସା ସାହେବଙ୍କ ପ୍ରଶାସନିକ କ୍ଷମତା ପରିସରଭୁକ୍ତ ହୋଇଥିଲା । କଟକ ହାଇସ୍କୁଲରେ ପଢିବା ସମୟରେ ମଧୁସୂଦନ ଗୋଟିଏ ଘଟଣାରେ ସ୍କୁଲର ପ୍ରଧାନ ଶିକ୍ଷକଙ୍କର ବିଷଦୃଷ୍ଟିରେ ପଡ଼ି ସ୍କୁଲରୁ ବିତାଡ଼ିତ ହେବା ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ । କଟକ କଲେକ୍ଟର ସି:ହେଲିଙ୍କ ହସ୍ତକ୍ଷେପ ଫଳରେ ମଧୁସୂଦନଙ୍କ ଛାତ୍ର ଜୀବନ ନିଶ୍ଚିତ ବିପର୍ଯ୍ୟୟରୁ ରକ୍ଷା ପାଇଥିଲା ଓ ଷୋଳବର୍ଷ ବୟସରେ ଇଂରାଜୀ ୧୮୬୪ ମସିହାରେ ସେ କଟକ ହାଇସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ମଧୁସୂଦନଙ୍କର ମନରେ ଓରିମାନା ଥିଲା କିନ୍ତୁ ପୂରାପୂରି ଭିନ୍ନ ରକମର । ଚଉଧୁରୀ ରଘୁନାଥ ଦାସ ଏଣ୍ଟ୍ରାନ୍ସ ପାସ୍ କରିଥିବା ପୁଅକୁ ଏଣେ ଚାକିରି ଦଣ୍ଡିକି ମୁହାଁଉଥିବାବେଳେ, ମଧୁସୂଦନ ତେଣେ ମନେମନେ ଆଣ୍ଟ ଧରିଥାଆନ୍ତି ସର୍ବୋଚ୍ଚ ଇଂରାଜୀ ଶିକ୍ଷା ଲାଭ କରିବା ପାଇଁ । ବ୍ରିଟିଶ୍ ଶିକ୍ଷାନୀତିର କୂଟଚକ୍ରାନ୍ତ ଫଳରେ ପଡ଼ୋଶୀ ବଙ୍ଗ ପ୍ରଦେଶରୁ ସେତେବେଳକୁ ଶହ ଶହ ଗ୍ରାଜୁଏଟ୍ ବାହାରୁଥିବାବେଳେ ସାରା ଓଡ଼ିଶାରୁ ମାତ୍ର କେହି ଓଡ଼ିଆ ସେ ଯାଏଁ ଗ୍ରାଜୁଏଟ୍ ହେବାର ସୁବିଧା ପାଇପାରିନଥାଏ । ୧୮୬୪ ମସିହା ବେଳକୁ ସବୁ ସରକାରୀ ଅଫିସ୍‌ରେ ଇଂରାଜୀ ବ୍ୟବହାର ଏକରକମ ବାଧ୍ୟତାମୂଳକ ହୋଇସାରିଥିଲା । ତା’ ବ୍ୟତୀତ ଓଡ଼ିଶାର ପ୍ରଥମ ସ୍ନାତକ ହେବା ପାଇଁ ମଧୁସୂଦନଙ୍କ ମନରେ ମୂଳରୁ ଗୋଟାଏ ପ୍ରବଳ ଆକାଂକ୍ଷା ଥିଲା । ଉଚ୍ଚଶିକ୍ଷା ପାଇବା କଥା ଶୁଣି ଚଉଧୁରୀ ରଘୁନାଥ ଦାସଙ୍କ କ୍ରୋଧର ସୀମା ରହିଲା ନାହିଁ । କଲିକତା ଯାଇ ପଢିବା ଲାଗି ଟଙ୍କା ପଇସା ପାଇବାର କୌଣସି ଉପାୟ ନ ଦେଖି ମଧୁସୂଦନଙ୍କୁ ଶେଷରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ସାମୟିକ ଭାବରେ ତୃତୀୟ ଶିକ୍ଷକ ଭାବରେ କାର୍ଯ୍ୟ କରିବାକୁ ପଡ଼ିଥିଲା । ମାତ୍ର ସେଠାରେ ଅଳ୍ପଦିନ କାର୍ଯ୍ୟ କରିବା ପରେ ସେ ବାଲେଶ୍ୱର ଛାଡ଼ି କଲିକତା ଯିବାକୁ ସ୍ଥିର କରିଥିଲେ ।

ସତକୁ ସତ ଦିନେ ଚାନ୍ଦବାଲି ବନ୍ଦରରୁ କଲିକତାଗାମୀ ଗୋଟିଏ ଷ୍ଟିମର୍‌ରେ ବସି ଦିନକ ପରେ ମଧୁସୂଦନ ଯାଇ କଲିକତାରେ ପହଞ୍ଚିଲେ । କଲେଜରେ ନାମ ଲେଖାଇବା ପାଇଁ ପଇସାର ଅଭାବ । ଚାରିଆଡ଼େ ଖୋଜାଖୋଜି କରିବା ପରେ ଶେଷରେ ଭବାନୀପୁରର London Mission Society Collegeରେ ପହଞ୍ଚିଲେ । କଲେଜ ସୁପରିନ୍‌ଟେଣ୍ଡେଣ୍ଟ ରେଭେରେଣ୍ଡ୍ ଜେ.ପି. ଆସ୍ଟନ୍ ମଧୁସୂଦନଙ୍କଠାରୁ ତାଙ୍କ ଦୁରାବସ୍ଥା ଶୁଣି ତାଙ୍କ କଲେଜରେ ତାଙ୍କୁ ଗ୍ରହଣ କରିବାକୁ ରାଜି ହୋଇଗଲେ । ଏତଦ୍‌ବ୍ୟତୀତ ପଢାପଢି ଖର୍ଚ୍ଚ ତୁଲାଇବା ପାଇଁ ମାସିକ ସାତଟଙ୍କା ହିସାବରେ ମଧୁସୂଦନଙ୍କୁ ଷ୍ଟାଇପେଣ୍ଡ୍ ମିଳିବାର ବନ୍ଦୋବସ୍ତ ମଧ୍ୟ କରିଦେଲେ ।

କଲିକତାରେ Young Bengal ଗୋଷ୍ଠୀ ସେତେବେଳକୁ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ । ମଧୁସୂଦନ ମଧ୍ୟଯୁଗର ଏହି ଦୁର୍ବାର ପ୍ରଭାବରୁ ବେଶିଦିନ ମୁକ୍ତ ରହିପାରିନଥିଲେ । ଶେଷରେ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବାକୁ ସ୍ଥିର କଲେ । ପିତା ରଘୁନାଥ ଦାସ ଏଥିପାଇଁ ମଧୁସୂଦନଙ୍କୁ ତେଜ୍ୟପୁତ୍ର କରିଥିଲେ ।

୧୮୭୦ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ମଧୁସୂଦନ ବି.ଏ. ପାସ୍ କରି ଓଡ଼ିଶାର ପ୍ରଥମ ସ୍ନାତକ ହେବାର ଅଭିଳାଷ ପୂରଣ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ଭାଷାରେ– ‘‘କଲିକତା କଲେଜରେ ଅଧ୍ୟୟନ କରୁଥିବାବେଳେ ମଧୁବାବୁ ୟୁରୋପର ରାଜନୈତିକ ଅବସ୍ଥାକୁ ଭଲ ଭାବରେ ଅନୁଧ୍ୟାନ କରୁଥିଲେ । ଜର୍ମାନ୍ ଲୋକଙ୍କର ‘‘ବୃହତ୍ ଜର୍ମାନୀ ଆନ୍ଦୋଳନ’’ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ୧୮୭୧ ଖ୍ରୀଷ୍ଟାବ୍ଦରେ ସେ ଏମ୍.ଏ. ପଢୁଥିବାବେଳେ ଜର୍ମାନୀର ବିସ୍‌ମାର୍କ, ଇଟାଲୀର ଗାରିବାଲ୍‌ଡି ପ୍ରଭୃତିଙ୍କ ଦେଶାଭିମାନ ଓ ତ୍ୟାଗ କାହାଣୀ ସେ ଶ୍ରଦ୍ଧାର ସହିତ ଶୁଣିଥିଲେ ଏବଂ ଓଡ଼ିଶାର ଦୁର୍ଦ୍ଦଶା କଥା ମନେପକାଇ ଚିନ୍ତିତ ହୋଇପଡୁଥିଲେ । ବୃହତ୍ତର ଓଡ଼ିଶା ଗଠନରେ ଏପରି ତ୍ୟାଗ ଓ ଆନ୍ଦୋଳନ ଆବଶ୍ୟକ ଥିବା ଅନୁଭବ କରିଥିଲେ । ସେହି ସମୟରୁ ଓଡ଼ିଶା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଭାବ ତାଙ୍କ ମନରେ ଉଦୟ ହୋଇଥିଲା ।

କଟକ ଫେରିବା ପରେ ଏହି ବୀଜ ଅଙ୍କୁରିତ ହୋଇ ବିରାଟ ବୃକ୍ଷର ଆକାର ଧାରଣ କଲା ।'' ୧୮୭୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ସେ ଏମ୍.ଏ ପାସ୍ କରିବା ପରେ ସୌଦାମିନୀ ନାମ୍ନୀ ଏକ ବଙ୍ଗୀୟ ଖ୍ରୀଷ୍ଟିଆନ୍ ପାଦ୍ରୀଙ୍କର କନ୍ୟାକୁ ବିବାହ କରିଥିଲେ । ଶ୍ରୀରାମପୁର ମିସନାରୀ କଲେଜରେ ଅଧ୍ୟାପକ ଭାବେ ଯୋଗଦାନ କରିଥିଲେ । ପ୍ରିନ୍ସପାଲ୍ ରେଭେରେଣ୍ଡ ଲଙ୍ଗ୍ ମଧୁସୂଦନଙ୍କୁ ବିଭିନ୍ନ କ୍ଲାସ୍‌ରେ Shakespearean Tragedyଠାରୁ ଆରମ୍ଭ କରି ଇଉକ୍ଲିଡ୍ ଜ୍ୟାମିତି ଯାଏଁ ପଢ଼ାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମାସକୁ ଦୁଇଶହ ଟଙ୍କା ପାଇବା ଚାକିରିକୁ ପ୍ରତ୍ୟାଖ୍ୟାନ କରି ଶେଷରେ Garden Reach High Schoolର ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ପାଇଗଲେ । ଏହି ଚାକିରି କରୁଥିବା ସମୟରେ କଲିକତା ବିଶ୍ୱବିଦ୍ୟାଳୟରେ ଆଇନ୍ କଲେଜ୍‌ରେ ନାମ ଲେଖାଇ ଯଥା ସମୟରେ ଆଇନ୍ ଉପାଧି ଲାଭ କରି ଓଡ଼ିଶାର ସର୍ବପ୍ରଥମ ଆଡ୍‌ଭୋକେଟ୍ ହୋଇପାରିଥିଲେ । ଆଇନ୍ କଲେଜ୍‌ରେ ପଢ଼ୁଥିବା ସମୟରେ ମଧୁସୂଦନ ଆଶୁତୋଷ ମୁଖାର୍ଜୀଙ୍କର ଗୃହ ଶିକ୍ଷକ ଥିଲେ । ସେ କେବଳ ଗୃହ ଶିକ୍ଷକ ନ ଥିଲେ, ଅଧିକନ୍ତୁ ଥିଲେ ଦୀକ୍ଷାଗୁରୁ । ଆଶୁତୋଷଙ୍କ ଭାଷାରେ– ''ମଧୁବାବୁ ମୋତେ କେବଳ ଇଂରାଜୀ ଶିକ୍ଷା ଦେଇ ନଥିଲେ, ମନୁଷ୍ୟ ଜୀବନରେ ଚରିତ୍ର ଓ ସ୍ୱାଧୀନତା ଦୁଇଟି ପ୍ରଧାନ ଗୁଣ ବୋଲି ବ୍ୟକ୍ତ କରି ସେଥିରେ ଅନୁପ୍ରାଣିତ ହେବାକୁ କହୁଥିଲେ ।''

### ଜାତୀୟ କଂଗ୍ରେସ ଓ ମଧୁସୂଦନ

ଓଡ଼ିଆ ଯୁବକ ସଂଘ, ଉତ୍କଳ ସେବା ମାଧ୍ୟମରେ ମଧୁସୂଦନଙ୍କ ଦେଶ ସେବା ଆରମ୍ଭ । ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନକୁ ଓଡ଼ିଶାର ଯେଉଁ ବ୍ୟକ୍ତିମାନେ ପ୍ରତିନିଧି ରୂପେ ଯାଇଥିଲେ, ସେହିମାନଙ୍କର ନେତା ରୂପେ ମଧୁସୂଦନ ଯାଇଥିଲେ । ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନରେ ମଧ୍ୟ ସେ ଯୋଗାଦାନ କରିଥିଲେ ଗୌରୀଶଙ୍କରଙ୍କ ସହିତ । କଟକ ପ୍ରତ୍ୟାବର୍ତ୍ତନ ପରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାର ଉତ୍ତରରେ ସେ ଯାହା କହିଥିଲେ ସେଥିରୁ ତାଙ୍କର ରାଜନୈତିକ ଦୃଷ୍ଟିଭଙ୍ଗୀର ଆମେ ପରିଚୟ ପାଇଥାଉଁ । ତାଙ୍କ ଭାଷାରେ– ''ସଂକୀର୍ଣ୍ଣ ଜାତିଭାବ ଓ ପ୍ରାଦେଶିକତାକୁ ପଛରେ ପକାଇବାକୁ ହେବ । ସମଗ୍ର ଭାରତବର୍ଷକୁ ନିଜର ମାତୃଭୂମି ରୂପେ ଗ୍ରହଣ କରି ମହାଭାରତୀୟ ଭାବରେ ଅନୁପ୍ରାଣିତ ହେବାକୁ ହେବ । ଜାତି ଜାତି ମଧ୍ୟରେ, ପ୍ରଦେଶ ପ୍ରଦେଶ ମଧ୍ୟରେ ଥିବା ଭେଦଭାବକୁ ଭୁଲିଯିବାକୁ ହେବ । ଏକତା ପ୍ରତିଷ୍ଠା କରିବାକୁ ହେବ । ଓଡ଼ିଶା ମହାଭାରତର ଏକ ଅଙ୍ଗ । ସମଗ୍ର ଭାରତର ଉନ୍ନତି ନ ହେଲେ ଓଡ଼ିଶାର ଉନ୍ନତି ଅସମ୍ଭବ । ଭାରତର ସୁଖ ଦୁଃଖ ସଙ୍ଗେ ଜଡ଼ିତ ରହି, ସାମ୍ୟ ରକ୍ଷାକରି, ତାଳ ମିଶାଇ ଓଡ଼ିଶାକୁ ଅଗ୍ରଗତି କରାଇବାକୁ ହେବ । ଜାତୀୟତା ଭିତରେ ନୀଚ, ସ୍ୱାର୍ଥପରତା, ସଂକୀର୍ଣ୍ଣତାର ସ୍ଥାନ ନାହିଁ । ପ୍ରାଦେଶିକ ଉନ୍ନତି ଭାରତୀୟ ଉନ୍ନତିର ପରିପନ୍ଥୀ ନୁହେଁ । ଓଡ଼ିଆ ଭାଷା ଓ ସଂସ୍କୃତି, ଶାସନ ପ୍ରଭୃତିର ଉନ୍ନତି ବିଧାନ ପାଇଁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷର ଉନ୍ନତି ପ୍ରତି ମଧ୍ୟ ଲକ୍ଷ୍ୟ କରିବାକୁ ହେବ ।'' (ଦେଶପ୍ରାଣ ମଧୁସୂଦନ– ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ)

### ବିବିଧ ପଦପଦବୀ

୧୮୮୦ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଓଡ଼ିଶାକୁ ଫେରି କଟକରେ ଓକିଲାତି କଲେ । ମଧୁସୂଦନଙ୍କ ପ୍ରଖର ବୁଦ୍ଧି ହେତୁ ସେ ଓକିଲାତିରେ ପ୍ରଖର ହୋଇ ଉଠିଲେ । ତେଣୁ ସେ ବାରିଷ୍ଟରୀ ପଢିନଥିଲେ ମଧ୍ୟ ଲୋକେ ତାଙ୍କୁ ପରମ ସମ୍ମାନ ଦେଇ 'ମଧୁ ବାରିଷ୍ଟର୍' ବୋଲି କହୁଥିଲେ । ଓକିଲାତି ଜୀବନରେ ସେ ବହୁ ଦରିଦ୍ର ଲୋକଙ୍କର ବିନା ଫିସ୍‌ରେ କେସ୍ ଲଢ଼ି ସେମାନଙ୍କୁ ଅତ୍ୟାଚାରୀ ଧନୀମାନଙ୍କ ହାତରୁ ରକ୍ଷା କରିଥିଲେ । ସେତେବେଳେ ଗୋରା ସରକାର ଓଡ଼ିଶାର ଠାକୁର ରାଜାଙ୍କ ହାତରୁ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର କାଢ଼ି ନେବା ପାଇଁ ଆଇନ୍ କରିବାରୁ ମଧୁବାବୁ ଏହି ଆଇନ୍ ରଦ୍ଦ ହେବା ପର୍ଯ୍ୟନ୍ତ ଲଢେଇ କରି ଓଡ଼ିଶାର ସମ୍ମାନ ରକ୍ଷା କରିଥିଲେ । ୧୮୮୩ ଖ୍ରୀଷ୍ଟାବ୍ଦରେ ସେ କଟକ ରେଭେନ୍ସା କଲେଜରେ 'ଲ'(Law) କ୍ଲାସ୍‌ରେ ଆଇନ୍ ଅଧ୍ୟାପକ ରୂପେ ନିଯୁକ୍ତି ପାଇଥିଲେ । କିଛିକାଳ

ଲାଗି ସେ କଟକ ଜିଲ୍ଲା ବୋର୍ଡର ଚେୟାରମ୍ୟାନ୍ ଓ କଲିକତା ବିଶ୍ୱବିଦ୍ୟାଳୟର ସଭ୍ୟ (Fellow) ରୂପେ ଗୃହୀତ ହୋଇଥିଲେ । ମଧୁବାବୁ ୧୮୯୬ ଖ୍ରୀଷ୍ଟାବ୍ଦରେ Legislative Councilକୁ ସଭ୍ୟ ଭୁରୂପେ ନିର୍ବାଚିତ ହୋଇଥିଲେ । ସେଥିରେ ସେ ୧୫ ବର୍ଷ କାଳ ରହି କାର୍ଯ୍ୟ କରିଥିଲେ । ୧୯୦୪ରେ ସରକାର ତାଙ୍କୁ C.I.E ଉପାଧିରେ ଭୂଷିତ କରିଥିଲା । ୧୯୧୨ ଖ୍ରୀଷ୍ଟାବ୍ଦରେ ବିହାର– ଓଡ଼ିଶା ପ୍ରଦେଶ ଗଠିତ ହେଲା ପରେ ମଧୁବାବୁ ଏହାର Legislative Councilକୁ ନିର୍ବାଚିତ ହୋଇଥିଲେ । ୧୯୧୪ ଖ୍ରୀଷ୍ଟାବ୍ଦରେ ମଧୁବାବୁ ଦିଲ୍ଲୀସ୍ଥିତ Imperial Legislative Councilକୁ ସଭ୍ୟ ରୂପେ ମନୋନୀତ ହୋଇଥିଲେ । ୧୯୧୯ ଖ୍ରୀଷ୍ଟାବ୍ଦରେ ଭାରତ ଶାସନ ଆଇନ୍ ଅନୁସାରେ ନୂତନ ନିର୍ବାଚନରେ ନିର୍ବାଚିତ ହୋଇ ମଧୁବାବୁ Bihar-Orissa Legislative Councilର ସଭ୍ୟ ହୋଇଥିଲେ । ୧୯୨୧ ଖ୍ରୀଷ୍ଟାବ୍ଦରେ ସରକାର ତାଙ୍କୁ ବିହାର–ଓଡ଼ିଶା ମନ୍ତ୍ରିମଣ୍ଡଳରେ ସ୍ଥାନୀୟ ସ୍ୱାୟତ୍ତ ଶାସନ ବିଭାଗ ଓ ନିର୍ମାଣ ବିଭାଗ ଦେଇ ଜଣେ ମନ୍ତ୍ରୀ ରୂପେ ରହି ବହୁ ଉନ୍ନତ ଆଇନ୍ ଦ୍ୱାରା ଜନସାଧାରଣଙ୍କର ଉପକାର ସାଧନ କରିଥିଲେ । ମଧୁବାବୁଙ୍କ ମତରେ– ''ମନ୍ତ୍ରୀ ହେଲେ ସାଧାରଣଙ୍କର ସେବକ ଓ ଜନସେବା ପାଇଁ ମନ୍ତ୍ରୀମାନେ ଦରମା ନେବା ଅନୁଚିତ୍ ।'' ସରକାର ମଧୁବାବୁଙ୍କର ଏହି ମତ ଗ୍ରହଣ ନ କରିବାରୁ ମଧୁବାବୁ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଦେଲେ ।

**ଜାତୀୟ ଜୀବନର ମନ୍ତ୍ରଦାତା**

୧୮୩୭ ମସିହାରେ ରାଜକୀୟ ଭାଷା ଭାବରେ ପାର୍ସି ପରିବର୍ତ୍ତେ ଓଡ଼ିଆ ଭାଷାକୁ ସ୍ୱୀକୃତି ପ୍ରଦାନ କରାଯାଇଥିଲେ ହେଁ ୧୮୫୦ ସାଲ ପର୍ଯ୍ୟନ୍ତ କୋର୍ଟ କଚେରୀରେ ଦଶଟଙ୍କାରୁ ଅଧିକ ବେତନ ପାଉଥିବା ଜଣେ ହେଲେ ଓଡ଼ିଆ ନଥିଲେ । କାରଣ କୁସଂସ୍କାରବଶତଃ ଓଡ଼ିଆମାନେ ବହୁକାଳ ପର୍ଯ୍ୟନ୍ତ ଇଂରେଜ ସରକାରଙ୍କ ଶିକ୍ଷା ବ୍ୟବସ୍ଥାକୁ ଗ୍ରହଣ କରିପାରଲେ ନାହିଁ । ଏହି ଦୁର୍ବଳତାର ସୁଯୋଗ ଗ୍ରହଣ କରି କଲିକତା ଆଗତ ବଙ୍ଗୀୟ ରାଜ କର୍ମଚାରୀମାନେ ଓଡ଼ିଆ ଭାଷା ଲୋପକରି ବଙ୍ଗଳା ଭାଷା ପ୍ରଚଳନ ପାଇଁ ଉଦ୍ୟମ କରିଥିଲେ । ସେମାନଙ୍କ ପରାମର୍ଶରେ ୧୯୪୯ ଖ୍ରୀଷ୍ଟାବ୍ଦରେ କଟକ କଲେକ୍ଟର ବାଉରିଂ ଏବଂ ପଶ୍ଚିମାଞ୍ଚଳର ଶିକ୍ଷା ପରିଦର୍ଶକ ବଙ୍ଗଳାଭାଷା ପ୍ରଚଳନ ପାଇଁ ଦାବୀ କରିଥିଲେ । ୧୮୫୦ ଖ୍ରୀଷ୍ଟାବ୍ଦରେ ରାଜସ୍ୱ ପରିଷଦର ସଭ୍ୟ ହେନେରୀ ରିକେଟ ଦାବୀ କଲେ ହିନ୍ଦୀ ଭାଷାର ପ୍ରଳଚନ ପାଇଁ । ୧୮୫୯ ଖ୍ରୀଷ୍ଟାବ୍ଦର କଥା । ପାଦ୍ରୀ ଲଙ୍ଗ୍ ସାହେବ ବଙ୍ଗଳା ଭାଷା ପ୍ରଚଳନ ସପକ୍ଷରେ ଯୁକ୍ତି ଉପସ୍ଥାପନ କଲାବେଳେ କଟକରୁ ପ୍ରକାଶିତ Star of Utkalରେ ଉମାଚରଣ ହାଲ୍ଦାର୍ ଦାବୀ କଲେ ଯେ ଓଡ଼ିଆ ଲିପିର କୌଣସି ଆବଶ୍ୟକତା ନାହିଁ । ବଙ୍ଗଳାଲିପି ପ୍ରଳଚନ କଲେ ବଙ୍ଗୀୟ ରାଜକର୍ମଚାରୀଙ୍କର ସମସ୍ୟାର ସମାଧାନ ହୋଇଯିବ । ଏହି ସମୟରେ ବାଲେଶ୍ୱରରେ ଅବସ୍ଥାପିତ ଶିକ୍ଷା ବିଭାଗର ପରିଦର୍ଶକ ଶିବଦାସ ଭଟ୍ଟାଚାର୍ଯ୍ୟ ବଙ୍ଗଳାଭାଷା ସପକ୍ଷରେ ଯୁକ୍ତି କରିବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ସବୁଠାରୁ ଅତ୍ୟନ୍ତ ପରିତାପର ବିଷୟ ସେ ତତ୍କାଳୀନ ଭାରତ ସରକାରଙ୍କ ଜଣେ ବରିଷ୍ଠ କର୍ମଚାରୀ ଓ ପ୍ରଖ୍ୟାତ ଐତିହାସିକ ରାଜେନ୍ଦ୍ର ଲାଲ୍ ମିତ୍ର କଟକ ସହରରେ ବୁଦ୍ଧିଜୀବୀମାନଙ୍କ ସଭାରେ ଯୁକ୍ତି ଉପସ୍ଥାପନ କଲେ ଯେ ଓଡ଼ିଆ ଭାଷା ଓ ସାହିତ୍ୟର କୌଣସି ଭବିଷ୍ୟତ ନାହିଁ । ଯେଉଁ ଉପାୟରେ ଅଳ୍ପକାଳ ମଧ୍ୟରେ ପୂର୍ବତନ ଓଡ଼ିଆ ଅଞ୍ଚଳ ମେଦିନୀପୁରରେ ଓଡ଼ିଆ ଭାଷା ଲୋପ କରିଦିଆଗଲା ଏବଂ ମେଦିନୀପୁରର ଓଡ଼ିଆମାନେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଅପମାନିତ ମନେକଲେ, ସେହି ଉପାୟରେ ଅନ୍ୟ ଓଡ଼ିଆ ଭାଷୀ ଅଞ୍ଚଳରୁ ଅତ୍ୟନ୍ତ ସହଜରେ ଓଡ଼ିଆ ଭାଷା ଉଠାଇ ଦେଇ ବଙ୍ଗଳା ଭାଷା ପ୍ରବର୍ତ୍ତନ କରାଯାଇପାରିବ । ଏଥିସହିତ ବାଲେଶ୍ୱରର ଜଣେ ବଙ୍ଗୀୟ ସ୍କୁଲ ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ପୁସ୍ତକ 'ଓଡ଼ିଆ ଏକ୍‌ଟା ସ୍ୱତନ୍ତ୍ର ଭାଷ ନୟ' ପୁସ୍ତକ ମଧ ଭୟଙ୍କର ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ଉପକୂଳବର୍ତ୍ତୀ ଓଡ଼ିଆଭାଷୀ ଅଞ୍ଚଳର ଏହିପରି ଦୁର୍ଦ୍ଦଶା ସହିତ ପଶ୍ଚିମ ଓଡ଼ିଶାର ଭାଷା ସମସ୍ୟା ମଧ

ଆହୁରି ଉତ୍କଟ ହୋଇଥିଲା । ୧୮୬୨ ଖ୍ରୀଷ୍ଟାବ୍ଦରୁ ପଶ୍ଚିମ ଓଡ଼ିଶା ଥିଲା ମଧ୍ୟପ୍ରଦେଶର ଶାସନାଧୀନ । ଶାସନ ବିଭାଗର ସମସ୍ତ କର୍ମଚାରୀ ଥିଲେ ହିନ୍ଦୀ ଭାଷାଭାଷୀ । ଚିଫ୍ କମିସନର୍ ସାର୍ ଉଡ୍‌ବର୍ଣ୍ଣ ୧୮୯୫ ମସିହାରେ ଓଡ଼ିଆ ଭାଷାକୁ ଉଠାଇ ଦେଇ ହିନ୍ଦୀ ଭାଷା ପ୍ରଚଳନ ପାଇଁ ଆଦେଶ ଦେଲେ । ''ସମ୍ବଲପୁରରେ ଓଡ଼ିଆ ଭାଷା ଲୋପ'' ଶୀର୍ଷକ ଆଲୋଚନା ପ୍ରକାଶିତ ହୋଇଥିଲା ।

''ହିନ୍ଦୀ ସରସ୍ୱତୀ ମୋ' ଛାତିରେ ବସି
କରିବ ପରା ରାଜତ୍ୱ
ମୋ ଆଶା କାନନ ଭସ୍ମରାଶି ହେବ
ତା' ନବ ଉଦ୍ୟାନେ ଖତ ।
ଉପମାତା ଆସି ଗର୍ଭଧାରିଣୀର
ମସ୍ତକେ ଚରଣ ଦେବ
ଏ ଦଶା ଦେଖିଲେ କେଉଁ ସନ୍ତାନର
ମନରେ ଦୁଃଖ ନ ହେବ ।''
(ଭାରତୀ ରୋଦନ)

ଇଂରେଜ ଶାସକଗଣ ଓଡ଼ିଆଭାଷୀ ଅଞ୍ଚଳକୁ ବିଭିନ୍ନ ପଡ଼ୋଶୀ ପ୍ରଦେଶ ସହିତ ସଂଯୁକ୍ତ କରି ରଖିଥିଲେ । ଓଡ଼ିଆମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ପାଇଁ ବିଶେଷ ସୁଯୋଗ ନଥିଲା । ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ବହୁକାଳ ରହିଲା ଅବହେଳିତ ହୋଇ । ଓଡ଼ିଆର ଜାତୀୟତା ବିକଶିତ ହୋଇପାରିଲା ନାହିଁ । ଓଡ଼ିଶାର ବାଣିଜ୍ୟ ବିଭବର ବର୍ତ୍ତମାନ ଓ ଭବିଷ୍ୟତ ହେଲା ଅନ୍ଧକାରମୟ । ଏହିପରି ଘଡ଼ିସନ୍ଧି ମୁହୂର୍ତ୍ତରେ ଜାତୀୟ ଭାବନାର ପ୍ରବକ୍ତା କବି ଗଙ୍ଗାଧର ଲେଖିଥିଲେ–

''ନିଜ ଘରେ ବସି ନିର୍ବାସନ ଦୁଃଖ
ଆମ୍ଭ କି ଲଲାଟ ଲେଖନ
ମାତୃଭାଷା ମନା ଭାଇ ସଙ୍ଗବିନା
ବିକଳ ହେଉଛି ଜୀବନ ।
ଗୁହାରିଲେ ଦୁଃଖ ନୃପତି ଆଗରେ
ତଡ଼ି ଦେଉଛନ୍ତି ଛାମୁରୁ ରାଗରେ
ନୁହେଁ ତାଙ୍କ ଦୋଷ, ବୁଝନ୍ତି ନାହିଁରେ
ଆମ୍ଭର କଥିତ ବଚନ ।'' (କବିତା ମାଳା)

ଖଣ୍ଡ ବିଖଣ୍ଡିତ ଓଡ଼ିଆଭାଷୀ ଅଞ୍ଚଳର ବିକଳଚିତ୍ର ସ୍ୱାଧୀନତାର ଦୀର୍ଘ ୭୬ ବର୍ଷ ପରେ ମଧ୍ୟ ଏହିପରି ରହିଛି । ବଙ୍ଗଳା ଦେଶରେ ରହିଲା ମେଦିନୀପୁର ବିହାରରେ ରହିଲା ସିଂହଭୂମ, ଷଢେଇକଳା ଓ ଖରସୁଆଁ । ମଧ୍ୟପ୍ରଦେଶରେ ରହିଲା ଫୁଲଝର, ଚନ୍ଦ୍ରପୁର ଜମିଦାରୀ, ରାୟପୁର, ବିଳାସପୁର, ବିନ୍ଦ୍ରା ନୂଆଗଡ଼, ବସ୍ତର, ରାୟଗଡ଼ ଓ ସାରଙ୍ଗଗଡ଼ । ଦକ୍ଷିଣ ଓଡ଼ିଶାର ମଞ୍ଜୁଷା, ଟିକିଲି, ଜଳନ୍ତର, ବୁଢାର ସିଂହ, ତରକା, ବିଶାଖାପାଟଣାର କେତେକ ଅଞ୍ଚଳ ରହିଗଲା ଆନ୍ଧ୍ରପ୍ରଦେଶରେ ।

ବିଚ୍ଛିନ୍ନାଞ୍ଚଳକୁ ଏକାଠି କରି ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶଟିଏ କରିବା ପାଇଁ ପ୍ରଥମେ ଭାରତ ମନ୍ତ୍ରୀ ସାର୍ ନର୍ଥକୋଟ୍ ୧୮୬୮ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାରଙ୍କୁ ସୁପାରିସ୍ କଲେ । ସେହି ବର୍ଷ ଭାରତ ସରକାରଙ୍କ ହିସାବ ନିରୀକ୍ଷକ ଜର୍ଜ୍ ଚିର୍‌ନେ ମଧ୍ୟ ତାଙ୍କ ଲିଖିତ Indian Politics ପୁସ୍ତକରେ ସେହି ପ୍ରସ୍ତାବ କରିଥିଲେ । ଓଡ଼ିଆବାସୀଙ୍କ ତରଫରୁ ପ୍ରଥମେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ଏବଂ ବିଚିତ୍ରାନନ୍ଦ ପଟ୍ଟନାୟକ ଦାବୀ ଜଣାଇଲେ ସରକାରଙ୍କ ନିକଟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ । ମାତ୍ର ସରକାର ଏଥିପ୍ରତି ଆଦୌ କର୍ଣ୍ଣପାତ କରିନଥିଲେ । ସରକାରଙ୍କ ଧାରଣା ଦୃଢୀଭୂତ ହୋଇଥିଲା ଯେ ଓଡ଼ିଆମାନେ ଅତ୍ୟନ୍ତ ଅନୁନ୍ନତ ଓ ଅଜ୍ଞାନ । ସେମାନଙ୍କୁ ଆନ୍ଦୋଳନ କରି ଆସେ ନାହିଁ । ତାଙ୍କର କୌଣସି ଚେତନାବୋଧ ଅଛି ବୋଲି ସେମାନେ ଧାରଣା କରିପାରୁନଥିଲେ ।

ଏହିପରି ଏକ ଜାତୀୟ ଦୁର୍ଗତି କାଳରେ ଓଡ଼ିଆମାନଙ୍କର ନେତୃତ୍ୱ ନେଇଥିଲେ ମି. ମଧୁସୂଦନ ଦାସ । କଲିକତାରୁ କଟକ ଫେରିବା ପରେ ଗୌରୀଶଙ୍କର ହିଁ ସୁଦୀର୍ଘ ୩୦ ବର୍ଷ କାଳ ତାଙ୍କର ଏକାନ୍ତ ସହଯୋଗୀ ଓ ସହକର୍ମୀ ଭାବରେ କାର୍ଯ୍ୟ କରି ଓଡ଼ିଶାର ରାଜନୈତିକ ଜୀବନ ଗଠନ ଓ ଉପାନ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ

ଏକ ଶାସନାଧୀନରେ ରଖିବା ପାଇଁ ଆପ୍ରାଣ ଉଦ୍ୟମ ଚଳାଇଥିଲେ । ମଧୁସୂଦନଙ୍କ କର୍ମପ୍ରବଣ ବିବିଧ ପ୍ରଚେଷ୍ଟା ଫଳରେ କଟକ ପ୍ରିଣ୍ଟିଙ୍ଗ୍ କମ୍ପାନି ଓଡ଼ିଶାରେ ନବଜାଗରଣର ପ୍ରଧାନ ଶକ୍ତିପୀଠରେ ପରିଣତ ହେବାକୁ ଅଧିକ ବିଳମ୍ବ ଲାଗି ନଥିଲା । ଭାଷା ବିବାଦର ସୂତ୍ରପାଦ ହେବା ଦିନଠାରୁ ଓଡ଼ିଶାର ସ୍ଥାନୀୟ ଅଧିବାସୀ ଓ କଲିକତାରୁ ଆସିଥିବା ଆଗନ୍ତୁକମାନଙ୍କ ମଧ୍ୟରେ ସଦ୍‌ଭାବ ନଥିଲା । ଭାଷା, ଜାତି ଓ ଧର୍ମର ବିବାଦରେ ବିପର୍ଯ୍ୟସ୍ତ ଗୋଟାଏ ସମାଜର ଏପରି ଦୁର୍ଦ୍ଦିନରେ ସେମାନଙ୍କୁ ପୁଣି ଏକ ମନ, ଏକ ପ୍ରାଣ, ଏକାକାର କରି ସମବେତ ଭାବରେ ସମସ୍ତଙ୍କୁ ଉନ୍ନତି, ପ୍ରଗତି ଓ ନୂତନ ଆଲୋକ ସନ୍ଧାନରେ ଆଗେଇ ନେବାର ଅପରିହାର୍ଯ୍ୟ ଗୁରୁଦାୟିତ୍ୱ ସତେ ଅବା ଇତିହାସର ଇଙ୍ଗିତରେ ଆସି ଲଦି ହୋଇପଡ଼ିଥିଲା ମଧୁସୂଦନଙ୍କ ଉପରେ ।

ମଧୁସୂଦନ ଥିଲେ ଭାରତବର୍ଷରେ ସ୍ୱଦେଶୀ ଆନ୍ଦୋଳନର ପ୍ରଥମ ପ୍ରବକ୍ତା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କେବଳ ତାଙ୍କର ପ୍ରଧାନ ଆଭିମୁଖ୍ୟ ନଥିଲା, ସେ ସ୍ୱପ୍ନ ଦେଖିଥିଲେ ଓଡ଼ିଶାର ସ୍ୱାଭିମାନର ପ୍ରତିଷ୍ଠା ପାଇଁ, ସ୍ୱଦେଶୀ ଶିଳ୍ପର ଅଭ୍ୟୁଦୟ ପାଇଁ ଏବଂ ସର୍ବୋପରି ଭାରତୀୟ ଜାତୀୟତାରେ ଅଭିମନ୍ତ୍ରିତ ହେବା ପାଇଁ । ୧୮୮୬ ଖ୍ରୀଷ୍ଟାବ୍ଦରୁ ୧୯୦୩ ସାଲ ପର୍ଯ୍ୟନ୍ତ ମି. ଦାସ ଥିଲେ ନିଖିଳ ଭାରତ କଂଗ୍ରେସର ଜଣେ ଟାଣୁଆ ସଭ୍ୟ । ସେ ଆଶା କରୁଥିଲେ ଯେ କଂଗ୍ରେସ ଅନୁଷ୍ଠାନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସମର୍ଥନ କରିବେ । ମାତ୍ର ୧୯୦୨ ସାଲରେ କଲିକତା କଂଗ୍ରେସର ସଭାପତି ସାର୍ ସୁରେନ୍ଦ୍ର ନାଥ ବାନାର୍ଜୀ ପ୍ରାଦେଶିକ ପ୍ରଶ୍ନ କଂଗ୍ରେସ କାର୍ଯ୍ୟକ୍ରମରେ ରହିବ ନାହିଁ ବୋଲି ସ୍ପଷ୍ଟ ଘୋଷଣା କରିଦେଲେ । ଏଥିରେ ମି.ଦାସ ହତାଶ ହୋଇ ସବୁଦିନ ପାଇଁ କଂଗ୍ରେସ ପରିତ୍ୟାଗ କଲେ ଏବଂ ପ୍ରତିଷ୍ଠା କଲେ ଉତ୍କଳ ସମ୍ମିଳନୀ ।

**ଉତ୍କଳ ସମ୍ମିଳନୀ**

ଓଡ଼ିଆମାନଙ୍କ ଆନ୍ଦୋଳନକୁ ଆଗେଇ ନେବାରେ ରିସ୍‌ଲେ ସର୍କୁଲାର୍ ବହୁ ପରିମାଣରେ ସହାୟକ ହୋଇଥିଲା ସତ କିନ୍ତୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକ ଶାସନାଧୀନ କରି ଓଡ଼ିଆବାସୀଙ୍କ ଲାଗି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ସମ୍ଭାବନାକୁ ବାସ୍ତବତାର ରୂପ ଦେବାଲାଗି ଅନେକ କିଛି ଉଦ୍ୟମର ତଥାପି ଆବଶ୍ୟକତା ରହିଥିଲା । କିନ୍ତୁ ଓଡ଼ିଶା ବାହାରେ ତିନିତିନିଟା ଅଲଗା ଅଲଗା ଶାସନ ଅଧୀନରେ ଯେଉଁସବୁ ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀର ଅଞ୍ଚଳ ରହିଥିଲା, ସେଗୁଡ଼ିକ ଏକତ୍ର କରି ଗୋଟିଏ ସ୍ୱତନ୍ତ୍ର ଓଡ଼ଶା ପ୍ରଦେଶ ଗଠନ କରିବା ଲାଗି ରିସ୍‌ଲେ ରିପୋର୍ଟରେ ଭାରତ ସରକାରଙ୍କ ଯେଉଁ ସିଦ୍ଧାନ୍ତ ନିଆଯାଇଥିଲା, ତାକୁ କାର୍ଯ୍ୟକାରୀ କରିବା ଲାଗି ଓଡ଼ିଶାର ଏକ ବ୍ୟାପକ ଓ ପ୍ରତିନିଧିମୂଳକ ଅନୁଷ୍ଠାନର ଏକାନ୍ତ ଆବଶ୍ୟକତା ଦେଖାଦେଇଥିଲା । ତେଣୁ ସେହି ବର୍ଷ ପ୍ରଥମ ଭାଗରେ ଗଞ୍ଜାମର କେତେଜଣ ବିଶିଷ୍ଟ ଲୋକ ରମ୍ଭାଠାରେ ଗୋଟିଏ ସଭା ଡାକି ସେହି ସଭାରେ ଏହି ବିଷୟ ଆଲୋଚନା କରିଥିଲେ । ଏ ବିଷୟରେ ପରାମର୍ଶ ଦେବା ଲାଗି ଓ ଅନ୍ୟମାନଙ୍କୁ ପଥ ନିର୍ଦ୍ଦେଶ କରିବା ଲାଗି ମଧୁସୂଦନଙ୍କୁ ଏହି ସଭାକୁ ବିଶେଷ ଭାବରେ ନିମନ୍ତ୍ରଣ କରାଯାଇଥିଲା । ରମ୍ଭାଠାରେ ଅନୁଷ୍ଠିତ ହୋଇଥିବା ସେହି ସଭାରେ ବିଚାର ଆଲୋଚନା ହୋଇ ଯାହା ସ୍ଥିର ହୋଇଥିଲା ତାହାରି ଫଳଶ୍ରୁତି ସ୍ୱରୂପ ଓଡ଼ିଶାରେ ''ଉତ୍କଳ ୟୁନିୟନ୍ କନ୍‌ଫେରେନ୍ସ'' ବା ''ଉତ୍କଳ ସମ୍ମିଳନୀ'' ଗଠିତ ହୋଇଥିଲା ।

୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖ ଦୁଇଦିନ ଧରି କଟକଠାରେ ଉତ୍କଳ ସମ୍ମିଳନୀର ଯେଉଁ ପ୍ରଥମ ଅଧିବେଶନ ବସିଥିଲା, ସେଥିରେ ସାରା ଓଡ଼ିଶାର ରାଜା ରାଜୁଡାଠାରୁ ଆରମ୍ଭ କରି ସାଧାରଣ ଚାଷୀ ମୂଲିଆ ପର୍ଯ୍ୟନ୍ତ ଅନେକ ଏପରିକି ଓଡ଼ିଶା ବାହାରୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକମାନେ ମଧ୍ୟ ବିପୁଳ ସଂଖ୍ୟାରେ ଯୋଗ ଦେଇଥିଲେ । ଓଡ଼ିଶା ବାହାରୁ ମୋଟ୍‌ରେ ୩୩୫ ଜଣ ପ୍ରତିନିଧି ''ଉତ୍କଳ ସମ୍ମିଳନୀ'' ପ୍ରଥମ ଅଧିବେଶନରେ ଯୋଗ ଦେଇଥିଲେ । ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳଗୁଡ଼ିକର ଏକତ୍ରୀକରଣ ନିମନ୍ତେ ନାନା ବିଚାର

ଆଲୋଚନା ଛଡ଼ା, ଓଡ଼ିଶାର ସାମାଜିକ, ଅର୍ଥନୈତିକ ସମସ୍ୟା ନେଇ ନାନା କଥା ମଧ ସେଥର ଅଧିବେଶନ ମଣ୍ଡପରେ ଆଲୋଚନା କରାଯାଇଥିଲା । ୧୯୨୦ ମସିହାରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ଅସହଯୋଗ ଆନ୍ଦୋଳନକୁ କର୍ମସୂଚୀ ରୂପେ ଗ୍ରହଣ କରିନେଇ ''ଉତ୍କଳ ସମ୍ମିଳନୀ'' ଭାରତୀୟ ଜାତୀୟ ଆନ୍ଦୋଳନ ସହିତ ଏକ ପ୍ରକାର ମିଳିତ ହୋଇଯାଇଥିଲା । କିନ୍ତୁ ସେ ପର୍ଯ୍ୟନ୍ତ ''ଉତ୍କଳ ସମ୍ମିଳନୀ'' ବରାବର ତା'ର ସ୍ୱତନ୍ତ୍ର ସତ୍ତା ବଜାୟ ରଖିଥିଲା । ଏହା ବସ୍ତୁତଃ ଜାତି, ବର୍ଣ୍ଣ, ଭାଷା ଓ ଅଞ୍ଚଳ ନିର୍ବିଶେଷରେ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ବାସ କରୁଥିବା ଲୋକମାନଙ୍କର ଏକ ସାର୍ବଜନୀନ ମହାସଭା ଥିଲା । ବିଚ୍ଛିନ୍ନାଞ୍ଚଳଗୁଡ଼ିକ ସମେତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାକୁ ଯେ ଉତ୍କଳ ସମ୍ମିଳନୀ ଲାଗି ପଡ଼ିଥିଲା ତାହା ନୁହେଁ, ଓଡ଼ିଶାରୁ ଅବଲୁପ୍ତ ହୋଇଯାଇଥିବା କୁଟୀରଶିଳ୍ପର ପୁନରୁଦ୍ଧାର, ପ୍ରଦେଶର ଶୈକ୍ଷିକ ଅଭିବୃଦ୍ଧି, କୃଷି ନୀତିରେ ପୁନର୍ଜାଗରଣ ସଙ୍ଗେ ସଙ୍ଗେ ଓଡ଼ିଶାରେ ବ୍ୟବସାୟଗତ ଶିକ୍ଷାର ପ୍ରସାର ଓ ସର୍ବୋପରି ଓଡ଼ିଶାର ସାଂସ୍କୃତିକ, ରାଜନୈତିକ ଜାଗୃତି ଆଦି ପ୍ରତ୍ୟେକ ବିଷୟରେ ''ଉତ୍କଳ ସମ୍ମିଳନୀ'' ବରାବର ସଚେଷ୍ଟ ରହିଥିଲା । ଭାରତୀୟ ଜାତୀୟ କଂଗ୍ରେସ ଅସ୍ପୃଶ୍ୟତା ନିବାରଣ ସମ୍ପର୍କରେ ସିଦ୍ଧାନ୍ତ ଗ୍ରହଣ କରିବା ପୂର୍ବରୁ ଏବଂ ସାମାଜିକ ଓ ରାଜନୈତିକ ପରିସରରେ ସ୍ୱଦେଶୀୟ ପ୍ରୟୋଗ ପ୍ରବର୍ତ୍ତନ କରିବା ପୂର୍ବରୁ ''ଉତ୍କଳ ସମ୍ମିଳନୀ'' ଏ ଦିଗରେ ଉଦ୍ୟମର ସୂତ୍ରପାତ କରିସାରିଥିଲା ।

ସମ୍ମିଳନୀ ତା'ର କର୍ମସୂଚୀ ମାଧ୍ୟମରେ ଓଡ଼ିଆବାସୀଙ୍କ ହୃଦୟରେ ଏକ ଦୃଢ଼ ଆସନ ଅଧିକାର କରିବାରେ ସକ୍ଷମ ହୋଇପାରିଥିଲା । ଓଡ଼ିଶାର ଲୋକେ ''ଉତ୍କଳ ସମ୍ମିଳନୀ''ର ସଭା ସମିତି ଓ କାର୍ଯ୍ୟକ୍ରମମାନଙ୍କରେ ଆଗ୍ରହର ସହିତ ଯୋଗଦାନ କରୁଥିଲେ । ଏହା ପରବର୍ଷ ସାରା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଓ ଓଡ଼ିଶା ବାହାରେ ଥିବା ବିଚ୍ଛିନ୍ନାଞ୍ଚଳରେ ସମ୍ମିଳନୀର ମୋଟ୍ ୩୧୮ଟି ଶାଖା ଅନୁଷ୍ଠାନ ଗଢି ଉଠିଥିଲା । ସର୍ବ ସାଧାରଣଙ୍କଠାରୁ ଦାନ ଓ ଚାନ୍ଦା ସୂତ୍ରରେ ଯାହା ମିଳୁଥିଲା, ତହିଁରେ ଉତ୍କଳ ସମ୍ମିଳନୀର ବିଭିନ୍ନ କାର୍ଯ୍ୟକ୍ରମଗୁଡ଼ିକ ସମ୍ପନ୍ନ କରାଯାଉଥିଲା । କିନ୍ତୁ ଏ ଦିଗରେ ଯାହା ଖର୍ଚ୍ଚ ହେଉଥିଲା ତା'ର ମୁଖ୍ୟ ଅଂଶ ମଧୁସୂଦନ ନିଜେ ତାଙ୍କର ବ୍ୟକ୍ତିଗତ ଉପାର୍ଜନରୁ ତୁଳାଉ ଥିଲେ । ସମ୍ମିଳନୀର ବିଭିନ୍ନ କାର୍ଯ୍ୟକ୍ରମ ନିମନ୍ତେ ମଧୁସୂଦନଙ୍କୁ ସମୟେ ସମୟେ ବ୍ୟକ୍ତିଗତ ଭାବରେ ନାନା ସୂତ୍ରରୁ ଋଣ ଆଣିବାକୁ ପଡୁଥିଲା ।

''ଉତ୍କଳ ସମ୍ମିଳନୀ'' ଓଡ଼ିଶାର ଜାତୀୟ ଜୀବନକୁ ମଧୁସୂଦନଙ୍କର ସର୍ବଶ୍ରେଷ୍ଠ ଉପହାର । ଏଠାରେ ଉଲ୍ଲେଖନୀୟ ଯେ ଦେଶ ମିଶ୍ରଣ ଆନ୍ଦୋଳନ ପାଇଁ ଗଞ୍ଜାମର ଅବଦାନ ଅବିସ୍ମରଣୀୟ । ଗଞ୍ଜାମ ସମ୍ମିଳନୀର ସଫଳତା ଓ ପ୍ରେରଣା ମଧୁସୂଦନଙ୍କୁ ''ଉତ୍କଳ ସମ୍ମିଳନୀ'' ପ୍ରତିଷ୍ଠା ପାଇଁ ଯେ ଉଦ୍‌ବୁଦ୍ଧ କରିଥିଲା, ଏହା ନିଃସନ୍ଦେହ । ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳକୁ 'ଉତ୍କଳ' ରୂପେ ଆଖ୍ୟାୟିତ କରି ଏହି ସମ୍ମିଳନୀକୁ ''ଉତ୍କଳ ସମ୍ମିଳନୀ'' କୁହାଯାଇଥିଲା । ମଧୁସୂଦନଙ୍କ ଭାଷାରେ ଏହା ଜନନୀ ଜନ୍ମଭୂମିର ପୂଜାମଣ୍ଡପ । ଓଡ଼ିଶାର ସର୍ବାଙ୍ଗୀନ କଲ୍ୟାଣ ସାଧନ ଓ ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ସମ୍ମିଳନୀର ଧେୟ ଥିଲା । ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ପ୍ରାଣେ ପ୍ରାଣେ ମହାପ୍ରେରଣାର ବହ୍ନି ଜାଳି ଦେଇଥିଲା । ଏହି ସମ୍ମିଳନୀ ରାଜା, ମହାରାଜା, ଜମିଦାର, ଶିକ୍ଷାବିତ୍, କବି, ଲେଖକ, ସାଧାରଣ ଜନତା ସମସ୍ତଙ୍କୁ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧି ପାରିଥିଲା ।

ଭାରତର କଂଗ୍ରେସ ଶାସକଗଣଙ୍କ ଚିନ୍ତାଧାରାରେ ମଧୁସୂଦନଙ୍କ ପ୍ରଯତ୍ନ ଫଳରେ ଯେଉଁ ଚେତନାର ଉଦୟ ଘଟିଥିଲା ତାହାର ପରିମାଣ ସ୍ୱରୂପ ଭାଷା ଓ ସଂସ୍କୃତିର ଭିତ୍ତିରେ ଭାରତର ବିଭିନ୍ନ ପ୍ରଦେଶଗୁଡ଼ିକ ପୁନର୍ଗଠିତ କରିବାର ସିଦ୍ଧାନ୍ତ ଗୃହୀତ ହୋଇଥିଲା । ଏ ସମ୍ପର୍କରେ ୧୯୧୮ ମସିହାରେ ''ଦି ଓଡ଼ିଆ'' ସାପ୍ତାହିକ ପତ୍ରିକା ସ୍ତମ୍ଭରେ ଲେଖିଥିଲେ, ''ବ୍ରିଟିଶ ଶାସନାଧୀନ ସମସ୍ତ ଓଡ଼ିଆ

ଭାଷାଭାଷୀ ଅଞ୍ଚଳର ଯଦି କୌଣସି ଆମେରିକାନ୍ ଐତିହାସିକ କେବେ ଲେଖନ୍ତି ସେ ବ୍ରିଟିଶ୍ ଶାସକ ବର୍ଗଙ୍କର କଥା ଓ କାମ ଭିତରେ ରହୁଥିବା ଏହି ବିକଟ ବୈଷମ୍ୟ ବିଷୟରେ ସହଜରେ ଅବଗତ ହୋଇପାରିବେ ।''

ବ୍ରିଟିଶ୍ ସରକାରର ଏହି ଅନୀତି ବିରୁଦ୍ଧରେ ମଧୁସୂଦନ ଜୀବନ ତମାମ ସଂଗ୍ରାମ ଚଳାଇଥିଲେ । ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ସ୍ୱତନ୍ତ୍ର ପ୍ରାଦେଶିକ ସରକାର ଅଧୀନରେ ରଖିବା ଲାଗି ତାଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ଶେଷରେ ଲର୍ଡ଼ କର୍ଜନ୍‌ଙ୍କ ଅମଳରେ ୧୯୦୩ ମସିହାରେ ଯେଉଁ ରିସ୍‌ଲେ ସର୍କୁଲାର୍ ପ୍ରକାଶିତ ହୋଇଥିଲା, ତହିଁରେ ଭାଷା ଓ ସଂସ୍କୃତି ବିଚାରରେ ପ୍ରଦେଶ ଗଠନ ନୀତିକୁ ଗ୍ରହଣ କରାଯାଇଥିଲା କେବଳ ସେତିକି ନୁହେଁ, ଏହାର ପରବର୍ତ୍ତୀ କାଳରେ ଭାରତୀୟ ଶାସନ ସଂସ୍କାର ସମ୍ପର୍କରେ ମଣ୍ଟେଗୁ– ଚେମସ୍‌ଫୋର୍ଡ ରିପୋର୍ଟ ଓ ସାର୍ ଜନ୍ ଆଲେସିବ୍ରୁକ୍ ରିପୋର୍ଟ ପ୍ରକାଶିତ ହୋଇଥିଲା । ସେ ସବୁଥିରେ ଅନ୍ୟାନ୍ୟ ନାନା ଆନୁଷଙ୍ଗିକ ବିଷୟରେ ଉତ୍‌ଥାନ କରାଯାଇଥିଲେ ସୁଦ୍ଧା ମୂଳତଃ ଭାଷା ଓ ସଂସ୍କୃତି ଦୃଷ୍ଟିରୁ ପ୍ରଦେଶ ଗଠନ ନୀତିକୁ ସ୍ୱୀକାର କରାଯାଇଥିଲା । ସ୍ୱାଧୀନତା ପରବର୍ତ୍ତୀ ଯୁଗରେ ୧୯୫୬ ମସିହାରେ ଭାରତ ସରକାର ଯେଉଁ ''State Reorganisation Commission'' ବସାଇଥିଲେ, ସେ କମିଶନ ମଧ୍ୟ ଭାଷା ଓ ସଂସ୍କୃତି ବିଚାରରୁ ପ୍ରଦେଶ ଗଠନ ନୀତିକୁ ଏକ ଅବଶ୍ୟ ପାଳନୀୟ ନୀତି ରୂପେ ଗ୍ରହଣ କରିନେଇଥିଲେ ।

**ଉତ୍କଳ ଟ୍ୟାନେରୀ**

ଓଡ଼ିଶାକୁ ସମଗ୍ର ସଭ୍ୟ ଜଗତର ସମ୍ମୁଖକୁ ଆଣିବାର ସ୍ୱପ୍ନ ମଧୁବାବୁ ଦେଖିଥିଲେ । ସ୍ୱାସ୍ଥ୍ୟଗତ କାରଣରୁ ୧୮୯୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ବିଲାତଯାତ୍ରା କାଳରେ ମଧ୍ୟ ସେଠାରେ ଓଡ଼ିଶାର ଶିଳ୍ପର ବୈଶିଷ୍ଟ୍ୟ ତଥା ଉତ୍କର୍ଷ ପ୍ରଦର୍ଶନ କକ୍ଷେ ଆୟୋଜନ କରିଥିଲେ ଶିଳ୍ପ ପ୍ରଦର୍ଶନୀ । ଦ୍ୱିତୀୟଥର ଇଂଲଣ୍ଡ ଯାଇ ସେଠାରୁ ଫେରିବାରେ ସେ ପାଶ୍ଚାତ୍ୟ ଉନ୍ନତ ପ୍ରଣାଳୀର ଅନୁସରଣରେ ''ଉତ୍କଳ ଟ୍ୟାନେରୀ'' ଆରମ୍ଭ କରିଥିଲେ । ସେ ସବୁବେଳେ କହୁଥିଲେ ଯେ ସ୍ୱଦେଶୀ ଶିଳ୍ପର ଏ ଦେଶରେ ପ୍ରଭୂତ ପ୍ରଗତି ଘଟିବା ନିଶ୍ଚିତ ଭାବରେ ଆବଶ୍ୟକ । ବିଭିନ୍ନ ଶିଳ୍ପ ଯୋଜନାକୁ କାର୍ଯ୍ୟକାରୀ ତଦ୍ୱାରା ନିଜେ ଲାଭବାନ ହେବାର ଲକ୍ଷ୍ୟ ନ ରଖି ଦେଶାତ୍ମବୋଧ ଓ ଉଦାର ମନୋଭାବ ଦ୍ୱାରା ଅନୁପ୍ରାଣିତ ହେବାକୁ ଶିଳ୍ପୋଦ୍ୟୋଗୀମାନଙ୍କୁ ସେ ନିବେଦନ କରୁଥିଲେ । ଊନବିଂଶ ଶତାବ୍ଦୀରେ ଯେଉଁ ଭାରତୀୟ ନେତୃବର୍ଗ ନିଜ ନିଜର ଆତ୍ମୋତ୍ସର୍ଗ ଓ ସ୍ୱାର୍ଥତ୍ୟାଗ ବଳରେ ଆଧୁନିକ ଭାରତ ନିର୍ମାଣର ପଥ ରଚନା କରିଥିଲେ, ମଧୁସୂଦନ ଥିଲେ ସେହି ପ୍ରଥିତଯଶା ବ୍ୟକ୍ତିବର୍ଗଙ୍କ ମଧ୍ୟରୁ ଅନ୍ୟତମ । ଏ ସମ୍ପର୍କରେ 'ବନ୍ଦେ ମାତରମ୍' ପତ୍ରିକାର ୧୯୦୭ ମସିହା ଡିସେମ୍ବର ୧୭ ତାରିଖ ସଂଖ୍ୟାରେ ମଧୁସୂଦନଙ୍କୁ ଲକ୍ଷ୍ୟ କରି ଅରବିନ୍ଦ ଯଥାର୍ଥରେ ଲେଖିଥିଲେ–

''ଗୋଟିଏ ଜାତିର ଅନ୍ତର୍ନିହିତ ସମସ୍ତ ଶକ୍ତିର ଜାଗରଣ ଓ ସଂଘଟନ ନ ଘଟିବା ପର୍ଯ୍ୟନ୍ତ ଦେଶରେ ଜାତୀୟ ଭାବ ବା ଜାତୀୟ ଚେତନାର ଯଥାର୍ଥ ଅଭ୍ୟୁଦୟ ଘଟିବା ସମ୍ପୂର୍ଣ୍ଣ ଅସମ୍ଭବ । ତେଣୁ ଦେଶର ଯେଉଁ ଲୋକମାନେ ରାଜନୈତିକ କ୍ଷେତ୍ରରେ ପଛୁଆ ହୋଇ ପଡ଼ିଛନ୍ତି, ସେମାନଙ୍କ ହୃଦୟରେ ଜାତୀୟ ଭାବର ଜାଗରଣ ଘଟାଇ ସେମାନଙ୍କୁ ସାମ୍ପ୍ରତିକ ରାଜନୈତିକ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ କରିବା ଦ୍ୱାରା ହିଁ ଯଥାର୍ଥରେ ଏହି ଲକ୍ଷ୍ୟ ସାଧିତ ହୋଇପାରିବ... ଓଡ଼ିଶାର ବର୍ତ୍ତମାନ ଏହି ଜାଗରଣର ସୂତ୍ରପାତ ଘଟିଛି । ଓଡ଼ିଶା ତାହାର ସ୍ୱତନ୍ତ୍ର ଅସ୍ତିତ୍ୱ ଲାଗି ଏକ ସୁଦକ୍ଷ ଓ ଶକ୍ତିଶାଳୀ ନେତାଙ୍କ ଅଧିନାୟକତ୍ୱରେ ବର୍ତ୍ତମାନ ଲାଗି ପଡ଼ିଥିବାର ଦେଖିବାକୁ ମିଳୁଛି । ଏହା ଅବଶ୍ୟ ବିଶେଷ ଆନନ୍ଦର ବିଷୟ ।''

ଉତ୍କଳ ଟ୍ୟାନେରୀ ଓ ଓଡ଼ିଶା ଅଳଙ୍କାର କାରଖାନା ମଧୁସୂଦନଙ୍କର ଦୁଇଟି ଅବିସ୍ମରଣୀୟ ପଦକ୍ଷେପ । ଶିଳ୍ପର ଉନ୍ନତି ବିନା ଜାତିର ଅର୍ଥନୈତିକ ବିକାଶ ଯେ ଅସମ୍ଭବ, ତାହା ମଧୁସୂଦନ ଜାଣିଥିଲେ । ଜଣେ ଖ୍ୟାତନାମା ଆଡ୍‌ଭୋକେଟ୍ ଭାବେ ବହୁ ଅର୍ଥ ଉପାର୍ଜନ କରିଥିଲେ

ମଧ୍ୟ ଏହି ଉତ୍କଳ ଟ୍ୟାନେରୀ ପାଇଁ ସେ ଦେବାଳିଆ ହୋଇଯାଇଥିଲେ । ସାର୍ ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କ ସମ୍ପର୍କରେ ଯଥାର୍ଥରେ କହିଛନ୍ତି– ''Mr. Das died a martyr to the cause of industry and to the upliftment of his countrymen ''

**ଜାତୀୟ ସାହିତ୍ୟ**

ଯୁଗେ ଯୁଗେ ସାହିତ୍ୟ ସୃଷ୍ଟି କରିଛି ବିପ୍ଳବ । ଓଡ଼ିଆ ପ୍ରଦେଶ ଗଠନ ପାଇଁ ଯେଉଁ ବିପ୍ଳବର ସୂତ୍ରପାତ ହେଲା, ତା'ର କର୍ଣ୍ଣଧାର ଥିଲେ ଉତ୍କଳଗୌରବ ମଧୁସୂଦନ । ମଧୁସୂଦନ ଓଡ଼ିଆ ଜାତୀୟତାର ପୂର୍ଣ୍ଣ ଚେତନାକୁ ଜାଗ୍ରତ କରି ଗଢିଲେ ''ଉତ୍କଳ ସମ୍ମିଳନୀ'' (୧୯୦୩) । ତାଙ୍କର ସ୍ୱଦେଶ ପ୍ରେମ, ନିର୍ଭୀକ ଓ ସ୍ୱାଧୀନ ଚିନ୍ତା ତାଙ୍କ କବିତାରେ ପରିସ୍ଫୁଟ ହେଲା ।

''ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି
ସ୍ୱାର୍ଥମେଧ ଯଜ୍ଞ ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି ।''

('ସନ୍ତାନର ଉକ୍ତି'– କବିତା)

ମଧୁସୂଦନଙ୍କ ସହିତ ସ୍ୱର ମିଶାଇ ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଡାକରା ଦେଇଥିଲେ–

''ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧାରିବା ପାଇଁ କଲେ ତନୁକ୍ଷୟ
ମାନବ ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ।''

'ଉତ୍କଳ ସମ୍ମିଳନୀ' ମଞ୍ଚରେ ଦେଖିବାକୁ ମିଳିଥିଲା ରାଜା, ଜମିଦାର ଓ ସାଧାରଣ ଜନତାର ଏକତ୍ର ସମାବେଶ । ଏହା ଥିଲା ପ୍ରଥମ ସାଂସ୍କୃତିକ ଉଦ୍ୟମ । ମଧୁସୂଦନଙ୍କର ସାତଗୋଟି ବିଭିନ୍ନ କବିତାରାଜିରୁ ତାଙ୍କର ଉଗ୍ର ଓଡ଼ିଆତ୍ୱର ପରିଚୟ ମିଳେ । ଜଣାଣ, ଉତ୍କଳ ସନ୍ତାନ, ଜନନୀର ଉକ୍ତି, ସନ୍ତାନର ଉକ୍ତି, ସମ୍ମିଳନୀ, ଜାତି ଇତିହାସ ଏବଂ ଏ ଭାବେ ପାଇବା କାହିଁ କବିତାରାଜି ଉତ୍କଳୀୟ ପ୍ରାଣରେ ଆଲୋଡ଼ନ ସଞ୍ଚାର କରିଥିଲା ।

''କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ
ଡାକ ତ୍ରାହି ଜଗନ୍ନାଥ
ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ
ଜାତିର ଉନ୍ନତି ପଥ ।
ସୁଦର୍ଶନ ଚକ୍ର ଗରଜି ଉଠିବ
ବଳିଆର ବାହୁ କରେ
ମାତାଙ୍କ ଶ୍ରୀଅଙ୍ଗ ପୂର୍ବବତ ହେବ
ଶତ୍ରୁ ପଳାଇବେ ଡରେ ।''

'ଉତ୍କଳ ସମ୍ମିଳନୀ' ଉପଲକ୍ଷେ ଉତ୍କଳୀୟ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରିବାକୁ ଲେଖିଲେ–

''ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଝରେ
ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ
ଡେଇଁ ପଡ଼ି ସିନ୍ଧୁ ନୀରେ ।
ତରଙ୍ଗ ଉଠିବ ସିନ୍ଧୁ ଗରଜିବ
ଶୁଣିବୁ ସିଂହର ରବ
ବ୍ରିଟିଶ ରାଜ୍ୟରେ ଓଡ଼ିଆ ଜାତିର
ବଢିବ ମାନ ଗୌରବ ।''

ମଧୁସୂଦନଙ୍କ ସାହିତ୍ୟରେ ଥିଲା ମୁକ୍ତିଚିନ୍ତା ଓ ଗଭୀର ଜୀବନବୋଧ । ଦେଶ ଗଠନ ହିଁ ଏହାର ମୂଳମନ୍ତ୍ର ।

**ସଂସ୍କାରବାଦୀ**

ରାଜନୈତିକ ଚିନ୍ତାଧାରାରେ ମଧୁସୂଦନ ଥିଲେ ଜଣେ ସମ୍ପୂର୍ଣ୍ଣ ସଂସ୍କାରବାଦୀ । ସେହି କାରଣରୁ ୧୯୨୦

ମସିହାର ପରବର୍ତ୍ତୀ କାଳରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ସାରା ଦେଶରେ ଯେଉଁ ଅସହଯୋଗ ଆନ୍ଦୋଳନ ବ୍ୟାପୀଥିଲା, ସେ ସବୁ ସହିତ ମଧୁସୂଦନ ସଂଯୁକ୍ତ ହୋଇପାରୁନଥିଲେ । ଭାଇସ୍ ରାୟ ଲର୍ଡ଼ ହାର୍ଡିଞ୍ଜଙ୍କ ଜୀବନ ନାଶ କରିବା ପାଇଁ ସନ୍ତ୍ରାସବାଦୀମାନେ ସେତେବେଳେ ଯେ ପ୍ରକାର ଉଦ୍ୟମ କରିଥିଲେ, ତାହାକୁ ନିନ୍ଦାକରି ବିହାର–ଓଡ଼ିଶା ଆସେମ୍ବ୍ଲିରେ ମଧୁସୂଦନ ଭାଷଣ ପ୍ରଦାନ କରିଥିଲେ । ରାଜନୀତି କରି ଦେଶସେବା ଆଳରେ ନିଜେ ଧନ ଓ କ୍ଷମତାର ଅଧିକାରୀ ହେବା ମଧୁସୂଦନଙ୍କର ଅଭିପ୍ରାୟ ନଥିଲା । ନିଜର ଉଚ୍ଚାଦର୍ଶ ଓ ମହତ୍ ଲକ୍ଷ୍ୟ ପୂରଣ ନିମନ୍ତେ ଆତ୍ମୋତ୍ସର୍ଗ କରିବା ତାଙ୍କ ଜୀବନର ପ୍ରଧାନ ଅଭିଳାଷ ଥିଲା । ମି. ଦାସ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଜୀବନ ସାଧନା କରି ନିଜର ସବୁକିଛି ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ହେଁ ସେ ସଂକୀର୍ଣ୍ଣ ପ୍ରାଦେଶିକଭାବାପନ୍ନ ନଥିଲେ । ପରାଧୀନ ଭାରତରେ ମି. ଦାସ ଭାରତୀୟ ଜାତୀୟତାର ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ ପ୍ରବକ୍ତା । କୌଣସି ପ୍ରକାର ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରିପାରି ନଥିଲା ।

ମାନ୍ଦ୍ରାଜ ସହରର ନିଖିଳ ଭାରତ ଖ୍ରୀଷ୍ଟିୟାନ ମହାସଭାର ବାର୍ଷିକ ଅଧିବେଶନ ୧୯୧୬ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହେଉଥାଏ । ଏହି ସଭାର ସଭାପତି ଭାଷଣରେ ମି. ଦାସ ଭାରତୀୟ ଜାତୀୟତାର ଆବାହନୀ ଶୁଣାଇଥିଲେ:–

''We are Indians, Indian blood runs in our veins, Indian history, Indian tradition are springs from which we draw our inspiration; our hopes for the future greatness of India are built on the glorious achivements of ancient India''

**ଅର୍ଦ୍ଧ ଶତାବ୍ଦୀର ଇତିହାସ**

ମଧୁବାବୁଙ୍କ ଜୀବନ କାହାଣୀ ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀର ଇତିହାସ । ଏଇ ଇତିହାସ ମଧ୍ୟରେ ଉତ୍କଳର ତତ୍କାଳୀନ ସାମାଜିକ, ରାଜନୈତିକ, ଅର୍ଥନୈତିକ ବିଷୟମାନ ନିହିତ ହୋଇ ରହିଛି । ଓଡ଼ିଶାର ଶିକ୍ଷାପ୍ରସାର, ନାରୀଶିକ୍ଷା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି, ଓଡ଼ିଆ ଭାଷା ଓ ସାହିତ୍ୟ ବିକାଶ, ଅର୍ଥନୈତିକ ଜୀବନକୁ ସମୃଦ୍ଧ କରିବା ପାଇଁ ଯୋଜନା ତାଙ୍କ ଉତ୍କଳୀୟତାର ଗୋଟିଏ ଗୋଟିଏ ବିଶିଷ୍ଟ ଦିଗ୍‌ବଳୟ । ମଧୁବାବୁ ଉତ୍କଳ ମାତାର ଯୋଗ୍ୟତମ ସନ୍ତାନ । ଉତ୍କଳର ସର୍ବବିଧ ଉନ୍ନତି ପାଇଁ ସେ ଚିରନ୍ତନ ବ୍ୟାକୁଳ ଥିଲେ । ଓଡ଼ିଆ କିପରି ଦେଶ ବିଦେଶରେ ସମ୍ମାନିତ ହେବେ ତାହା ଥିଲା ତାଙ୍କର ଲକ୍ଷ୍ୟ । ଉତ୍କଳ ସେବାକୁ ଭାରତର ସେବା ମନେ କରି ଉତ୍କଳର ସର୍ବାଙ୍ଗୀନ ଉନ୍ନତି ପାଇଁ ଧୂପାୟିତ ହେବା ଭିତରେ ଆମେ ଅର୍ପଣ କରିପାରିବା ତାଙ୍କ ପ୍ରତି ଆମର ଯଥାର୍ଥ ଶ୍ରଦ୍ଧାଞ୍ଜଳି, ପ୍ରଦର୍ଶନ କରିପାରିବା ତାଙ୍କ ସ୍ମୃତି ପ୍ରତି ଯଥାର୍ଥ ସମ୍ମାନ ।

**ସହାୟକ ଗ୍ରନ୍ଥସୂଚୀ**


୧.କବି, ଅସିତ । ମଧୁସୂଦନ ଦାସ । ମହାବିଦ୍ୟାଳୟ ପ୍ରବନ୍ଧମାଳା, କଟକ, ମାଲହୋତ୍ରା, ୧୯୯୬ । ପୃ. ୪୬୬-୭୧

୨. କର, ସୌରୀବନ୍ଧୁ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଓଡ଼ିଆ ସାହିତ୍ୟ । ଉତ୍କଳ ପ୍ରସଙ୍ଗ, ଭୁବନେଶ୍ୱର, ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଅପ୍ରେଲ ସଂଖ୍ୟା, ୧୯୯୮ । ପୃ-୨୧

୩. ପଟ୍ଟନାୟକ, ପଠାଣି । ଜାତୀୟ ଜୀବନର ମନ୍ତ୍ରାଦାତା ମି. ମଧୁସୂଦନ ଦାସ । ଭୁବନେଶ୍ୱର, ଉତ୍କଳ ପ୍ରସଙ୍ଗ, ସୂଚନା ଓ ଲୋକସମ୍ପର୍କ ବିଭାଗ, ଅପ୍ରେଲ ସଂଖ୍ୟା ୧୯୯୮ । ପୃ-୧୬-୬

୪. ମହାନ୍ତି, ସୁରେନ୍ଦ୍ର । ଦେଶପ୍ରାଣ ମଧୁସୂଦନ । ଦିଲ୍ଲୀ, ଏନ୍.ବି.ଟି., ୧୯୭୪ । ପୃ-୧୧-୩୫

୫. ମହାନ୍ତି, ସୁରେନ୍ଦ୍ର । ଦେଶପ୍ରାଣ ମଧୁସୂଦନ । ଦିଲ୍ଲୀ, ଏନ୍.ବି.ଟି., ୧୯୭୪ । ପୃ-୭୭-୮୪


---


ସମ୍ପାଦକ, ଉତ୍କଳ ସମ୍ମିଳନୀ ସମାଚାର
ସାମରାଇପୁର, ଗେଲପୁର, ଭଦ୍ରକ
ପିନ୍–୭୫୬୧୮୧

## ଜାତୀୟ ସ୍ତରରେ ଉଦାହରଣ ସୃଷ୍ଟି କରିଛି

# ଓଡ଼ିଶାରେ ବିଦ୍ୟାଳୟ ଶିକ୍ଷା ରୂପାନ୍ତରଣ କାର୍ଯ୍ୟକ୍ରମ

**ସଚ୍ଚିଦାନନ୍ଦ ବେହେରା**

ଶିକ୍ଷାକ୍ଷେତ୍ରରେ ଓଡ଼ିଶାରେ ଆରମ୍ଭ ହୋଇଥିବା ରୂପାନ୍ତରୀକରଣ ପ୍ରକ୍ରିୟା ଜାତୀୟ ସ୍ତରରେ ଏକ ଉଦାହରଣ ସୃଷ୍ଟି କରିଛି । ଏହି ପ୍ରକ୍ରିୟାର ଲକ୍ଷ୍ୟ କେବଳ ଶିକ୍ଷାର୍ଥୀଙ୍କ ଶୈକ୍ଷିକ କ୍ଷେତ୍ରରେ ଉତ୍କର୍ଷତା ନୁହେଁ କିମ୍ବା ଭିତ୍ତିଭୂମିକୁ ପରିବର୍ତ୍ତନ କରିବା ନୁହେଁ ବରଂ ପ୍ରତ୍ୟେକ ଶିକ୍ଷାର୍ଥୀଙ୍କ ଅନ୍ତର୍ନିହିତ ପ୍ରତିଭାର ବିକାଶ କରିବା ସହ ସେମାନଙ୍କ ଦକ୍ଷତାର ବିକାଶ କରିବା । ଏକବିଂଶ ଶତାବ୍ଦୀରେ ଶିକ୍ଷା ସହ ଦକ୍ଷତା ଏକ ମାପକ । ଏହାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ବର୍ତ୍ତମାନ ଛାତ୍ରଛାତ୍ରୀମାନଙ୍କ ଦକ୍ଷତା ଓ ସୃଜନାତ୍ମକ ବିକାଶ ଉପରେ ଗୁରୁତ୍ୱ ଦେଉଛନ୍ତି ।

ଏଥିପାଇଁ ରାଜ୍ୟ ସରକାର ପ୍ରତିବର୍ଷ ବଜେଟ୍‌ରେ ଶିକ୍ଷାକୁ ଗୁରୁତ୍ୱ ଦେଉଥିବା ପରିଲକ୍ଷିତ ହେଉଛି । ପ୍ରତି ବର୍ଷ ଶିକ୍ଷାକ୍ଷେତ୍ରର କ୍ରମାଗତ ଭାବରେ ବଜେଟ୍ ବୃଦ୍ଧି ପାଉଛି । ୨୦୧୮–୧୯ ଆର୍ଥିକ–ବର୍ଷରେ ପୂର୍ବ ବର୍ଷ ଅପେକ୍ଷା ୪.୫୩ ପ୍ରତିଶତ ବର୍ଦ୍ଧିତ ଅର୍ଥ ମଞ୍ଜୁରି ହୋଇଥିଲା । ସେହିପରି ୨୦୧୯–୨୦, ୨୦୨୦–୨୧, ୨୦୨୧–୨୨, ୨୦୨୨–୨୩ ଆର୍ଥିକ ବର୍ଷରେ ଯଥାକ୍ରମେ ୧୩.୯୬, ୭.୧୪, ୫.୬୫ ଓ ୧୨.୪୬ ପ୍ରତିଶତ ବର୍ଦ୍ଧିତ ଅର୍ଥ ମଞ୍ଜୁରି କରାଯାଇଥିଲା । ଚଳିତ ଆର୍ଥିକ ବର୍ଷ ପାଇଁ ରାଜ୍ୟ ସରକାର ଶିକ୍ଷା ଭିତ୍ତିଭୂମିର ବିକାଶ ଲାଗି ୨୨, ୫୨୭ କୋଟି ଟଙ୍କା ବ୍ୟୟବରାଦ କରିଛନ୍ତି ।

ଦଶନ୍ଧି ତଳେ ରାଜ୍ୟ ଶିକ୍ଷା ବ୍ୟବସ୍ଥାର ଯାହା ଚିତ୍ର ଥିଲା, ବର୍ତ୍ତମାନ ଏଥିରେ ବ୍ୟାପକ ପରିବର୍ତ୍ତନ ଆସିଛି । ରାଜ୍ୟର ବିଦ୍ୟାଳୟମାନଙ୍କର ଭିତ୍ତିଭୂମିରେ ଆଖିଦୃଶିଆ ଉନ୍ନତି ପରିଲକ୍ଷିତ ହେଉଛି । ଦିବ୍ୟାଙ୍ଗ ଛାତ୍ରଛାତ୍ରୀଙ୍କ ପାଇଁ ମଧ୍ୟ ବିଦ୍ୟାଳୟରେ ସମସ୍ତ ପ୍ରକାରର ଭିତ୍ତିଭୂମି ପ୍ରସ୍ତୁତ କରାଯାଇଛି । ଛାତ୍ରଛାତ୍ରୀଙ୍କୁ ଉନ୍ନତ ଭିତ୍ତିଭୂମି, ଅତ୍ୟାଧୁନିକ ଜ୍ଞାନକୌଶଳ ଓ ଗୁଣାତ୍ମକ ଶିକ୍ଷା ପ୍ରଦାନ କରିବାକୁ ରାଜ୍ୟ ସରକାର ବିଭିନ୍ନ ଯୁଗୋପଯୋଗୀ ପଦକ୍ଷେପ ହାତକୁ ନେଉଥିବାର ପରିଲକ୍ଷିତ ହେଉଛି ।

ରାଜ୍ୟ ସରକାର ଶୈଶବରୁ ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ଶିକ୍ଷାର ସାର୍ବଜନୀନ ପ୍ରସାର, ଅଧାରୁ ପାଠ ଛାଡିଥିବା ପିଲାଙ୍କୁ ପୁଣିଥରେ ଶିକ୍ଷାର ମୁଖ୍ୟଧାରାକୁ ଫେରାଇ ଆଣିବା, ସାମାଜିକ–ଆର୍ଥିକ ଦୃଷ୍ଟିରୁ ବଞ୍ଚିତ ସମୁଦାୟଙ୍କ ପ୍ରତି ବିଶେଷ ଧ୍ୟାନ ଦେବା ଉପରେ ସର୍ବାଧିକ ଗୁରୁତ୍ୱ ଦେଉଛନ୍ତି । ଛାତ୍ରଛାତ୍ରୀଙ୍କ ଦକ୍ଷତାର ବିକାଶ, ନୂଆ ନୂଆ ଜ୍ଞାନକୌଶଳର ପ୍ରୟୋଗ, ଚିନ୍ତାଧାରା ଓ ସୃଜନଶୀଳତା ଉପରେ ଏଥିପାଇଁ ଅଧିକ ଧ୍ୟାନ ଦିଆଯାଉଛି । ଏହି ଆଧାରରେ ଗୋଟିଏ ପରେ ଗୋଟିଏ ଗ୍ରହଣ କରାଯାଉଥିବା ପଦକ୍ଷେପକୁ ଜନମାନସରେ ବେଶ୍ ପ୍ରଶଂସା ମିଳୁଛି । ରାଜ୍ୟର ସମୁଦାୟ ୭୭୫୦ଟି ପ୍ରାଥମିକ, ଉଚ୍ଚପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟର ଶୈକ୍ଷିକ ଭିତ୍ତିଭୂମିକୁ ସୁଦୃଢ଼ କରିବାକୁ ବ୍ୟବସ୍ଥା କରାଯାଉଛି । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ସୁଦ୍ଧା ୫୫୦୪ଟି ବିଦ୍ୟାଳୟ କାର୍ଯ୍ୟାନ୍ୱୟନ ପ୍ରକ୍ରିୟା ଆରମ୍ଭ ହୋଇଛି । ରାଜ୍ୟରେ ୨୦୭୬ଟି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ୭,୯୧,୨୪୩ ଛାତ୍ରଛାତ୍ରୀ ଶିକ୍ଷାଗ୍ରହଣ

କରୁଥିବା ବେଳେ ଗତ ୩ ବର୍ଷ ମଧ୍ୟରେ ରାଜ୍ୟରେ ୧୦୬ଟି ମାଧ୍ୟମିକ ବିଦ୍ୟାଳୟକୁ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଉନ୍ନୀତ କରାଯାଇଛି ।

୫–ଟି ଉପକ୍ରମରେ ପରିଚାଳିତ ସରକାରୀ ଓ ସରକାରୀ ଅନୁଦାନପ୍ରାପ୍ତ ଉଚ୍ଚ ବିଦ୍ୟାଳୟଗୁଡିକର ଆଧୁନୀକିକରଣର ଉଦ୍ଦେଶ୍ୟ ହେଉଛି ଅତ୍ୟାଧୁନିକ ଜ୍ଞାନ–କୌଶଳ ବ୍ୟବହାର କରି ଡିଜିଟାଲ ଏବଂ ସ୍ମାର୍ଟ ଶ୍ରେଣୀଗୃହ, ଆଲୋଚନାଭିତ୍ତିକ ଶିକ୍ଷା ପରିବେଶ, ଇ–ଲାଇବ୍ରେରୀ ଏବଂ ଆଧୁନିକ ବିଜ୍ଞାନ ପ୍ରୟୋଗଶାଳା ମାଧ୍ୟମରେ ଉଚ୍ଚ ବିଦ୍ୟାଳୟରେ ଶିକ୍ଷାର ଗୁଣାତ୍ମକମାନ ବୃଦ୍ଧି କରିବା । ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ ହେଉଥିବା ୫–ଟି ଉଚ୍ଚ ବିଦ୍ୟାଳୟ ରୂପାନ୍ତରୀକରଣ କାର୍ଯ୍ୟକ୍ରମରେ ରାଜ୍ୟର ସମସ୍ତ ସରକାରୀ ଏବଂ ସରକାରୀ ଅନୁଦାନପ୍ରାପ୍ତ ଉଚ୍ଚ ବିଦ୍ୟାଳୟଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଉଛି । ସମ୍ପୂର୍ଣ୍ଣ ରୂପାନ୍ତରଣ ପାଇଁ ୫–ଟି ହାଇସ୍କୁଲ ରୂପାନ୍ତରୀକରଣ କାର୍ଯ୍ୟକ୍ରମରେ ପ୍ରଥମ ପର୍ଯ୍ୟାୟରେ ୧୦୭୫ଟି, ଦ୍ୱିତୀୟ ପର୍ଯ୍ୟାୟରେ ୩୪୬୧ଟି ଏବଂ ତୃତୀୟ ପର୍ଯ୍ୟୟରେ ୨୩୩୬ଟି ଉଚ୍ଚ ବିଦ୍ୟାଳୟର ରୂପାନ୍ତରଣ କରାଯାଇଛି । ଏହାସହ ଚତୁର୍ଥ ପର୍ଯ୍ୟାୟରେ ୧୭୯୯ଟି ବିଦ୍ୟାଳୟକୁ ରୂପାନ୍ତରଣ କରାଯାଉଛି ।

ବିଦ୍ୟାଳୟରୁ ଶିକ୍ଷା ଗ୍ରହଣ କରି ସଫଳ ଭବିଷ୍ୟତ ଗଢ଼ିଥିବା ପୁରାତନ ଛାତ୍ରଛାତ୍ରୀଙ୍କୁ ପୁଣିଥରେ ବିଦ୍ୟାଳୟ ସହ ଯୋଡି ଏହାର ସର୍ବାଙ୍ଗୀନ ବିକାଶ କରିବା ଲକ୍ଷ୍ୟରେ ରାଜ୍ୟ ସରକାର 'ମୋ ସ୍କୁଲ ଅଭିଯାନ' ଆରମ୍ଭ କରିଥିଲେ । ଶିକ୍ଷାନୁଷ୍ଠାନ ସହ ଜଡ଼ିତ ପୁରାତନ ଛାତ୍ରଛାତ୍ରୀ, ସ୍ଥାନୀୟ ଅଞ୍ଚଳର ସଦସ୍ୟ ଏବଂ ସିଏସ୍‌ଆର୍ ସଂସ୍ଥାଗୁଡିକର ସକ୍ରିୟ ଯୋଗଦାନକୁ ଉତ୍ସାହିତ କରାଯାଉଛି । ଏହି ଅଭିଯାନ ଶିକ୍ଷାକ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିପାରିଛି । ୩୦ ଲକ୍ଷ ପୁରାତନ ଛାତ୍ରଛାତ୍ରୀ ଓ ଗୋଷ୍ଠୀ ସମ୍ପ୍ରଦାୟ ସହଭାଗିତାରେ ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି କରାଯାଉଛି । ଏହି କାର୍ଯ୍ୟକ୍ରମ କେବଳ ଭିତ୍ତିଭୂମିରେ ରୂପାନ୍ତରଣ ନୁହେଁ ବରଂ ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନଙ୍କ ଆତ୍ମବିଶ୍ୱାସକୁ ମଧ୍ୟ ବୃଦ୍ଧି କରିପାରିଛି । ବିଦ୍ୟାଳୟ ଭିତ୍ତିଭୂମି ବ୍ୟତୀତ ୫–ଟି ଉଚ୍ଚ ବିଦ୍ୟାଳୟ ରୂପାନ୍ତରୀକରଣ କାର୍ଯ୍ୟକ୍ରମ ଶିକ୍ଷକମାନଙ୍କର ପାଠ ପଢ଼ାଇବା ଶୈଳୀକୁ ଉନ୍ନତ କରିବା ପାଇଁ ବିଭିନ୍ନ ପ୍ରକାରର ତାଲିମ ଓ ଦକ୍ଷତା ବିକାଶ କାର୍ଯ୍ୟକ୍ରମ ହାତକୁ ନେଇଛି । ବୈଷୟିକ ଜ୍ଞାନ କୌଶଳର ଅଗ୍ରଗତି ସହିତ ଛାତ୍ରଛାତ୍ରୀମାନେ ଏକବିଂଶ ଶତାବ୍ଦୀରେ କୌଶଳ ଏବଂ ମୋ ସ୍କୁଲ ଅଧୀନରେ ଥିବା କ୍ଲବ୍ କାର୍ଯ୍ୟକ୍ରମ ସହିତ ପରିଚିତ ହୋଇଛନ୍ତି । ୫–ଟି ଉଚ୍ଚ ବିଦ୍ୟାଳୟ ରୂପାନ୍ତରୀକରଣ କାର୍ଯ୍ୟକ୍ରମ ଆଧାରରେ ଶିକ୍ଷକ/ଶିକ୍ଷୟିତ୍ରୀମାନଙ୍କୁ ସ୍ମାର୍ଟ ଶ୍ରେଣୀ ଗୃହର ପରିଚାଳନା ପାଇଁ ତାଲିମ ଦିଆଯାଉଛି, ଯାହା ଫଳରେ ସେମାନେ ଡିଜିଟାଲ ଶିକ୍ଷାଗତ ବିଷୟବସ୍ତୁ ଭଲ ଭାବରେ ଜାଣିପାରୁଛନ୍ତି । ବାସ୍ତବରେ ଓଡିଶାରେ ଏପରି ଏକ ଶିକ୍ଷା ବ୍ୟବସ୍ଥା ସୃଷ୍ଟି ହୋଇପାରିଛି, ଯାହାକି ସମସ୍ତ ଛାତ୍ରଛାତ୍ରୀଙ୍କୁ ସେମାନଙ୍କ ପୂର୍ଣ୍ଣସାମର୍ଥ୍ୟ ଉପଯୋଗ କରିବାକୁ ସୁଯୋଗ ଦେଉଛି ।

ଓଡିଶାର ପ୍ରତ୍ୟେକ ବ୍ଲକ୍‌ରେ ସିବିଏସ୍‌ଇ ବୋର୍ଡ ଅଧୀନରେ ଇଂରାଜୀ ମାଧ୍ୟମରେ ଗୁଣାତ୍ମକ ଶିକ୍ଷା ପ୍ରଦାନ କରିବା ପାଇଁ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ' କାର୍ଯ୍ୟ କରୁଛି । ରାଜ୍ୟର ୩୧୩ଟି ବ୍ଲକ୍‌ରେ ୩୧୫ଟି ଓଡିଶା ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଏଥିସହିତ କୋରାପୁଟ ଜିଲ୍ଲାର ପଟାଙ୍ଗୀ ଅନ୍ତର୍ଗତ କୋଟିଆ ଏବଂ ଭୁବନେଶ୍ୱରର ଅନ୍ଧାରୁଆଠାରେ ଦୁଇଟି ସ୍ୱତନ୍ତ୍ର ଆଇକନିକ୍ ଆଦର୍ଶ ବିଦ୍ୟାଳୟରେ ମଧ୍ୟ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ପ୍ରଦାନ କରାଯାଉଛି । ଛାତ୍ରଛାତ୍ରୀଙ୍କ ରହିବା ପାଇଁ ସୁବ୍ୟବସ୍ଥା କରାଯାଇଛି । ସମୁଦାୟ ୬୦୨୮ ଶଯ୍ୟା ବିଶିଷ୍ଟ ୧୬୬ଟି ଛାତ୍ରୀନିବାସ ନିର୍ମାଣ କରାଯାଇଛି । ସେହିପରି ଆଗାମୀ ଆର୍ଥିକ ବର୍ଷରେ ୧ ହଜାର କୋଟି ଅର୍ଥରାଶି ବିନିଯୋଗରେ ୨୩୭ଟି ଛାତ୍ରାବାସ ନିର୍ମାଣ କରିବାକୁ ଲକ୍ଷ୍ୟ ରଖାଯାଇଛି ।

କେବଳ ଶିକ୍ଷାର ଭିତ୍ତିଭୂମି ନୁହେଁ, ଛାତ୍ରଛାତ୍ରୀଙ୍କୁ ସବୁ ପ୍ରକାରର ସୁବିଧା ସୁଯୋଗ ଯୋଗାଇ ଦେବା ପାଇଁ

ରାଜ୍ୟ ସରକାର ବ୍ୟବସ୍ଥା କରିଆସୁଛନ୍ତି । ପୂର୍ବରୁ ଛାତ୍ରଛାତ୍ରୀମାନଙ୍କ ପୋଷାକ ପାଇଁ ୬୦୦ ଟଙ୍କା ଲେଖାଏଁ ପ୍ରଦାନ କରାଯାଉଥିବା ବେଳେ ଏବେ ଏହାକୁ ୧୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଶିକ୍ଷାର୍ଥୀମାନଙ୍କର ଦକ୍ଷତା ଏବଂ କୌଶଳକୁ ପ୍ରୋତ୍ସାହିତ କରିବା ସହ ସେମାନଙ୍କ ଶାରୀରିକ, ମାନସିକ, ଭୌତିକ ଗୁଣାବଳୀର ବିକାଶ କରିବା ଲକ୍ଷ୍ୟ ନେଇ ଆରମ୍ଭ ହୋଇଛି ହାଉସ୍ ସିଷ୍ଟମ୍ । ସେହିପରି ଚଳିତ ବର୍ଷଠାରୁ 'ଆକାଂକ୍ଷୀ' ପାଠ୍ୟକ୍ରମ ଅଧୀନରେ ଆରମ୍ଭ ହୋଇଛି କ୍ଲବ୍ କାର୍ଯ୍ୟକ୍ରମ । ଛାତ୍ରଛାତ୍ରୀଙ୍କର ଅନ୍ତର୍ନିହିତ ପ୍ରତିଭାର ବିକାଶ କରିବା ସହିତ ସେମାନଙ୍କ ଦକ୍ଷତା ବିକାଶ କରିବା ହେଉଛି ଏହାର ମୁଖ୍ୟ ଉଦ୍ଦେଶ୍ୟ । ଏଥିରେ ଥିବା ଉପାଦାନଗୁଡିକ ହେଉଛି ବିଭିନ୍ନ ପ୍ରକାର ପ୍ରକଳ୍ପ କାର୍ଯ୍ୟ, ପୁସ୍ତକ ସମୀକ୍ଷା, ମୌଳିକ ବୈଷୟିକ ଜ୍ଞାନ କୌଶଳ ଦକ୍ଷତା ଏବଂ ସହ-ପାଠ୍ୟକ୍ରମ କାର୍ଯ୍ୟକଳାପ । କ୍ଲବ୍‌ଗୁଡିକ ହେଉଛି କ୍ରୀଡ଼ାଙ୍ଗନ, କୌଶଳୀ, ଜିଜ୍ଞାସା ଓ ସାହିତ୍ୟ ସୃଜନୀ । ଶିକ୍ଷା ସହ ଜଡିତ ସମସ୍ତ ବ୍ୟକ୍ତିବିଶେଷଙ୍କୁ ସମ୍ମାନିତ ତଥା ପୁରସ୍କୃତ କରିବା ପାଇଁ ଚଳିତ ଶିକ୍ଷାବର୍ଷଠାରୁ 'ମୁଖ୍ୟମନ୍ତ୍ରୀ ଶିକ୍ଷା ପୁରସ୍କାର' ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି ।

ବିଦ୍ୟାଳୟରେ ଶିକ୍ଷକ ଅଭାବକୁ ପୂରଣ କରିବା ପାଇଁ ରାଜ୍ୟ ସରକାର କ୍ରମାଗତ ଭାବରେ ନିଯୁକ୍ତି ପ୍ରକ୍ରିୟା ଜାରି ରଖିଛନ୍ତି । ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଓଡ଼ିଶା ଲୋକସେବା ଆୟୋଗ ଜରିଆରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଅଧୀନରେ ୩୩୩୫ ପି.ଜି.ଟି. ଶିକ୍ଷକ ନିଯୁକ୍ତି ପ୍ରକ୍ରିୟା ଜାରି ରହିଛି । ସେହିପରି ଓଡ଼ିଶା ଲୋକସେବା ଆୟୋଗ ମାଧ୍ୟମରେ ୩୬୭ ଏବଂ ରାଜ୍ୟ ପ୍ରବରଣ ମଣ୍ଡଳି (ଏସ୍‌ଏସ୍‌ବି) ଜରିଆରେ ୫୫୫ଟି ପି.ଜି.ଟି. ଶିକ୍ଷକଙ୍କୁ ନିଯୁକ୍ତି ଦିଆଯିବ । ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷାର ମାନବୃଦ୍ଧି ନିମନ୍ତେ ୭୫୪୦ ଜଣ ଶିକ୍ଷକ ନିଯୁକ୍ତି ପାଇଁ ଯୋଜନା କରାଯାଇଛି । ଚଳିତ ଶିକ୍ଷା ବର୍ଷରେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ପଦବୀ ପୂରଣ ପାଇଁ ୨୦ ହଜାର କନିଷ୍ଠ ଶିକ୍ଷକ (ଯୋଜନାଭିତ୍ତିକ)ଙ୍କ ନିଯୁକ୍ତି ପ୍ରକ୍ରିୟା ମଧ୍ୟ ଜାରି ରହିଛି ।

ଶିକ୍ଷାର ମୁଖ୍ୟସ୍ରୋତରୁ ଦୂରେଇ ଯାଇଥିବା ବା ଅଧାରୁ ପାଠ ଛାଡିଥିବା ଛାତ୍ରଛାତ୍ରୀଙ୍କ ପାଇଁ ରାଜ୍ୟ ସରକାର ବିଶେଷ ଗୁରୁତ୍ୱ ଦେଇଆସୁଛନ୍ତି । ସେମାନଙ୍କ ପାଇଁ ରାଜ୍ୟ ମୁକ୍ତ ବିଦ୍ୟାଳୟ ପ୍ରତିଷ୍ଠାନ ମାଧ୍ୟମରେ ସ୍ୱତନ୍ତ୍ର ଭାବେ ଶିକ୍ଷାଦାନର ବ୍ୟବସ୍ଥା କରାଯାଇଛି । ଏହି କାର୍ଯ୍ୟକ୍ରମ ଦ୍ୱାରା ଶିକ୍ଷାରୁ ଦୂରେଇ ଯାଇଥିବା ହଜାର ହଜାର ପିଲା ପୁଣି ଥରେ ବିଦ୍ୟାଳୟକୁ ଆସିପାରୁଛନ୍ତି । ସେମାନଙ୍କ ମନରେ ଥିବା ସୁନେଲି ସ୍ୱପ୍ନକୁ ଏହା ବାସ୍ତବତାର ରୂପ ଦେବା ପାଇଁ ମାର୍ଗ ଦେଖାଉଛି ।

ସୂଚନା ଅଧିକାରୀ (ଓ.ଏସ୍.ଡି)
ଲୋକସମ୍ପର୍କ ଭବନ, ଭୁବନେଶ୍ୱର



# ସାମର୍ଥ୍ୟର ବିକାଶ ସମ୍ପର୍କରେ

ଡକ୍ଟର ଫକୀର ମୋହନ ସାହୁ

ସାମର୍ଥ୍ୟ ସଫଳତାର କେନ୍ଦ୍ରବିନ୍ଦୁ । ରାସ୍ତାପାର୍ଶ୍ୱର ସାଧାରଣ ଶ୍ରମିକଠାରୁ ଆରମ୍ଭ କରି ଚନ୍ଦ୍ରଯାନ ପ୍ରକଳ୍ପରେ ସଂଶ୍ଳିଷ୍ଟ ଥିବା ଅସାଧାରଣ ବିଜ୍ଞାନୀ ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟ-କୁଶଳୀ ଏବଂ ସଫଳତା ମୂଳରେ ସାମର୍ଥ୍ୟର ଭୂମିକା ସର୍ବସମ୍ମତ । ପୁଣି ସାମର୍ଥ୍ୟର ମଞ୍ଜିକଥା ହେଉଛି, ଆମ ସାମର୍ଥ୍ୟବୋଧର ମାନସିକତା । ''ମୁଁ କରିପାରିବି- ଏହା ବିଶ୍ୱାସର ଗଭୀରତା କାର୍ଯ୍ୟକୁ ସୁନ୍ଦର ଓ ସୌଷ୍ଠବ କରିଥାଏ । ଅନ୍ୟ ପକ୍ଷରେ ମୁଁ ପାରିବି ନାହିଁ ''- ଏପରି ଆମ ସନ୍ଦେହ ଫଳରେ ଶରୀରର ପ୍ରତିଟି କୋଷ ମଧ୍ୟ ଅନୁରୂପ ପ୍ରତିଧ୍ୱନି ସୃଷ୍ଟି କରେ । ଫଳରେ କାର୍ଯ୍ୟଟି ଦୁର୍ବଳ ଓ ବିଫଳ ହୁଏ ।

ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବ୍ୟକ୍ତିର କାର୍ଯ୍ୟ ମୂଳରେ ଦୁଇଟି ଉପାଦାନ ସଂଶ୍ଳିଷ୍ଟ ଥାଏ । ଗୋଟିଏ ହେଉଛି ସାମର୍ଥ୍ୟର ଆହରଣ ଏବଂ ଅନ୍ୟଟି ହେଉଛି ସାମର୍ଥ୍ୟର ପ୍ରଦର୍ଶନ । ଆମେ ସ୍କୁଲ, କଲେଜ ଏବଂ କର୍ମସଂସ୍ଥା ମାଧ୍ୟମରେ ସାମର୍ଥ୍ୟ ବା ଦକ୍ଷତା ଆହରଣ କରୁ । ଏଥିପାଇଁ ଶିକ୍ଷଣ ଓ ପ୍ରଶିକ୍ଷଣ ଆବଶ୍ୟକ ହୁଏ । କିନ୍ତୁ ଦକ୍ଷତା ପ୍ରଦର୍ଶନ ପାଇଁ ଯେଉଁ ଉପାଦାନଟି ନିତାନ୍ତ ପ୍ରୟୋଜନ, ତାହା ହେଉଛି ସମ୍ପର୍କ ବିଶ୍ୱାସବୋଧ । ବ୍ୟକ୍ତି ହୁଏତ ବିଶ୍ୱାସ କରେ ଯେ ସେ କାର୍ଯ୍ୟଟିକୁ ଆଦୌ କରିପାରିବ ନାହିଁ । ଅନ୍ୟ ପକ୍ଷରେ ବ୍ୟକ୍ତିର ଦୃଢ଼ ବିଶ୍ୱାସ ଥାଏ ଯେ, ସେ ନିଶ୍ଚିତ ଭାବରେ ସଫଳତାର ସହ କାର୍ଯ୍ୟଟିକୁ ସମ୍ପୂର୍ଣ୍ଣ କରିପାରିବ । ବିଶ୍ୱାସବୋଧର ମାତ୍ରା ଏହି ଦୁଇ ପ୍ରାନ୍ତୀୟ ବିନ୍ଦୁ ମଧ୍ୟରେ ରହି ଆତ୍ମସାମର୍ଥ୍ୟବୋଧ ମଧ୍ୟମ ମାତ୍ରାର ବି ହୋଇପାରେ । ସ୍ଥୂଳତଃ ଆତ୍ମସାମର୍ଥ୍ୟବୋଧ ସଫଳତାର ଏକ ବିଶିଷ୍ଟ ନିର୍ଦ୍ଧାରକ ।

ଆତ୍ମସାମର୍ଥ୍ୟବୋଧର ଦୁଇଟି ସ୍ୱରୂପ ରହିଛି । ପ୍ରଥମତଃ ଜଣେ ବ୍ୟକ୍ତି ନିଜକୁ ମୋଟାମୋଟି ଭାବରେ ଆତ୍ମସାମର୍ଥ୍ୟବୋଧର ଅଧିକାରୀ ବୋଲି ବିଶ୍ୱାସ କରିପାରନ୍ତି । ନିଜକୁ ଦକ୍ଷ ମନେ କରିପାରନ୍ତି କିନ୍ତୁ ଏପରି ବ୍ୟକ୍ତି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସଫଳତା ପ୍ରାପ୍ତିର ଆଶା ରଖି ନ ପାରନ୍ତି । ଉଦାହରଣ ସ୍ୱରୂପ, ନିଜକୁ ଦକ୍ଷ ମନେକରୁଥିବା ବ୍ୟକ୍ତି ଜଣକ ଯିବା ସମୟରେ ଗୋଟିଏ ଶିଶୁ ପୋଖରୀରେ ବୁଡ଼ିଯାଉଥିବାର ଦୃଶ୍ୟ ଦେଖିଲେ ସେ ରକ୍ଷାକରିବା ପାଇଁ ଆଗଭର ହେବେ ନାହିଁ । କାରଣ ସେ ସନ୍ତରଣ କରିବା ଜାଣନ୍ତି ନାହିଁ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ସାଧାରଣ ସାମର୍ଥ୍ୟବୋଧ ଅପେକ୍ଷା ପ୍ରସଙ୍ଗ-ଭିତ୍ତିକ ଆତ୍ମସାମର୍ଥ୍ୟବୋଧ ଅଧିକ ଉପଯୋଗୀ । ଜଣେ ଶିକ୍ଷକର ଶିକ୍ଷା-ସମ୍ପର୍କିତ ଆତ୍ମସାମର୍ଥ୍ୟବୋଧ ରହିବା ଆବଶ୍ୟକ । ଜଣେ ଛାତ୍ର ବା ଛାତ୍ରୀର ଶିକ୍ଷା-ବିଷୟକ ସାମର୍ଥ୍ୟବୋଧ ପ୍ରୟୋଜନ । ଜଣେ ଗାଡ଼ି ଚାଳକର ଗାଡ଼ିଚାଳନା ସାମର୍ଥ୍ୟବୋଧ ଦରକାର ।

ଏପରି ପ୍ରସଙ୍ଗଭିତ୍ତିକ ବା କ୍ଷେତ୍ର-ସମ୍ପର୍କିତ ସାମର୍ଥ୍ୟବୋଧର ପରିମାଣ ଆକଳନ କରିବା ଅପେକ୍ଷାକୃତ ସହଜ ବ୍ୟାପାର । ମନେକରାଯାଉ ଜଣେ ଲୋକ ଗାଡ଼ିର ଚାଳକ । କାର ଚାଳନାରେ ବାଧା ସୃଷ୍ଟି କରିବା କେତେକ ପ୍ରତିବନ୍ଧକର ସୂଚନା ଦେଇ ଓ ପ୍ରଶ୍ନ ପଚରା ଯାଇପାରେ । ଉତ୍ତର 'ହଁ' କିମ୍ବା 'ନାହିଁ'ରେ ଦିଆଯାଇପାରେ । ଧରାଯାଉ ପ୍ରଶ୍ନଗୁଡ଼ିକ ଏହି ଧରଣର ।

ନିମ୍ନଲିଖିତ ପ୍ରତିବନ୍ଧକ ସତ୍ତ୍ୱେ ତୁମେ ଗାଡ଼ିଟି କୁଶଳତାର ସହ ଚଳାଇପାରିବ କି ? ଚଳାଇବା ସମୟରେ ଝିପି ଝିପି

ବର୍ଷା ହେଉଥିଲେ... ପାଗ ଅନୁକୂଳ ଥିଲେ... ସେସମୟରେ ରାସ୍ତାରେ ଅଧିକ ଯାନବାହନ ଥିଲେ... ବାହାରେ ଆଲୋକର ପରିମାଣ କମ୍ ହୋଇଥିଲେ.. ଟ୍ରାଫିକ୍ ସଙ୍କେତ ତ୍ରୁଟିଶୂନ୍ୟ ନ ଥିଲେ...।

ଉପର ଉଦାହରଣରେ ଦିଆଯାଇଥିବା ଭଳି ପଚାଶଟି ପ୍ରତିବନ୍ଧକ ସତ୍ତ୍ୱେ ନିର୍ଦ୍ଦିଷ୍ଟ କାର୍‌ଚାଳକ ପଇଁଚାଳିଶ ଥର 'ହଁ' କହି ଗାଡ଼ିଚାଳନାର ଆତ୍ମବିଶ୍ୱାସ ପ୍ରକଟ କଲେ ତାଙ୍କର ଆତ୍ମସାମର୍ଥ୍ୟବୋଧ ଉଚ୍ଚସ୍ତରୀୟ ବୋଲି ବିଚାର କରାଯିବ । ଅନ୍ୟ ପକ୍ଷରେ ସେ କେବଳ ପାଞ୍ଚଥର 'ହଁ' କହି ପଇଁଚାଳିଶ ଥର ନା କହିଲେ ଆତ୍ମସାମର୍ଥ୍ୟବୋଧ ନିମ୍ନସ୍ତରୀୟ ବୋଲି ଗୃହୀତ ହେବ । କହିବା ଆବଶ୍ୟକ ଯେ କ୍ଷେତ୍ର ସମ୍ପର୍କିତ ଆତ୍ମସାମର୍ଥ୍ୟବୋଧକୁ ଭିତ୍ତିକରି ସଫଳତା କିମ୍ବା କୌଶଳ ପ୍ରଦର୍ଶନ କରି ପୂର୍ବାନୁମାନ କରିବା ସହଜ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ପ୍ରଶିକ୍ଷଣ କ୍ଷେତ୍ରରେ ଉଚ୍ଚ ଆତ୍ମସାମର୍ଥ୍ୟବୋଧର ଅଧିକାରୀ ହୋଇଥିବା ବ୍ୟକ୍ତି ଜଣେ ସଫଳ ପ୍ରଶିକ୍ଷକ ହୋଇପାରିବେ । ସେହିପରି ଗୃହ ପରିଚାଳନା କ୍ଷେତ୍ରରେ ଉଚ୍ଚତର ଆତ୍ମସାମର୍ଥ୍ୟବୋଧ ରହିଥିବା ମହିଳା ଗୃହ ପରିଚାଳନାରେ ଉଚ୍ଚ ଦକ୍ଷତା ପ୍ରଦର୍ଶନ କରିପାରିବେ । ବର୍ତ୍ତମାନ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ହେଉଛି ଉଚ୍ଚତର ଆତ୍ମସାମର୍ଥ୍ୟବୋଧ ଗଠିତ ହେବ କିପରି ? କ'ଣ ହେଉଛି ଏହାର ମୂଳ ଉତ୍ସ ।

**ସାମର୍ଥ୍ୟବୋଧର ଉତ୍ସ**

ଆତ୍ମସାମର୍ଥ୍ୟବୋଧର (ସରଳରେ ଆତ୍ମବିଶ୍ୱାସର) ଏକାଧିକ ଉତ୍ସ ରହିଛି । ପ୍ରଥମଟି ହେଉଛି ଆହ୍ୱାନମୂଳକ ପରିବେଶର ଅନ୍ୱେଷଣ । ଅଧିକାଂଶ ଲୋକ ନିଜର ନିତ୍ୟ ପରିଚିତ ସୁରକ୍ଷା ବଳୟର ବାହରକୁ ଯାଇ ନୂତନ ପରିବେଶ ଅପରିଚିତ ଲୋକବଳୟ ମଧ୍ୟରେ ପ୍ରବେଶ କରନ୍ତି ନାହିଁ । ନିଜର ନିତିଦିନିଆ ଜୀବନର ସୁରକ୍ଷା ବଳୟ ମଧ୍ୟରେ ନିଜକୁ ସୀମିତ ରଖନ୍ତି । ନୂତନତ୍ୱ ଓ ଅପରିଚିତ ପରିବେଶର ସମ୍ମୁଖୀନ ହେବାରେ ଏମାନଙ୍କର ଭୟ ଆଶଙ୍କା ଓ ଉଦ୍‌ବେଗ ରହିଥାଏ ।

ଅନ୍ୟ ପକ୍ଷରେ ନିଜର ଦକ୍ଷତାର ବିକାଶ କାମନା କରୁଥିବା ବ୍ୟକ୍ତିମାନେ ନିଜର ଅନୁଭୂତିର ପରିସୀମା କ୍ରମାଗତ ଭାବରେ ବୃଦ୍ଧିକରି ଚାଲନ୍ତି । ଏଥିପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନେ ଓ ଶିକ୍ଷାର୍ଥୀମାନଙ୍କ ବିଭିନ୍ନ କାର୍ଯ୍ୟ ପାଇଁ ଅନ୍ୟ ବିଦ୍ୟାଳୟ ସମୂହକୁ ଯିବା, ବାହାରର କ୍ରୀଡା ଓ ତର୍କ ପ୍ରତିଯୋଗିତାରେ ଭାଗ ନେବା ଏବଂ ଅନ୍ୟ ସ୍ଥାନରେ ଅନୁଷ୍ଠିତ ହେଉଥିବା ପ୍ରତିଯୋଗିତା ଓ ଆଲୋଚନାଚକ୍ରରେ ଭାଗନେବା ପାଇଁ ପ୍ରୋତ୍ସାହନ ଦିଅନ୍ତି । ନିଜର ନିତ୍ୟ ପରିଚିତ ବଳୟର ବାହାରକୁ ଯାଇ ଆମ୍ଭେମାନେ ଯେତେବେଶି ନୂତନ ସମ୍ଭାବନାର ସମ୍ମୁଖୀନ ହେବୁ, ଆମର ଆତ୍ମବିଶ୍ୱାସ ସେତେ ଅଧିକ ବିକଶିତ ହେବ ।

ଆତ୍ମସାମର୍ଥ୍ୟବୋଧର ଦ୍ୱିତୀୟ ଉତ୍ସଟି ହେଉଛି ପ୍ରରୋଚନାର ପ୍ରୟୋଗ । ବାରମ୍ବାର ନିଜକୁ କହିବାକୁ ହେବ ଯେ 'ମୁଁ ପାରିବି','ମୁ ପାରିବି' ଉଚ୍ଚସ୍ୱରରେ ହେଉ ଅଥବା ନିମ୍ନ ସ୍ୱରରେ ହେଉ ପ୍ରରୋଚନାର ଆତ୍ମକଥନ ସାମର୍ଥ୍ୟ ଗଠନରେ ସହାୟକ ହୋଇଥାଏ । ' ମୁଁ ପାରିବି' – ଏପରି ମନର ପୁନରାବୃତ୍ତି ଫଳରେ, ଆମର ଅନ୍ତର୍ମନରେ ଯେପରି ସକାରାତ୍ମକ ପରିବର୍ତ୍ତନ ସମ୍ଭବ । ଆମର ଶରୀରର ଆଭ୍ୟନ୍ତରୀଣ ପ୍ରଦେଶରେ ମଧ୍ୟ ଅନୁକୂଳ ପ୍ରଭାବ ସଂଘଟିତ ହୋଇଥାଏ । ଆମ ପ୍ରରୋଚନାର ସୁଫଳ ଧୀରେ ଧୀରେ ବାହ୍ୟ ଜଗତରେ ପ୍ରକାଶ୍ୟ ରୂପ ନିଏ ।

ପ୍ରରୋଚନା ପରିପ୍ରେକ୍ଷୀରେ ମନେ ରଖିବାକୁ ହେବ ଯେ ବ୍ୟକ୍ତି ଦୁଇଟି ସ୍ତରରେ ଏହାର ପ୍ରଭାବକୁ ସକ୍ରିୟ କରିପାରିବେ । ପିତାମାତା ଆତ୍ମପ୍ରରୋଚନାର ଉପଯୋଗ କରି ନିଜର ସାମର୍ଥ୍ୟ ବଢ଼ାଇବେ । ପୁନଶ୍ଚ ନିଜର ପୁତ୍ରକନ୍ୟାଙ୍କ ପାଇଁ ପ୍ରରୋଚନା ଦେବେ । ଅନ୍ୟମାନେ ଯଦି ପାରୁଛନ୍ତି ତୁମେ ମଧ୍ୟ ପାରିବ । ଏପରି ପ୍ରରୋଚନା ଫଳରେ ପୁତ୍ରକନ୍ୟାଙ୍କର ଦକ୍ଷତା ବୃଦ୍ଧି ପାଇବ । ସେହିପରି ଶିକ୍ଷକ ଶିକ୍ଷୟିତ୍ରୀ ନିଜପାଇଁ ଏବଂ ସେମାନଙ୍କ ଛାତ୍ରଛାତ୍ରୀମାନଙ୍କ ପାଇଁ ଏହାର ଉପଯୋଗ କରିପାରିବେ । ନେତୃସ୍ଥାନୀୟ ବ୍ୟକ୍ତି ମଧ୍ୟ ନିଜ ପାଇଁ ଏବଂ ସେମାନଙ୍କର ଅନୁଗତମାନଙ୍କ ପାଇଁ ଏପରି ପ୍ରବର୍ତ୍ତନାର ବ୍ୟବହାର କରିପାରିବେ ।

ସାମର୍ଥ୍ୟ ବିକାଶର ତୃତୀୟ ଉତ୍ସଟି ହେଉଛି ବିଜ୍ଞତାର ସହ କାର୍ଯ୍ୟରୁ ଆହ୍ୱାନ ଗ୍ରହଣ କରିବାର ମାନସିକତା । କୌଣସି କାର୍ଯ୍ୟ ଆମ ଉପରେ ଲଦି ଦିଆଗଲେ ଚୟନର କୌଣସି ସ୍ୱାଧୀନତା ନଥାଏ । ମାତ୍ର କୌଣସି ସମୟରେ ଏକାଧିକ କାର୍ଯ୍ୟର ଆହ୍ୱାନ ଆସିଲେ କେଉଁଟିକୁ ପ୍ରଥମେ

କରାଯିବ, ସେ ସମ୍ପର୍କରେ ନିଷ୍ପତ୍ତି ନେବାକୁ ପଡ଼େ । କେତେକ ଲୋକ ଶତପ୍ରତିଶତ ସଫଳତା ପାଇଁ ଆରମ୍ଭରେ ସହଜିଆ କାମକୁ ଆବୋରି ନିଅନ୍ତି । ଏହା ଫଳରେ ଆଦ୍ୟ ଭାଗରେ ସେମାନେ ମାତ୍ରାଧିକ ସଫଳତା ପାଆନ୍ତି ସତ, ହେଲେ ଭବିଷ୍ୟତରେ ଅଳ୍ପମାତ୍ରାର କଷ୍ଟକର କାମରେ ବିଫଳତାର ଶରବ୍ୟ ହୋଇ ହତାଶ ଅନୁଭବ କରନ୍ତି । ଜୀବନ ଗୋଟିଏ ସରଳରେଖା ନ ହୋଇ ଅଙ୍କାବଙ୍କା ରାସ୍ତା ହୋଇଥିବାରୁ ସଦାସର୍ବଦା ସହଜସାଧ କାର୍ଯ୍ୟର ଆଶା ରଖିବା ସମୀଚୀନ ନୁହେଁ । ଅନ୍ୟ ପକ୍ଷରେ ଆଉ କେତେକ ଲୋକ ଜୁଆ ଖେଳାଳୀର ମନୋବୃତ୍ତି ନେଇ ଖୁବ୍ କଷ୍ଟକର କାର୍ଯ୍ୟ ହାତକୁ ନିଅନ୍ତି । ଏମାନଙ୍କ ବାରମ୍ବାର ବିଫଳତା ଫଳରେ ଏକ ପ୍ରକାର ଅସହାୟତାବୋଧ ଜନ୍ମିଥାଏ । ସୁତରାଂ ଉଚିତ ହେଉଛି ଯେ, ଆରମ୍ଭ ଅତି ସହଜ କିମ୍ବା ଅତି କଷ୍ଟକର କାର୍ଯ୍ୟ ହାତକୁ ନ ନେଇ ମଧ୍ୟମ ମାତ୍ରାର କଷ୍ଟସାଧ ହୋଇଥିବା କାର୍ଯ୍ୟର ଦାୟିତ୍ୱନେବା ଉଚିତ । ଏପରି ହେଲେ କିଛି ସଫଳତା ଏବଂ କିଛି ବିଫଳତା ଉପଯୋଗୀ ମନୋଭାବ ଗଠନ କରିବ । ସଫଳତାର ସ୍ୱାଦ ଆନନ୍ଦ ଦେବ ଏବଂ ଭବିଷ୍ୟତରେ ଅଧିକରୁ ଅଧିକ କଷ୍ଟକର କାର୍ଯ୍ୟର ଦାୟିତ୍ୱ ନେବାପାଇଁ ଉତ୍ସାହ ଆସିବ । ଏପରି ପ୍ରକ୍ରିୟା ଆତ୍ମବିଶ୍ୱାସକୁ କ୍ରମଶଃ ଦୃଢ଼ କରିବ ।

ଆତ୍ମସାମର୍ଥ୍ୟବୋଧର ଅଂକୁରଣ ଓ ବିକାଶ ପାଇଁ ଚତୁର୍ଥ ଉତ୍ସଟି ହେଉଛି ଅନୁକରଣୀୟ ବ୍ୟକ୍ତିତ୍ୱ (Role Models) । ଏହା ଏକ ସାଧାରଣ କଥା ଯେ ପ୍ରତ୍ୟେକ ବ୍ୟକ୍ତିର ଜୀବନରେ କେହି ବା କେହି ଅନୁକରଣୀୟ ବ୍ୟକ୍ତି ରହିଥାନ୍ତି । ମାତ୍ର ଲକ୍ଷ୍ୟ କରିବାର କଥା ଯେ ଅନୁକରଣୀୟ ନାୟକ ବା ନାୟିକାଙ୍କୁ ଲୋକେ ଶ୍ରଦ୍ଧା ସମ୍ମାନ ଜଣାଇଲେ ମଧ୍ୟ ଅନୁକରଣ ପାଇଁ ବିଶେଷ ଅଭିପ୍ରେରିତ ହୁଅନ୍ତି ନାହିଁ । ଏହାର ମୁଖ୍ୟ ମନସ୍ତାତ୍ତ୍ୱିକ କାରଣ ହେଉଛି ଯେ, ସେମାନେ ନିଜର ବ୍ୟକ୍ତିତ୍ୱ ଏବଂ ନାୟକ/ନାୟିକାଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ସାମୀପ୍ୟ ନ ଦେଖି ଦୂରତ୍ୱ ଦେଖନ୍ତି । ଗୋଟିଏ ଦୃଷ୍ଟାନ୍ତ ମାଧ୍ୟମରେ ଏହାକୁ ସ୍ପଷ୍ଟ କରାଯାଇପାରେ ।

ମନେକରାଯାଉ କୁହାଗଲା ଯେ ପୂର୍ଣ୍ଣବାବୁ ଜଣେ ସଫଳ ଓ ଅନୁକରଣୀୟ ବ୍ୟକ୍ତିତ୍ୱ (Roll Model), ଲୋକେ ତାଙ୍କୁ ଅନୁକରଣ କରିବା ଉଚିତ୍ । ଏ କ୍ଷେତ୍ରରେ ଦେଖାଯିବ ଯେ ଲୋକମାନେ ତାଙ୍କୁ ପୂଜନୀୟ ସ୍ଥାନ ଦେଉଛନ୍ତି କିନ୍ତୁ ସେପରି ହେବ ବୋଲି ଆସ୍ଥା ପ୍ରକଟ କରିନାହାନ୍ତି । ଲୋକେ କହିବେ ପୂର୍ଣ୍ଣବାବୁ ଜମିଦାର ପରିବାରର ଲୋକ ତାଙ୍କର ଅମାପ ଧନ ରହିଛି । ତାଙ୍କର ଆତ୍ମୀୟସ୍ୱଜନ ଉଚ୍ଚପଦସ୍ଥ ଏବଂ ତାଙ୍କୁ ଘରକଥା ବୁଝିବାକୁ ପଡ଼ିନଥାଏ । ମାତ୍ର ସାଧାରଣ ଲୋକ ହିସାବରେ ସେମାନଙ୍କର ଅନେକ ସମସ୍ୟା ରହିଛି । ଜୀବନରେ ସଂଗ୍ରାମ କରିବାକୁ ହେଉଛି । ଏପରି ବିଚାରଧାରା ନିଶ୍ଚିତ ଭାବରେ ପୂର୍ଣ୍ଣବାବୁ ଏବଂ ଲୋକମାନଙ୍କ ମଧ୍ୟରେ ଦୂରତ୍ୱ ସୃଷ୍ଟି କରିବ । ଏଇଥି ପାଇଁ ଐତିହାସିକ ଚରିତ୍ର ଓ ଦୂରଦୂରାନ୍ତରେ ରହିଥିବା ସମ୍ମାନିତ ବ୍ୟକ୍ତିତ୍ୱ ପ୍ରତି ଲୋକମାନେ ଶ୍ରଦ୍ଧା ପ୍ରକଟ କଲେ ମଧ୍ୟ ଅନୁସରଣ କରିବା ପାଇଁ ବିଶେଷ ଆଗ୍ରହୀ ହୁଅନ୍ତି ନାହିଁ ।

ଉପର ଆଲୋଚନାର ଏକ ବିଶେଷ ତାତ୍ପର୍ଯ୍ୟ ରହିଛି । ବାସ୍ତବରେ ଅନୁକରଣ ବା ଅନୁସରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ହେଲେ ବ୍ୟକ୍ତି ଓ ଅନୁକରଣୀୟ ନାୟକ/ନାୟିକା ମଧ୍ୟରେ ଦୂରତ୍ୱ କମାଇ ସାମୀପ୍ୟ ବୃଦ୍ଧି କରିବାକୁ ହେବ । ଦୂରଦୂରାନ୍ତରୁ ନାୟକ/ନାୟିକାର ପ୍ରସଙ୍ଗ ନ ଆଣି ନିକଟସ୍ଥ ପରିବେଶରୁ ଅନୁକରଣୀୟ ବ୍ୟକ୍ତିତ୍ୱ ନଜିର ନେବାକୁ ପଡ଼ିବ । ନିଜର ସନ୍ତାନସନ୍ତତିମାନଙ୍କୁ ପରିବର୍ତ୍ତନ କରିବାକୁ ମନସ୍ଥ କରିଥିବା ପିତାମାତା ପୁତ୍ରକନ୍ୟାର ସହପାଠୀଙ୍କ ଉଦାହରଣ ଦେଇପାରନ୍ତି । କହିପାରନ୍ତି ଦେଖ, ତୋର ସହପାଠୀ ଯଦି ଏପରି କରିପାରୁଛି ତୁ ପାରିବୁ ନାହିଁ କାହିଁକି ? ସେହିପରି କର୍ମସଂସ୍ଥା ବା ଅନୁଷ୍ଠାନ ପରିଚାଳକ ସହକର୍ମୀଙ୍କ ଦୃଷ୍ଟାନ୍ତ ଦେଇପାରନ୍ତି । ଖୁବ୍ ନିକଟସ୍ଥ ପରିବେଶରୁ ଗ୍ରହଣ କରାଯାଉଥିବା ଅନୁକରଣୀୟ ବ୍ୟକ୍ତିତ୍ୱ ସାଧାରଣ କିଶୋର/କିଶୋରୀ କିମ୍ବା ଲୋକଙ୍କୁ ପ୍ରରୋଚିତ କରିବାର ସଫଳ ଭୂମିକା ଗ୍ରହଣ କରିବ ।

**ବିଶ୍ୱାସର ପରିଚାଳନା**

ପୂର୍ବ ଆଲୋଚନା ଅନୁଯାୟୀ ଦକ୍ଷତା ବା ସାମର୍ଥ୍ୟର ପ୍ରଦର୍ଶନ ପାଇଁ କେବଳ ଆହରଣ କରାଯାଇଥିବା ଜ୍ଞାନ ବା କୌଶଳ ଯଥେଷ୍ଟ ନୁହେଁ । ଏଥିପାଇଁ 'ମୁଁ କରିପାରିବି'ର ବିଶ୍ୱାସବୋଧ ନିତାନ୍ତ ଆବଶ୍ୟକ । ଏପରି ବିଶ୍ୱାସବୋଧର ଅନୁକରଣ ଆଲୋଚନା କଲାବେଳେ ଅନ୍ୟ ଗୋଟିଏ ଦିଗ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ତାହା ହେଉଛି ଆତ୍ମବିଶ୍ୱାସର

ପରିଚାଳନା । ପୁଣି ପରିଚାଳନା ପରିପ୍ରେକ୍ଷୀରେ ଯେଉଁ ଦୁଇଟି ଉପାଦାନ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ, ସେ ଦୁଇଟି ହେଉଛି ଭାବନାର ପରିଚାଳନା ଓ ଭାବ ବା ଆବେଗର ପରିଚାଳନା ।

ଭାବନା ବା ଚିନ୍ତନର ପରିଚାଳନା ଦକ୍ଷତା ପ୍ରଦର୍ଶନର ଏକ ବିଶିଷ୍ଟ ଅଂଶ । ଭାବନା ପରିଚାଳନା ସହିତ ଏକାଧିକ ଉପାଦାନ ସଂଶ୍ଳିଷ୍ଟ ହୋଇଥିଲେ ମଧ୍ୟ ଦୁଇ ତିନୋଟିର ସଂକ୍ଷିପ୍ତ ସୂଚନା ଆବଶ୍ୟକ ମନେହୁଏ । ପ୍ରଥମତଃ ଦକ୍ଷତା ପ୍ରଦର୍ଶନ ପାଇଁ ଆଗ୍ରହୀ ଥିବାବ୍ୟକ୍ତି ଯଥେଷ୍ଟ ପରିମାଣର ପ୍ରସ୍ତୁତି ଓ ପୂର୍ବ ପ୍ରଦର୍ଶନର (Rehersal) ଉପଯୋଗ କରନ୍ତି । ଧରାଯାଉ ଆମମାନଙ୍କ ଗହଣରେ ଏକ ପ୍ରକଳ୍ପର ଉପସ୍ଥାପନ କରିବାର କାର୍ଯ୍ୟକ୍ରମ ରହିଛି । ସୁତରାଂ ନିର୍ଦ୍ଦିଷ୍ଟ ସ୍ଥାନ, ସମୟ ଓ ଉପସ୍ଥାପନ ପୂର୍ବରୁ ସେ ଏକାଧିକ ବାର ଏହାର ଅଭ୍ୟାସ କରିବା ଉଚିତ । ଏଥିପାଇଁ ଏକ ବିଧିବଦ୍ଧ ଯୋଜନା (planning) ପ୍ରୟୋଜନ । ଯୋଜନାର ଉତ୍କର୍ଷ ନିଶ୍ଚିତ ଭାବରେ ପ୍ରଦର୍ଶନର ଗୁଣାତ୍ମକ ସ୍ତର ନିର୍ଦ୍ଧାରଣ କରେ ।

ଅବଶ୍ୟ ଯୋଜନାର ଉତ୍କର୍ଷ କ୍ଷେତ୍ରରେ ମସ୍ତିଷ୍କର ଭୂମିକା ରହିଛି । ଯୋଜନା କାର୍ଯ୍ୟରେ ମଣିଷର ଅଗ୍ର ମସ୍ତିଷ୍କ କିପରି ପ୍ରାଧାନ୍ୟ ନେଇଥାଏ, ତାହା ଆଧୁନିକ ସ୍ନାୟୁବିଜ୍ଞାନୀମାନେ ସ୍ପଷ୍ଟ କରିଛନ୍ତି । ଏହାର ବିଶ୍ଳେଷଣ ଏ ପ୍ରବନ୍ଧର ସୀମିତ କଳେବର ମଧ୍ୟରେ ସମ୍ଭବ ନୁହେଁ । ତଥାପି କୁହାଯିବ ଯେ ମସ୍ତିଷ୍କର (ବିଶେଷତଃ ଅଗ୍ର ମସ୍ତିଷ୍କର) ଯତ୍ନ ଓ ସୁରକ୍ଷା ଏକାଗ୍ରତାର ବିକାଶ ଏବଂ ଧ୍ୟାନ ଓ ଅଭିନିବେଶ (Attention) କୁଶଳତା ବେଶ୍ ସହାୟକ ଉପାଦାନ ।

ଭାବନା ପରିଚାଳନା ସମୟରେ ମାନସିକ ଛବି ଅଂକନ (Visualisation) ବେଶ୍ ଉପଯୋଗୀ ହୋଇଥାଏ । ଗୋଟିଏ ପ୍ରକଳ୍ପ ଉପସ୍ଥାପନର ଯେଉଁ ଉଦାହରଣ ଦିଆଯାଇଛି, ସେ ପରିପ୍ରେକ୍ଷୀରେ ଏହାକୁ ପ୍ରାଞ୍ଜଳ କରିହେବ । ବ୍ୟକ୍ତି ପ୍ରକୃତ ପ୍ରକଳ୍ପ–ଉପସ୍ଥାପନ ପୂର୍ବରୁ ମାନସିକ ସ୍ତରରେ କଳ୍ପନା କରିବେ । ସେ କେଉଁଠାରେ ଠିଆହେବେ କି ବସିବେ କିପରି ନିଜକୁ ଗତିଶୀଳ କରିବେ, ଅନ୍ୟମାନଙ୍କ ସହିତ କିପରି ଦୃଷ୍ଟି ବିନିମୟ କରିବେ ଏବଂ ଅପ୍ରୀତିକର ପ୍ରଶ୍ନର ସମ୍ମୁଖୀନ ହେଲେ କିପରି ଆଚରଣ ଦର୍ଶାଇବେ ଏପରି ସବୁ ଦୃଶ୍ୟର ମାନସିକ ଛବି ଅଙ୍କନ ଓ ପରିଚାଳନା ପରେ ସହାୟକ ହେବ ।

ଭାବନା ସହିତ ଭାବ ବା ଆବେଗର (Emotion) ପରିଚାଳନା ଖୁବ୍ ଉପଯୋଗୀ । ଆମର ସକାରାତ୍ମକ ଆବେଗ ଆମର କାର୍ଯ୍ୟକୁଶଳତାକୁ ଯେପରି ବୃଦ୍ଧିକରେ ନକାରାତ୍ମକ ଆବେଗ ସେପରି ବାଧା ସୃଷ୍ଟିକରେ । ଅଲିମ୍ପିକ କ୍ରୀଡାରେ ଭାଗନେଇ ପଦକ ଜିତିବା କ୍ରୀଡ଼ାବିତ୍‌ମାନଙ୍କୁ କ୍ରୀଡ଼ା ସାମ୍ବାଦିକମାନେ ବାରମ୍ବାର ଏପରି ପ୍ରଶ୍ନ ପଚାରିଥାଆନ୍ତି । ଅଲିମ୍ପିକ୍ କ୍ରୀଡ଼ା ଥରେ ମାତ୍ର ଚାରିବର୍ଷରେ ଅନୁଷ୍ଠିତ ହେଉଛି । ଅଥଚ ବର୍ଷ ବର୍ଷ ଧରି ଆପଣମାନେ ଅଭ୍ୟାସ ବଜାୟ ରଖନ୍ତି କିପରି ?

ସେମାନେ ପ୍ରାୟ ଏକା ପ୍ରକାର ଉତ୍ତର ଦିଅନ୍ତି । ସେମାନେ କୁହନ୍ତି ଯେ ପଦକ ଜିତିବାର ଆନନ୍ଦମୟ ମୁହୂର୍ତ୍ତ କଳ୍ପନା କରି ସେମାନେ ଗଭୀର ଉଲ୍ଲାସ ଅନୁଭବ କରନ୍ତି । ସେମାନେ ବିଭୋର ହୋଇ କଳ୍ପନା କରିପାରନ୍ତି ଯେ–ସେମାନେ ପଦକ ନେବା ସମୟରେ ସେମାନଙ୍କର ଦେଶବାସୀ ଅପୂର୍ବ ଶ୍ରଦ୍ଧା ପ୍ରକଟ କରିବେ । ସେମାନଙ୍କ ସହଯୋଗୀ ଦେଶର ଜାତୀୟ ପତାକା ଧରି ସେମାନଙ୍କ ସହିତ ପ୍ରାଙ୍ଗଣରେ ଦୌଡ଼ିବେ । ମାନସିକ ଛବି ଅଙ୍କନ ମାଧ୍ୟମରେ ନିଜକୁ ଭାବାପ୍ଲୁତ କରିବାର ଉଦ୍ୟମ ସେମାନଙ୍କୁ ସକ୍ରିୟ ଓ ସଚଳ କରେ ।

ପରିଶେଷରେ କୁହାଯିବ ଯେ ସାମର୍ଥ୍ୟର ଗଠନ ଓ ବିକାଶ ଏକ ମାନସିକ ପ୍ରକ୍ରିୟା । ଆଲୋଚିତ ଉତ୍ସସମୂହର ଉପଯୋଗ କରି 'ମୁଁ ପାରିବି' ବିଶ୍ୱାସର ଅଂକୁରଣ କରିବାକୁ ହେବ । ପରବର୍ତ୍ତୀ ପର୍ଯ୍ୟାୟରେ ଏହାର ବିସ୍ତାରଣ ପାଇଁ ସହଯୋଗୀ ଭାବ ଓ ଭାବନାର ପରିଚାଳନା କରିବାକୁ ହେବ । କେବଳ ବ୍ୟକ୍ତିର ସ୍ତରରେ ନୁହେଁ ସାମୂହିକ ସ୍ତରରେ ସାମର୍ଥ୍ୟବୋଧର ଉନ୍ମେଷ ଓ ପ୍ରସାରଣ କରିପାରିଲେ ସମଷ୍ଟିଗତ ପ୍ରଗତି ମଧ୍ୟ ତ୍ୱରାନ୍ୱିତ ହେବ ।

ଜାଭିୟର ବିଶ୍ୱବିଦ୍ୟାଳୟ
ଭି.ଆଇ.ଏମ୍–୯୯, ଶୈଳଶ୍ରୀ ବିହାର
ଭୁବନେଶ୍ୱର–୧୩

# ଉତ୍କଳମଣି ଗୋପବନ୍ଧୁଙ୍କ କବିତାର ଭାଷା ଓ ଶୈଳୀ

ଡକ୍ଟର ଦେବାଶିଷ ମହାପାତ୍ର

ସମାଜ ସଂସ୍କାର ମନୋବୃତ୍ତି, ଜାତୀୟତା ଏବଂ ଜନସେବା ପାଇଁ ସଙ୍କଳ୍ପବଦ୍ଧ ଥିବା ସତ୍ୟବାଦୀ ଯୁଗର ପ୍ରମୁଖ ସ୍ରଷ୍ଟା ଗୋପବନ୍ଧୁ ଦାସ । କୁହାଯାଏ ଯେ, କବି ଗୋପବନ୍ଧୁଙ୍କ କର୍ମ ଓ କବିତ୍ୱ ମଧ୍ୟରେ କୌଣସି ବ୍ୟବଧାନ ନଥିଲା, ତାଙ୍କର କର୍ମାଦର୍ଶ ହିଁ ତାଙ୍କ କାବ୍ୟ–କବିତାରେ ପ୍ରତିଫଳିତ । ଐତିହାସିକ, ଜାତୀୟତାବୋଧ ଓ ମାନବବାଦୀ ଦୃଷ୍ଟିକୋଣ ପାଇଁ ଗୋପବନ୍ଧୁଙ୍କ କାବ୍ୟକବିତା ଆକର୍ଷଣୀୟ ତଥା ମର୍ଯ୍ୟାଦାବନ୍ତ । ବଳିଷ୍ଠ ଜାତୀୟ ଚେତନା ଏବଂ ଐତିହାସିକ ପ୍ରୀତି ଉପରେ ତାଙ୍କର ଅଧିକାଂଶ କାବ୍ୟ କବିତା ପ୍ରତିଷ୍ଠିତ । ଓଡ଼ିଶାର ଇତିହାସ, କିମ୍ବଦନ୍ତୀ, ଜନଶ୍ରୁତି, ସଂସ୍କୃତି, ପରମ୍ପରା, କଳାସ୍ଥାପତ୍ୟକୁ ନେଇ କାବ୍ୟ କବିତା ରଚନା କରିବା କବି ଗୋପବନ୍ଧୁଙ୍କ ପ୍ରମୁଖ ଆଭିମୁଖ୍ୟ ଥିଲା । ଜଣେ ପ୍ରେରଣାବାଦୀ ଓ ମାନବବାଦୀ କବି ଭାବେ ନିଜକୁ ପ୍ରତିଷ୍ଠିତ କରିପାରିବା ଗୋପବନ୍ଧୁଙ୍କ କାବ୍ୟ କବିତାରେ ଆହ୍ୱାନ, ଜାଗରଣ, ସଚେତନତା, ସ୍ୱଦେଶପ୍ରୀତି, ବିଶ୍ୱପ୍ରେମ, ପ୍ରେରଣା ଦେଖିବାକୁ ମିଳେ । ତାଙ୍କ ଲେଖନୀରୁ ପ୍ରଥମେ ପ୍ରକାଶ ପାଇଥିଲା 'ଅବକାଶ ଚିନ୍ତା' (୧୮୯୯) । ପ୍ରକୃତି ଚିତ୍ର, ଅତୀତ ଗୌରବ ଗାନ ଓ ଐତିହ୍ୟ ପ୍ରୀତି ଏହି ପ୍ରଥମ ପ୍ରକାଶିତ କବିତା ପୁସ୍ତକରେ ସ୍ପଷ୍ଟ, ସୁଲଭ । ଏହା ପରେ କବି ଗୋପବନ୍ଧୁଙ୍କ କଲମରୁ କ୍ରମାନ୍ୱୟରେ ଝରି ଆସିଥିଲା 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ', 'ନଚିକେତା', 'ଗୋ–ମାହାତ୍ମ୍ୟ' ପ୍ରଭୃତି କାବ୍ୟ କବିତା । କବି ଗୋପବନ୍ଧୁ ଏହିସବୁ ପୁସ୍ତକ ମାଧ୍ୟମରେ ଓଡ଼ିଆ ଜାତୀୟତାର ଭିତ୍ତିଭୂମିକୁ ସୁଦୃଢ଼ କରିବା ପାଇଁ ସଫଳ ପ୍ରଚେଷ୍ଟା କରିଛନ୍ତି । ଜନସେବା ଓ ଦେଶ ପାଇଁ ମର୍ଯ୍ୟାଦାଜନକ 'ଉତ୍କଳମଣି' ଉପାଧିରେ ଭୂଷିତ ଗୋପବନ୍ଧୁ ଓଡ଼ିଆ ଜାତିକୁ ଜାଗ୍ରତ ଓ ଆତ୍ମସଚେତନ କରିବା ପାଇଁ ନିର୍ମାଣ କରିଯାଇଛନ୍ତି ତାଙ୍କର ସୁରମ୍ୟ ସାହିତ୍ୟ ସୌଧ ।



ଓଡ଼ିଶାର ଜନସାଧାରଣଙ୍କୁ ଜାତୀୟତାବୋଧ ଭାବଧାରାରେ ସାମିଲ କରାଇବା କବି ଗୋପବନ୍ଧୁଙ୍କର ପ୍ରମୁଖ ଲକ୍ଷ୍ୟ ଥିଲା । ଗୌରବମୟ ଅଭୁଲା ଅତୀତକୁ ଭାବ ଓ ଭାଷା ମାଧ୍ୟମରେ କାବ୍ୟିକ ଉପସ୍ଥାପନ କରି ଜାତିପ୍ରାଣରେ ଉନ୍ମାଦନା କରିଦେବା କବି ଗୋପବନ୍ଧୁଙ୍କ ସ୍ୱପ୍ନ ଓ ସଂକଳ୍ପ ଥିଲା । ଅତୀତ ଜୟଗାନ ଜରିଆରେ ଜାତୀୟତାଭାବ ଜାଗରଣ କରିବା କବି ଗୋପବନ୍ଧୁଙ୍କ ପ୍ରମୁଖ ଆଭିମୁଖ୍ୟ ଥିଲା । ଜଣେ ଦରଦୀ, ମାନବବାଦୀ, ପ୍ରେରଣାବାଦୀ,

ଜାତୀୟବାଦୀ କବି ଭାବେ ଗୋପବନ୍ଧୁ ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ, ଋଦ୍ଧିମନ୍ତ କରିଛନ୍ତି । ତାଙ୍କର ଅବଦାନ ଅଭୁଲା ଓ ଅପାସୋରା ତଥା ଆକର୍ଷଣୀୟ । ଓଡ଼ିଆ ଭାଷା ସାହିତ୍ୟରେ ତାଙ୍କର ସ୍ଥାନ ସ୍ୱତନ୍ତ୍ର । ଉଭୟ ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ସେ ଓଡ଼ିଆ ଭାଷା ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

କବି ଗୋପବନ୍ଧୁଙ୍କର ପ୍ରଥମ ସାରସ୍ୱତ ସୃଷ୍ଟି 'ଅବକାଶ ଚିନ୍ତା'ରେ ପ୍ରକୃତି ଚିତ୍ର, ଅତୀତ ଗୌରବ ଗାନ ଓ ଐତିହ୍ୟ ପ୍ରୀତିର ସୁନ୍ଦର ସମନ୍ୱୟ ହୋଇଛି । ଏହି କବିତା ପୁସ୍ତକରେ କବିଙ୍କ ସମାଜ-ଚିନ୍ତା, ଜୀବନଦର୍ଶନ ଓ ଜନକଲ୍ୟାଣନିଷ୍ଠ ଆଦର୍ଶ ଅଭିବ୍ୟକ୍ତି ଦେଖିବାକୁ ମିଳିଥାଏ । ଏଥିରେ କବିଙ୍କ ବୁଦ୍ଧି ଓ ହୃଦୟ, ଦୀପ୍ତି ଓ ଦ୍ୟୁତିର ସମନ୍ୱୟରେ ମାନବର ମହିମା ମହିମାନ୍ୱିତ ହୋଇଉଠିଛି । ସାମ୍ୟ ଓ ସଂହତି ପ୍ରତିଷ୍ଠା ପାଇଁ ଉତ୍କଳର ଅତୀତ ଉପରେ କବି ଗୋପବନ୍ଧୁ ଗୁରୁତ୍ୱାରୋପ କରି ଏହି କବିତା ପୁସ୍ତକରେ ତାଙ୍କର ଦୃଷ୍ଟିଭଙ୍ଗୀକୁ ଅତୀତ ପ୍ରସାରୀ କରିଛନ୍ତି । ଏହି କବିତା ସଂକଳନରେ କବି ଗୋପବନ୍ଧୁଙ୍କ ବ୍ୟକ୍ତିଗତ ଜୀବନର ଅନୁଭୂତିମାନ ପ୍ରକାଶ ପାଇବା ସହ ଆଦିକବି ସାରଳା ଦାସ, କବି ବଳରାମ ଦାସ, ଜଗନ୍ନାଥ ଦାସ, କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର, ଗଜପତି ଅନଙ୍ଗଭୀମ ଦେବ ଓ ପୁରୁଷୋତ୍ତମ ଦେବ ପ୍ରମୁଖ ଓଡ଼ିଶାର କେତେକ ବରପୁତ୍ରଙ୍କ ସମ୍ପର୍କରେ ଲେଖାମାନ ରଚିତ ହୋଇଥିଲା । ଉତ୍କଳୀୟମାନଙ୍କ ମନ ଓ ପ୍ରାଣରେ ନୂତନ ଉନ୍ମାଦନା ସୃଷ୍ଟିର ସଫଳ ପ୍ରୟାସ ଏହି ପୁସ୍ତକରେ ହୋଇଛି । କବି ଗୋପବନ୍ଧୁ 'ଅବକାଶ ଚିନ୍ତା'ରେ କହନ୍ତି –

୧। 'ପ୍ରେମ ଆଲିଙ୍ଗନ କରି ସର୍ବଜନେ,
ଉଚ୍ଛୁଳାଅ ପ୍ରେମ ଉଚ୍ଛ୍ୱାସ ଜୀବନେ ।'

୨। 'ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।'

୩। 'ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ
ମାନବ-ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ?'

ଅତୀତ ଉତ୍କଳର ମହିମା, ମହିମାଦୀପ୍ତ ଅତୀତ ଉଦ୍ଧାରି, ଅତୀତ ସହିତ ବର୍ତ୍ତମାନକୁ ତୁଳନା କରି କବି ଗୋପବନ୍ଧୁ ଜାଗରଣ ପାଇଁ, ଜାତିର ଅଭ୍ୟୁଦୟ ଲାଗି ଏହି ପ୍ରଥମ କବିତା ପୁସ୍ତକ 'ଅବକାଶ ଚିନ୍ତା'ରେ ସଫଳ ପ୍ରୟାସ କରିଛନ୍ତି । ଅତୀତର ପ୍ରେରଣାରେ ବର୍ତ୍ତମାନ ଓ ଭବିଷ୍ୟତ ମାନବ ସମାଜର କଲ୍ୟାଣ ସାଧନ କବି ଗୋପବନ୍ଧୁଙ୍କ ଜୀବନର ପରମ ଲକ୍ଷ୍ୟ ଥିଲା । ଏକ ଦୀର୍ଘ ଜାତୀୟତାବାଦୀ ଓ ମାନବବାଦୀ କାବ୍ୟିକ ଯାତ୍ରାପଥରେ 'ଅବକାଶ ଚିନ୍ତା' ଥିଲା ପ୍ରଥମ ସଫଳ ପ୍ରୟାସ । ପ୍ରଥମେ ୧୮୯୯ ମସିହାରେ ପ୍ରକାଶ ପାଇଥିବା ଏହି ପୁସ୍ତକର ପରବର୍ତ୍ତୀ ପ୍ରକାଶ ୧୯୨୨ରେ ହୋଇଥିଲା ।

ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇଥିଲେ କବି ଗୋପବନ୍ଧୁ । ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ରାଜନୈତିକ ବନ୍ଦୀରୂପେ ସେ ୧୯୨୩ ମସିହା ଜାନୁୟାରୀ ମାସଠାରୁ ୧୯୨୪ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ହଜାରିବାଗ୍ ବନ୍ଦୀଶାଳାରେ ଆବଦ୍ଧ ହୋଇ ରହିଥିଲେ । ସେହି ବନ୍ଦୀଶାଳାରେ ସେ ଲେଖିଥିଲେ 'କାରାକବିତା' । ଏହି 'କାରାକବିତା' ତାଙ୍କର ବିଶ୍ୱପ୍ରାଣତା, ଆଧ୍ୟାତ୍ମିକତା ଓ ବଳିଷ୍ଠ ଦେଶାତ୍ମବୋଧର ଅପୂର୍ବ ସମନ୍ୱୟ । ବିଶ୍ୱନିୟନ୍ତା ଈଶ୍ୱର ହିଁ ତାଙ୍କ କାରାଗାର ଜୀବନର ଆଲୋକବର୍ତ୍ତିକା ବୋଲି ମନେ କରି ସେ ଲେଖିଥିଲେ –

'ଜୀବନ ନିବିଡ଼ତମ ସେହି ମୋର ଧ୍ରୁବତାରା
ତାଙ୍କ ବଳେ ତୀର୍ଥ ମୋର ବିଷୟ ଦୁଃସହ କାରା ।'

ବ୍ୟକ୍ତିଗତ ପ୍ରେମ ସମେତ ସ୍ୱଦେଶ ପ୍ରେମ, ବିଶ୍ୱପ୍ରେମ, ବିଭୁପ୍ରେମ ଓ ପ୍ରକୃତି ପ୍ରେମକୁ ନେଇ ରଚିତ କବିତାଗୁଡ଼ିକର ସୁନ୍ଦର ସମାବେଶ 'କାରାକବିତା'ରେ ହୋଇଛି । କବି ଗୋପବନ୍ଧୁ କେତେବେଳେ ବିଶ୍ୱନିୟନ୍ତାଙ୍କ ଉପରେ ଦୃଢ଼ ବିଶ୍ୱାସ ପୋଷଣ କରିଛନ୍ତି ତ କେତେବେଳେ ଅନ୍ତରଙ୍ଗ ବନ୍ଧୁ ବିୟୋଗରେ ଶୋକାଚ୍ଛନ୍ନ ଚିନ୍ତା ବ୍ୟକ୍ତ କରିଛନ୍ତି । ସେହିପରି ବିରହ ବ୍ୟଥା, ଅତୀତ କଥା, ସ୍ୱଦେଶ ପ୍ରୀତି କବି ଗୋପବନ୍ଧୁଙ୍କ ପ୍ରାଣରେ ଅପୂର୍ବ ଭାବାବେଗ ସୃଷ୍ଟି କରିଛି । ଏହି କାରଣରୁ କୁହାଯାଏ 'କାରା କବିତା'ରେ କବି ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ପରିସ୍ଫୁଟ ହୋଇଛି । 'କାରାକବିତା'ରେ ସ୍ଥାନ ପାଇଥିବା କବି ଗୋପବନ୍ଧୁଙ୍କ ସ୍ୱଦେଶପ୍ରୀତିର ପରମ ନିଦର୍ଶନ 'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାରେ କବି ବିହାରର ହଜାରିବାଗ ଜେଲ୍‌ରେ ଥାଇ ମଧ୍ୟ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମୁଷାରୁ ଚିଲିକା, ସାକ୍ଷୀ ଗୋପାଳ, ଭୁବନେଶ୍ୱର, ଖଣ୍ଡଗିରି, ମହାନଦୀ, ବାରବାଟୀ, ଗଡ଼ଜାତ ଅଞ୍ଚଳ ଓ ସମ୍ବଲପୁର ଦେଇ ପୁଣି ହଜାରିବାଗକୁ କଳ୍ପନାରେ ପରିକ୍ରମା କରିବା ହୃଦୟସ୍ପର୍ଶୀ ହୋଇଛି । କବି ଗୋପବନ୍ଧୁଙ୍କ ଏହି କବିତାକୁ ସଂସ୍କୃତର ମହାକବି କାଳିଦାସଙ୍କ 'ମେଘଦୂତ' ସହିତ ତୁଳନା କରାଯାଇଥାଏ । କବି ଗୋପବନ୍ଧୁଙ୍କ ପ୍ରଥମ କବିତା ପୁସ୍ତକ 'ଅବକାଶ ଚିନ୍ତା' ଅନ୍ତର୍ଗତ 'ଗୋଟିଏ କାଙ୍କଣ ଗଛ', 'ଅନାଥ କଳିକା', ଗ୍ରୀଷ୍ମେ 'ଥୁଣ୍ଟା ବରଗଛ', 'ମୋ ନାନୀ', 'ଶିବରାତ୍ରି' ପ୍ରଭୃତି ପ୍ରାୟ ପ୍ରତ୍ୟେକ କବିତାରେ ବୌଦ୍ଧିକତା ଓ ବାସ୍ତବତାର ସମନ୍ୱୟ ଘଟିଛି । 'ମୋ ନାନୀ' କବିତାରେ କବି ଗୋପବନ୍ଧୁ ବୈଧବ୍ୟକୁ ମହିମାର ଦୀପ୍ତି ଓ ପ୍ରଶାନ୍ତି ଦେବାର ପ୍ରଚେଷ୍ଟା କରିଥିବା ବେଳେ 'ଅନାଥ କଳିକା'ରେ ନିରାଶ୍ରୟା ଓ ନୈରାଶ୍ୟ ଜର୍ଜରିତା ପ୍ରତି ସମବେଦନା ପ୍ରକାଶ କରିଛନ୍ତି । 'ଅବକାଶ ଚିନ୍ତା' ଓ 'କାରାକବିତା' ପାଠ କଲାପରେ ମନେହୁଏ ଯେ କବି ଗୋପବନ୍ଧୁଙ୍କ ଅନୁଭୂତି ଗଭୀର, ଅଭିଜ୍ଞତା ଅଧିକ ହୋଇଥିବାରୁ କବିତାତକ ଅତ୍ୟନ୍ତ ହୃଦୟସ୍ପର୍ଶୀ ।

କବି ଗୋପବନ୍ଧୁଙ୍କ 'ଧର୍ମପଦ' ଗୋଟିଏ କିମ୍ବଦନ୍ତୀମୂଳକ ଗାଥାକାବ୍ୟ । କବି ଏହାର ଭୂମିକାରେ ଉଲ୍ଲେଖ କରନ୍ତି, 'ବାଲ୍ୟକାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟ ସହଜ ଉଦ୍ୟମରେ ମଧ୍ୟ ସେଆଡ଼େ କିଛି କରିଥିଲି । ମାତ୍ର ଘଟଣା ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିରଦିନ ପାଇଁ ସେ ଆଶା ମଉଳିଛି । ଧର୍ମପଦ ସେ ଆଶାର ଅଙ୍କୁର ନୁହେଁ, ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନମାତ୍ର ।' ଜନଶ୍ରୁତି ନେଇ 'ଧର୍ମପଦ' ଓ କଠୋପନିଷଦକୁ ଅବଲମ୍ବନ କରି 'ନଚିକେତା ଉପାଖ୍ୟାନ' ରଚନା କରିଥିଲେ କବି ଗୋପବନ୍ଧୁ । ଏହି ଦୁଇ ପୁସ୍ତକରେ କବି ଗୋପବନ୍ଧୁଙ୍କ ଜୀବନ ସାଧନା ମନ୍ତ୍ର ପ୍ରତିଫଳିତ ହୋଇଛି । ଦେଶ ଓ ଜାତି ପାଇଁ ବଳିଦାନ ଦେଇଥିବା କିଶୋର ଧର୍ମପଦ ନିଜର ପିତା ବିଶୁ ମହାରଣାଙ୍କୁ ଆଶ୍ୱସ୍ତ କରିବାକୁ ଯାଇ ଯାହା କରିଥିଲା, ତାହାହିଁ ଥିଲା ଗୋପବନ୍ଧୁଙ୍କର ଅନ୍ତର ବାଣୀ –

'କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।
ମାନବ ଜୀବନ ନୁହଁଇ କେବଳ
ବର୍ଷ–ମାସ–ଦିନ–ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।'

କବି ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା' ରଚନାଟି ଆତ୍ମଜୀବନୀମୂଳକ । ବ୍ୟକ୍ତିଗତ ଜୀବନର କାରଣ ଏବଂ ବ୍ୟାପକ ରାଜନୈତିକ ଅନୁଭୂତି ଓ ଅଭିଜ୍ଞତା ହିଁ ଏହି କାବ୍ୟିକ ରଚନାକୁ ସଫଳ କରିଛି । 'ବନ୍ଦୀର ଆତ୍ମକଥା'ରେ ଉଗ୍ର ଜାତୀୟତା ଓ ମାନବିକତାର ସୁନ୍ଦର ସମନ୍ୱୟ ଘଟିଛି । ବ୍ୟକ୍ତିନିଷ୍ଠ ଭାବପ୍ରବଣତା ଓ ଆବେଗ 'ବନ୍ଦୀର ଆତ୍ମକଥା'ର ପ୍ରେରଣା ଓ ଭିତ୍ତିଭୂମି । 'ବନ୍ଦୀର ଆତ୍ମକଥା'ର ଐତିହାସିକ ଉପାଦାନ ହେଉଛି ବିହାରର ହଜାରିବାଗ୍ ଜେଲ୍ । ଏହି ଐତିହାସିକ ପରିସର ମଧ୍ୟରେ ଏହା ଲିଖିତ ହୋଇଥିଲେ

ମଧ୍ୟ ଏହାର ପ୍ରଭାବ ଥିଲା ସୁଦୂରପ୍ରସାରୀ । ଜାତିର ଜନକ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ସମଗ୍ର ଭାରତବର୍ଷରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମର ସ୍ୱର, ଜନଜାଗରଣର କାବ୍ୟିକ ଚିତ୍ର 'ବନ୍ଦୀର ଆତ୍ମକଥା'ରେ ପ୍ରତିଫଳିତ । ଏହି ବହୁଚର୍ଚ୍ଚିତ ପୁସ୍ତକ ବିଭିନ୍ନ ବିଭାଗରେ ବିଭକ୍ତ । ବ୍ୟକ୍ତିଗତ ସମ୍ବୋଧନ, ଉତ୍କଳବାସୀଙ୍କଠାରେ ଆଶୀର୍ବାଦ ଭିକ୍ଷା, ସ୍ୱରାଜ୍ୟ ଶାସନ କ୍ଷେତ୍ରରେ ନିଷ୍କ୍ରିୟତା ପରିହାରପୂର୍ବକ ବଳିଷ୍ଠ ନେତୃତ୍ୱ ପ୍ରଦାନ, ନ୍ୟାୟ ଓ ଅହିଂସାର ପରମ୍ପରାରେ ଗଠିତ ଭାରତୀୟ ପ୍ରାଚୀନ ଜୀବନଧାରା ଓ ଉତ୍କଳର ପ୍ରାଚୀନ ପରିଚୟ, ଉତ୍କଳର ସ୍ୱରାଜ୍ୟ ଆନ୍ଦୋଳନର ଅଗ୍ରଗତି, ଭାରତୀୟ ପୃଷ୍ଠଭୂମି ଆନ୍ତର୍ଜାତିକ ତଥା ସାର୍ବଜନୀନ ସମାଜର ଚିତ୍ର ଏହିପରି ବିଭିନ୍ନ ପର୍ଯ୍ୟାୟରେ ବିଭକ୍ତ । ଏହି ସଂକଳନର କବି ଗୋପବନ୍ଧୁଙ୍କ ବନ୍ଦୀ ଜୀବନର ସ୍ମୃତି–ବିସ୍ମୃତି, ଆଶା–ନିରାଶା, ସ୍ୱପ୍ନ–ସମ୍ଭାବନାର ଚିତ୍ର ବୈଚିତ୍ର୍ୟପୂର୍ଣ୍ଣ । ଏଥିରେ ରାଜନୈତିକ ଚିନ୍ତା ଓ ଚେତନାର ସ୍ୱର ସ୍ପଷ୍ଟ, ଯାହାକି ଏକ କାବ୍ୟିକ ରୂପାୟନ ପାଇଁ ସଫଳ ଓ ସାର୍ଥକ କୃତି । ତାଙ୍କର ସଂକଳନ 'କାରାକବିତା'ରେ ବନ୍ଦୀ ମାନସିକତା ସ୍ପଷ୍ଟ ରୂପାୟିତ ହୋଇଥିଲେ ମଧ୍ୟ ଏଥିରେ କବି ଗୋପବନ୍ଧୁ ଏକ ଉନ୍ନତ ରୁଚି ତଥା ମାନବଧର୍ମୀ ଚେତନାର ପ୍ରଚାର କରିଛନ୍ତି । କବି 'କାରାକବିତା'ରେ ଲେଖନ୍ତି–

'କେହି ରାଜା ଜଣେ ବିଚାରେ କି କ୍ଷଣେ
ପରଜାଏ ମୋର ପୁଅ ସମାନ
ପରଜାଙ୍କ ହିତ ମୋ ଜୀବନ–ବ୍ରତ
ପରଜା ସୁଖେ ମୋ ସୁଖ ସମାନ ।'

କଳ୍ପନାର କ୍ଷିପ୍ରତା, ଅନୁଭୂତି, ଉଷ୍ମତା ଓ ଆବେଗର ନିବିଡ଼ତାରେ ତାଙ୍କର ପ୍ରତିଟି ସାହିତ୍ୟ–କୃତି ପରିପୁଷ୍ଟ। ଗୁଣାତ୍ମକ ବୈଶିଷ୍ଟ୍ୟ ପାଇଁ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ କବି ଗୋପବନ୍ଧୁଙ୍କ କାବ୍ୟ କବିତାରେ କେବଳ ସ୍ୱଦେଶ ପ୍ରେମ ବା ଜାତୀୟତାବୋଧ ନୁହେଁ ବରଂ ରାଜନୈତିକ, ଅର୍ଥନୈତିକ, ସାମାଜିକ ଅଧିକାର ପାଇଁ କାବ୍ୟଦର୍ଶନ ଓ କବି କଳ୍ପନାର ସଫଳ ପ୍ରତିଫଳନ ହୋଇଛି –

'ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ
ସ୍ୱରାଜ୍ୟ–ସାଧନେ ଏହି ତିନିପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ ।'

(ବନ୍ଦୀର ଆତ୍ମକଥା)

କବି ଗୋପବନ୍ଧୁଙ୍କ 'ଅବକାଶ ଚିନ୍ତା', 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ତାଙ୍କର କର୍ମମୟ ଜୀବନର ବୈପ୍ଳବିକ ଚିନ୍ତା ସମଷ୍ଟିର ଏକକ ଅଭିବ୍ୟକ୍ତ । ଯଥାର୍ଥରେ କୁହାଯାଏ, ଦେଶ ହିଁ କବି ଗୋପବନ୍ଧୁଙ୍କ କବିତାର ସ୍ୱପ୍ନ, ଜାତି ହିଁ ତାଙ୍କ କବିତାରୁ ଉଦ୍‌ବୋଧନ, ଭଗବତ୍ ବିଶ୍ୱାସ ହିଁ ତାଙ୍କ କବିତାର ନିର୍ଯ୍ୟାସ । କବି ଗୋପବନ୍ଧୁଙ୍କ କାବ୍ୟ କବିତାକୁ ସମାଲୋଚକମାନେ ସମୁଦାୟ ପାଞ୍ଚ ଭାଗରେ ବିଭକ୍ତ କରିଥାନ୍ତି । ସେହି ବିଭାଗ ଗୁଡ଼ିକ ହେଲା ପ୍ରକୃତି ବର୍ଣ୍ଣନାମୂଳକ, ସ୍ୱଦେଶ ପ୍ରୀତିମୂଳକ, ଚିନ୍ତାମୂଳକ, ନରନାରୀଙ୍କର ପରସ୍ପର ସଂପର୍କ ସୂଚକ ଏବଂ ଜଣାଣ ବା ଭଜନ । 'ଅବକାଶ ଚିନ୍ତା' ଓ 'କାରାକବିତା' ଅନ୍ତର୍ଗତ କବିତାଗୁଡ଼ିକ ପ୍ରକୃତି ବର୍ଣ୍ଣନାର ସୂଚନା ଦେଉଥିବାବେଳେ 'ବନ୍ଦୀର ଆତ୍ମକଥା'ରେ ସ୍ୱଦେଶ ପ୍ରୀତି ନରନାରୀମାନଙ୍କର ପରସ୍ପର ସମ୍ପର୍କ 'ପିତୃପକ୍ଷ ତର୍ପଣରେ', 'ବନ୍ଦୀର ଆତ୍ମକଥା' ଏବଂ ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁରେ ଚିନ୍ତାମୂଳକ ଭାବଧାରା ସମେତ 'ଅବକାଶ ଚିନ୍ତା' ଅନ୍ତର୍ଗତ ବ୍ୟକ୍ତିଗତ ଅନୁଭୂତି ଓ ଆବେଦନ ସର୍ବସ୍ୱ କବିତାଗୁଡ଼ିକ ଭକ୍ତିମୂଳକ । କବି ଗୋପବନ୍ଧୁଙ୍କ 'ପ୍ରାର୍ଥନା', 'ମୋ ନାନୀ', 'କାଠଯୋଡ଼ି ତୀରେ ସାୟଂକାଳ', 'କବିତା ଦେବୀ', 'କୋକିଳ', 'ଗ୍ରୀଷ୍ମେ ଥୁଣ୍ଟା ଗଛ' ପ୍ରଭୃତି ବ୍ୟକ୍ତିଗତ ଅନୁଭୂତିସମ୍ପନ୍ନ ଏବଂ ସାମାଜିକ ଚେତନା ସର୍ବସ୍ୱ । ଇତିହାସ ଓ ପରମ୍ପରା ପ୍ରାଣତା ମଧ୍ୟ ତାଙ୍କ କବିତାରେ ସୁଲଭ । ମାନବିକତା ସହ ସମବେଦନା ଓ

ମହାନୁଭୂତିର ଅଭିବ୍ୟକ୍ତି ତାଙ୍କର କବିତା । ବ୍ୟକ୍ତି ଓ ସମାଜ ପାଇଁ ତାଙ୍କର ଅତୁଟ ସମବେଦନା ତାଙ୍କୁ ଅନନ୍ୟ ସ୍ରଷ୍ଟା ଭାବେ ପରିଚିତ କରାଇଥାଏ । 'କାରାକବିତା' ଓ 'ବନ୍ଦୀର ଆତ୍ମକଥା'ରେ ବିଶ୍ୱପ୍ରାଣତା ଓ ବିଶ୍ୱପରାୟଣତା ସହିତ ମାନବିକତାର ଅପୂର୍ବ ମିଳନ ହୋଇଛି –

'ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ,
ଦିଏ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।'

କବି ଗୋପବନ୍ଧୁ ବ୍ୟକ୍ତି ପ୍ରାଧାନ୍ୟମୂଳକ କବିତାଗୁଡ଼ିକରେ ବ୍ୟକ୍ତି ଜୀବନ ଅନୁଭୂତିର ଉଷ୍ମତା ଓ ପ୍ରାଚୁର୍ଯ୍ୟ ପ୍ରତିଫଳିତ ହେବା ସହ ଗୀତିକବିତାର ବୈଶିଷ୍ଟ୍ୟ, ବ୍ୟକ୍ତିନିଷ୍ଠତା, ଭାବପ୍ରବଣତା, ମନ୍ମୟତା, ଅଭିଜ୍ଞତାର ନିବିଡ଼ତା, ସଂହତିର ସୂଚନା ଦେଇଛନ୍ତି । ସମାଜ ସଚେତନ ସ୍ରଷ୍ଟା ଗୋପବନ୍ଧୁ ସାହିତ୍ୟରେ ସମାଜକୁ ପ୍ରତିଫଳନ କରିଛନ୍ତି । ସତ୍ୟବାଦୀ ଯୁଗର ଦୁଇଟି ପ୍ରମୁଖ ଆଭିମୁଖ୍ୟ ଜନସେବା ଓ ସାହିତ୍ୟ ସାଧନାକୁ ସେ ସଫଳତାର ସହ ରୂପାୟନ କରି ବିଶ୍ୱପ୍ରୀତି, ଦେଶାତ୍ମବୋଧ, ଆଧ୍ୟାତ୍ମିକତାରେ ତାଙ୍କର ସମଗ୍ର ସାହିତ୍ୟକୁ ସୌନ୍ଦର୍ଯ୍ୟମଣ୍ଡିତ କରିଛନ୍ତି । କବି ଗୋପବନ୍ଧୁ କାବ୍ୟ କବିତା ପରିକ୍ରମା କଲେ ଗୋଟିଏ କଥା ସ୍ପଷ୍ଟ ହୁଏ ଯେ, ସଚେତନ ଓ ଜାଗରଣ ପାଇଁ ତାଙ୍କ ସାହିତ୍ୟ ମନ୍ତ୍ର ସଦୃଶ କାର୍ଯ୍ୟ କରିଥିଲା । ଉତ୍କଳମଣି ଗୋପବନ୍ଧୁଙ୍କ କବିତାର ଭାଷା ବିବିଧ ଓ ବୈଚିତ୍ର୍ୟପୂର୍ଣ୍ଣ । କଥିତ ଭାଷା ସହ ଲିଖିତ ଭାଷାର ସୁନ୍ଦର ସମନ୍ୱୟ ତାଙ୍କ କବିତାବଳୀ । ଭାଷା ଓ ଶୈଳୀ ଉଭୟ ଦୃଷ୍ଟିରୁ ତେଣୁ କୁହାଯାଇପାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ କବିତା ସର୍ବଦା ସବୁଜ ଓ ସୁନ୍ଦର ।

ବରିଷ୍ଠ ଗବେଷକ
ଶାସ୍ତ୍ରୀୟ ଓଡ଼ିଆ ଉତ୍କର୍ଷ ଅଧ୍ୟୟନ କେନ୍ଦ୍ର
ଶିକ୍ଷା ମନ୍ତ୍ରାଳୟ, ଭାରତ ସରକାର
ସର୍ଦ୍ଦାର ପଟେଲ ହଲ୍, ଭୁବନେଶ୍ୱର–୭୫୧୦୦୯



# ଅମ୍ଳାନ ସାରସ୍ୱତ ପ୍ରତିଭା : ପଲ୍ଲୀକବି ନନ୍ଦକିଶୋର

ରାମଚନ୍ଦ୍ର ଦାଶ

ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ତତ୍‌କାଳୀନ ଲବ୍ଧପ୍ରତିଷ୍ଠ ଯଶସ୍ୱୀ ଲେଖକ ଓ କବିଗଣ ଲେଖନୀ ଚାଳନା କରି ନୈସର୍ଗିକ ସାହିତ୍ୟ କୃତି ସୃଷ୍ଟି କରିଯାଇଛନ୍ତି । ସେମାନଙ୍କ ମଧ୍ୟରୁ ପଲ୍ଲୀକବି ନନ୍ଦକିଶୋରଙ୍କ ସ୍ଥାନ ଚିର ସ୍ମରଣୀୟ । ଓଡ଼ିଆ ଭାଷାର ସ୍ୱତନ୍ତ୍ର ସୁରକ୍ଷା ଅଭିଯାନରେ ତତ୍କାଳୀନ ଲବ୍ଧପ୍ରତିଷ୍ଠ ଯଶସ୍ୱୀ ସାହିତ୍ୟିକ ବ୍ୟାସକବି ଫକୀରମୋହନ, ସ୍ୱଭାବ କବି ଗଙ୍ଗାଧର, କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ ଆଦର୍ଶରେ ଅନୁପ୍ରେରିତ ହୋଇ ପଲ୍ଲୀକବି ନନ୍ଦକିଶୋର ଯେଉଁ ସ୍ୱକୀୟ ବୈଚିତ୍ର୍ୟମୟ ପଲ୍ଲୀବିଭବତା ପୂର୍ଣ୍ଣ ସାହିତ୍ୟିକ ସୃଷ୍ଟି ସମ୍ଭାରର ଅବତାରଣା କରିଯାଇଛନ୍ତି, ତାହା ଅନନ୍ୟ, ଅନସ୍ୱୀକାର୍ଯ୍ୟ ଓ ଅବିସ୍ମରଣୀୟ ।



ପଲ୍ଲୀ ପ୍ରାଣର ନିଖୁଣ ଚିତ୍ର ସମୂହକୁ ଲେଖନୀ ମୁନରେ ଜୀବନ୍ତ ଓ ମୂର୍ତ୍ତିମନ୍ତ କରିବାରେ ସେ ଥିଲେ ଏକକ ସାଧକ ଓ ନିର୍ବିବାଦୀୟ ବ୍ୟକ୍ତିତ୍ୱ । ପଲ୍ଲୀ ପ୍ରକୃତିର ବିଭବ ଦୃଶ୍ୟରାଜିରେ ବିମୋହିତ ଓ ଆକର୍ଷିତ ହୋଇ ସ୍ୱଅନ୍ତରର ସ୍ପନ୍ଦନ ଭିତରୁ ଉନ୍ନତ କାବ୍ୟକଳାର ଚିତ୍ତାକର୍ଷକ ସାହିତ୍ୟିକ କୃତିତ୍ୱ ତାଙ୍କ ରସବୋଧକ କବିତା, କାବ୍ୟ, ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ଆଦିର ପରିପ୍ରକାଶରେ ସେ ସତତ ବ୍ରତୀ ଥିଲେ ।

ସ୍ୱକୀୟ କବିତା ମାଧ୍ୟମରେ ପଲ୍ଲୀପ୍ରାଣ ଓ ପଲ୍ଲୀ ପ୍ରକୃତିର ଅପରୂପ ଦୃଶ୍ୟପଟ ସମୂହ ଉପସ୍ଥାପନ କରିବାରେ ସେ ଏକକ ପ୍ରତିଭାର ଅଧିକାରୀ ଓ ନିରବଚ୍ଛିନ୍ନ ସାହିତ୍ୟ ସାଧକ । ନିଜର ସ୍ୱରଚିତ ସାହିତ୍ୟ କୃତି ଓ କବିତା ମାଧ୍ୟମରେ ସୌନ୍ଦର୍ଯ୍ୟର ସ୍ପର୍ଶ, ପ୍ରକୃତିର ସ୍ୱାଭାବିକ ଆମନ୍ତ୍ରଣ ଓ ସ୍ୱାଭାବିକ ଶିଳ୍ପ କର୍ମ ପ୍ରଭୃତି ତାଙ୍କ ଶାନ୍ତ, ସୁକ୍ଷ୍ମ, ପରିପୂର୍ଣ୍ଣ କବିମାନସର ପରିଚୟ । ଜନମାନସର ଗଭୀରତମ ଚେତନା ସ୍ତର ଭେଦ କରି କାବ୍ୟିକ କଳା ଚେତନାର ସୁଦୃଢ଼ ଅଧିକାରୀ ପଲ୍ଲୀକବି ନନ୍ଦକିଶୋର । ସେଥିପାଇଁ ସମକାଳୀନ ସାହିତ୍ୟିକ ଓ କବିମାନଙ୍କ ମଧ୍ୟରେ ପଲ୍ଲୀକବିଙ୍କ ସ୍ଥାନ ଏକକ ଏବଂ ଅଦିତୀୟ । କାବ୍ୟ ଏବଂ କବିତା ଓ ବିବିଧ ରଚନାବଳୀ ମାଧ୍ୟମରେ ପ୍ରକୃତିସ୍ଥ ସୌନ୍ଦର୍ଯ୍ୟର ସାବଲୀଳତାରେ ଆକର୍ଷିତ ଓ ସ୍ପର୍ଶ କରିବାରେ ସେ ଏକ ଉଚ୍ଚକୋଟୀର ସାଧକ ଭାବରେ ପରିଦୃଷ୍ଟ ହୋଇଛନ୍ତି ।

ସାହିତ୍ୟାୟନରେ ଯେଉଁ ଯଶସ୍ୱୀ କବି ତଥା ଲେଖକ ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଭାଷାର ସୁରକ୍ଷା ସହିତ ଓଡ଼ିଆ ଭାଷାକୁ

ସ୍ୱତନ୍ତ୍ରତାର ସ୍ୱୀକୃତି ଦେବାରେ ଓ ଓଡ଼ିଆ ସାହିତ୍ୟର ସଙ୍କଟମୟ ପରିସ୍ଥିତିରେ ନିଜସ୍ୱ ସାହିତ୍ୟିକ କୃତିତ୍ୱ ମାଧ୍ୟମରେ ତଥା ସାହିତ୍ୟର ଜାଗ୍ରତ ପ୍ରହରୀ ଭାବରେ ନିଜର ପରାକାଷ୍ଠାର ପରିଚୟ ପ୍ରଦାନ କରିଥିଲେ ସେମାନଙ୍କ ମଧ୍ୟରେ କବି ନନ୍ଦକିଶୋରଙ୍କ ସ୍ଥାନ ଅନନ୍ୟ ଓ ଉଲ୍ଲେଖନୀୟ । ବାସ୍ତବରେ କବିଙ୍କ ଲେଖନୀ ପଲ୍ଲୀର କୋଣ/ ଅନୁକୋଣରେ ପରିବ୍ୟାପ୍ତ ଓ ବିଶଦ ଭାବରେ ଯୁଗଧର୍ମୀ, କାଳଜୟୀ ଓ ଯୁଗାନ୍ତକାରୀ କାବ୍ୟିକ କଳାକୃତି ତାଙ୍କୁ ଓଡ଼ିଆ ସାହିତ୍ୟ ଓ ଭାଷା ଜାଗରଣର ଅନ୍ୟତମ ବିନ୍ଧାଣି ଓ ସ୍ୱତନ୍ତ୍ରତାର ଅପ୍ରତିଦ୍ୱନ୍ଦ୍ୱୀ ପରିଚୟ ପ୍ରଦାନ କରିଛି ।

ତଥାକଥିତ ଉତ୍କଳୀୟ ସଂସ୍କୃତି, ପରମ୍ପରା ଓ ଲୋକକଥା ଉପରେ ତାଙ୍କ ନଜର, ସାହିତ୍ୟିକ ସାଧନା ଓ ସାହିତ୍ୟ କ୍ଷେତ୍ରରେ ନବଜାଗରଣ ଓ ନୂତନ ଦିଗନ୍ତ ସୃଷ୍ଟି କରିଛି । ସରସ, ସୁନ୍ଦର, ସାବଲୀଳ ଓ ବୋଧଗମ୍ୟତା ହେତୁ ତାଙ୍କ କବିତା, କାବ୍ୟ, ଗଳ୍ପ ଓ ପ୍ରବନ୍ଧ ଆଦି ସବୁ ସ୍ତରର ପାଠକଙ୍କ ମଧ୍ୟରେ ହୃଦୟସ୍ପର୍ଶୀ, ଆକର୍ଷଣର କେନ୍ଦ୍ରବିନ୍ଦୁ ଓ ସ୍ପର୍ଶକାତର ।

କାବ୍ୟିକ ସୃଜନଶିଳ୍ପ କଳାରେ ସେ ଯେତିକି ରୋମାଣ୍ଟିକ ହୋଇଛନ୍ତି ସେତିକି କ୍ଲାସିକ୍ ମଧ୍ୟ । ତାଙ୍କର କାଳଜୟୀ ସାହିତ୍ୟ କୃତିଗୁଡ଼ିକ ବାସ୍ତବବାଦୀ ମାନବ ଚିନ୍ତାଧାରା ଉପରେ ପର୍ଯ୍ୟବସିତ ଥିବାବେଳେ ବସ୍ତୁତଃ ଆଧ୍ୟାତ୍ମିକ ଦିଗଟି ବିଶେଷ ଭାବରେ ପରିଲକ୍ଷିତ ହୋଇଛି । ସର୍ବୋପରି ତାଙ୍କ ସାହିତ୍ୟିକ କୃତି ମଧ୍ୟରେ ରହିଛି 'ପ୍ରଭାତ ସଙ୍ଗୀତ', 'ସନ୍ଧ୍ୟା ସଙ୍ଗୀତ' ଓ 'ସୀତା ବନବାସ'। ପାରମ୍ପରିକ ଜୀବନବୋଧ ଓ ଆଧ୍ୟାତ୍ମିକ ଦିଗ ସହିତ ସଂଶ୍ଲିଷ୍ଟ କାବ୍ୟିକ ପ୍ରତିଭାରେ ସହଜ, ସରଳ ଓ ବାସ୍ତବ ରୂପ ରଚନାରେ ନୈପୁଣ୍ୟତାର ଉତ୍କର୍ଷତା ଓ ଅନନ୍ୟତା କବିଙ୍କର 'ପଲ୍ଲୀଚିତ୍ର', 'ନିର୍ଝରିଣୀ' ଓ 'କାକବାରଣ' କାବ୍ୟକଳାର ଶ୍ରେଷ୍ଠ ନିଦର୍ଶନ । 'ବସନ୍ତ କୋକିଳ' ଓ 'ତରଙ୍ଗିଣୀ' ତାଙ୍କର ଦୁଇଟି ପ୍ରେମମୂଳକ କବିତାବଳୀ, ଯାହା ବାତ୍ସଲ୍ୟ ପ୍ରେମ ଉପରେ ଆଧାରିତ ।

ତାଙ୍କ ରଚିତ ବହୁ କାବ୍ୟ, କବିତା ସମୂହ ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ଆଦିରେ ଅପୂର୍ବ ଶବ୍ଦ ବିନ୍ୟାସ ସହିତ ସାଧାରଣ ଜୀବନରେ ପ୍ରଚଳିତ, ପ୍ରତିଷ୍ଠିତ ଓ ସହଜ ସୁନ୍ଦର ଶବ୍ଦପୁଞ୍ଜ ତାଙ୍କ କୃତିତ୍ୱର ଅନନ୍ୟ ଆକର୍ଷଣ ମଧ୍ୟ । ତତ୍କାଳୀନ ସାମାଜିକ ସ୍ଥିତିକୁ ଅବଲୋକନ କରି କବି ତାଙ୍କ ସାହିତ୍ୟିକ କୃତିତ୍ୱର ନିଦର୍ଶନ ସ୍ୱରୂପ କ୍ଷୁଦ୍ରଗଳ୍ପ 'ଲକ୍ଷ୍ମୀ' ଓ 'କନକଲତା' ଉପନ୍ୟାସରେ ଯୌତୁକ ପ୍ରଥା ଓ ବିଧବା ବିବାହ ଉପରେ ବିଶେଷ ଆଲୋକପାତ କରିଛନ୍ତି – ଯାହା ସାମ୍ପ୍ରତିକ ଆଧୁନିକ ସମାଜ ପାଇଁ ଏକ ସଂସ୍କାରଧର୍ମୀ ଓ ଯୁଗାନ୍ତକାରୀ କୃତିତ୍ୱର ଆଲେଖ୍ୟ ବହନ କରିଛି । କବିଙ୍କର ପ୍ରତ୍ୟେକ କବିତା, ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ସମୂହରେ ଜନମାନସର ହୃଦୟକୁ ଆଲୋଡ଼ିତ କରିବା ସହିତ ଜନଜାଗରଣର ବାର୍ତ୍ତା ବହନ କରିବାରେ ଏକକ ଭୂମିକାରେ ପଦାର୍ପଣ ହୋଇଛି ।

ବିଭବଶାଳୀ, ଅଭାବନୀୟ ପଲ୍ଲୀ ପ୍ରକୃତିର ପାରିପାର୍ଶ୍ୱିକ ଶୋଭାରାଜି ସହିତ ପ୍ରାକୃତିକ ପ୍ରାଚୁର୍ଯ୍ୟଭରା ଦୃଶ୍ୟରାଜିରେ କାବ୍ୟିକ ହୃଦୟର ବ୍ୟାକୁଳତା ତାଙ୍କୁ ଆପାତତଃ ପ୍ରଶସ୍ତ ବର୍ଣ୍ଣନା,ଭାଷାର ମାଧୁର୍ଯ୍ୟ ତଥା ଉପସ୍ଥାପନର ନୈପୁଣ୍ୟ ତାଙ୍କୁ ପଲ୍ଲୀକବି ପଦରେ ବିମଣ୍ଡିତ କରିବାରେ ସାର୍ଥକତା ଦେଇଛି ।

କବିଙ୍କର ସମସ୍ତ କୃତିକୁ ବାଦ୍ ଦେଲେ କବିଙ୍କର ପ୍ରକୃତି ପ୍ରତିଭାର ଉନ୍ମେଷ ଓ ପରିପ୍ରକାଶ ହୋଇଛି । ତାଙ୍କ କ୍ଷୁଦ୍ର କବିତାଗୁଡ଼ିକରେ ଭାବୋଦ୍ଦୀପକ ମଧ୍ୟରେ ସରଳ, ହୃଦୟସ୍ପର୍ଶୀ ଓ ମନୋମୁଗ୍ଧକର ପ୍ରକାଶ ଢଙ୍ଗରେ ଲୋକଗୀତଗୁଡ଼ିକ ଜନମାନସର ହୃଦୟକୁ ଅନାୟାସରେ ଆଲୋଡ଼ିତ କରିଛି ।

ପରମ୍ପରାଗତ ଲୋକଗୀତର ସର୍ବପ୍ରଥମ ପ୍ରତିପାଦନରେ ସେ ଥିଲେ ସିଦ୍ଧହସ୍ତ , କବିଙ୍କ ସ୍ୱରଚିତ – 'ଡାମରା କାଉରେ ଡାମରା କାଉ, ଉଚ୍ଚ ପରବତେ ବୋବାଉଥାଉ...'। 'ମେଘ ବରଷିଲା ଟୁପୁର ଟୁପୁର, କେଶୋର ମାଇଲା ଗଜା...' କବିତାରେ ପଲ୍ଲୀଚିତ୍ରର ଅପୂର୍ବ ଶୋଭାରାଜିର ସମନ୍ୱୟ ଅଧିକନ୍ତୁ ଦେଖିବାକୁ ମିଳେ । ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ସମୟୋଚିତ ପ୍ରତିଟି ଘଟଣାକୁ ଏକ ମାର୍ମିକ ରୂପରେ ବର୍ଣ୍ଣନା କରିବାରେ କବି ଜଣେ କୁଶଳୀ କଳାକାର ।

ଏକ ଶାନ୍ତ, ସ୍ନିଗ୍ଧ , ରମଣୀୟ ପଲ୍ଲୀ ପରିବେଷ୍ଟନୀ ମଧ୍ୟରେ ପୁଣ୍ୟତୋୟା ବିରୂପା କୂଳର ଅନତି ଦୂରରେ ଅବସ୍ଥିତ ସଂସ୍କୃତିସମ୍ପନ୍ନ କୁସୁପୁର ଗ୍ରାମରେ ପଲ୍ଲୀକବି ନନ୍ଦକିଶୋରଙ୍କ ଜନ୍ମ ହୁଏ ୧୮୭୫ ମସିହା ଡିସେମ୍ବର ମାସ ୨୨ ତାରିଖ କୃଷ୍ଣ ପକ୍ଷ ଏକାଦଶୀ ତିଥିରେ ଏକ ସମ୍ଭ୍ରାନ୍ତ ଜମିଦାର ବଂଶରେ । ପିତାଙ୍କ ନାମ ଭଜନାନନ୍ଦ ଜେନା ଓ ମାତାଙ୍କ ନାମ ହିରଣ୍ମୟୀ ଦେବୀ । ପିତା ମାତାଙ୍କ ତୃତୀୟ ଗର୍ଭକୁ ଜନ୍ମ ନେଇଥିଲେ ରସାନନ୍ଦ (ତାଙ୍କ ପିଲାଦିନର ନାମ) । ପରବର୍ତ୍ତୀ ସମୟରେ ତାଙ୍କର ପିଉସୀ ଜାନକୀ ଦେବୀଙ୍କର ପୋଷ୍ୟପୁତ୍ର ହେବା ପରେ ଜେନା ଉପାଧିରୁ ବଳ ଉପାଧି ପ୍ରାପ୍ତ ହୋଇଥିଲେ । ନିଜ ଗାଁ କୁସୁପୁରରେ ଶୈଶବ ଶିକ୍ଷା ସମାପ୍ତି ପରେ ସେ କଟକର ଭକ୍ତମଧୁ ବିଦ୍ୟାପୀଠରୁ ମାଇନର୍ ଓ ପରେ କେନ୍ଦ୍ରାପଡ଼ାରୁ କୃତିତ୍ୱର ସହ ହାଇସ୍କୁଲ ( ମାଧମିକ ଶିକ୍ଷା ) ଶିକ୍ଷା ଶେଷ ପରେ ସେ କଟକ ରେଭେନ୍ସା ମହାବିଦ୍ୟାଳୟରୁ ବି.ଏ.ପାସ୍ କଲେ । ପରେ ବିଦ୍ୟାଳୟ ସମୂହର ଶିକ୍ଷା ପରିଦର୍ଶକ ପଦବୀରେ ଯୋଗ ଦେଇ ୧୯୨୪ ମସିହାରେ ତତ୍କାଳୀନ ବ୍ରିଟିଶ ସରକାର ତାଙ୍କ କର୍ମ ଦକ୍ଷତା ଓ କୁଶଳତାରେ ଆକୃଷ୍ଟ ହୋଇ ତାଙ୍କୁ 'ରାୟ ବାହାଦୁର' ଉପାଧିରେ ଭୂଷିତ କରିଥିଲେ ।

ଏହି ଅମ୍ଳାନ ପ୍ରତିଭା ପଲ୍ଲୀକବି ନନ୍ଦକିଶୋରଙ୍କର ତିରୋଧାନ ଘଟିଥିଲା ୧୯୨୮ ମସିହା ଜୁଲାଇ ପହିଲା ଦିନ ମାତ୍ର ୫୨ ବର୍ଷ ବୟସରେ । ଜଣେ ଉଚ୍ଚକୋଟୀର ସାଧୀନଚେତା କବି ପ୍ରତିଭାର ନିଛକ ପୂଜାରୀ ତଥା ଅମ୍ଳାନ ସାହିତ୍ୟିକ ନନ୍ଦକିଶୋରଙ୍କୁ ଚିରସ୍ମରଣୀୟ ଓ କାଳଜୟୀ କରିବା ସହ ଆଗାମୀ ପିଢ଼ି ଓ ସାହିତ୍ୟାନୁରାଗୀଙ୍କ ପାଇଁ ନବଜାଗରଣର ବାର୍ତ୍ତାବହ ଭାବରେ ତାଙ୍କୁ ଚିର ଅମର ରଖିବ ।

ପାରିପାର୍ଶ୍ୱିକ ମାର୍ମିକ ଘଟଣାରାଜିକୁ କବିତା ଶୈଳୀ ଗତ ଉଚ୍ଚ କାବ୍ୟିକ ଭାବଭଙ୍ଗୀରେ ପରିପ୍ରକାଶ କରିବାରେ ଅଲୌକିକ କବି ପ୍ରତିଭାର ଜ୍ୱଳନ୍ତ ନିଦର୍ଶନ ପଲ୍ଲୀକବି ନନ୍ଦକିଶୋର । ସେଥିପାଇଁ ସେ ତାଙ୍କ ସ୍ୱଲିଖିତ କବିତାର ଛତ୍ରେ ଛତ୍ରେ ପଲ୍ଲୀପ୍ରାଣଭରା କଣ୍ଠରେ ଗାଇଛନ୍ତି...

ବାଡ଼ି ଚାରିପାଖେ କଣ୍ଟେଇ କୋଳି ଗୋ<br>
କୃଷ୍ଣ ତୋଳି ଯିବ କୋଳି<br>
କୋଳି ଖାଉ ଖାଉ କଣ୍ଟେଇ ଲଟାରେ<br>
କୃଷ୍ଣ ଖେଳୁଥିବ ଦୋଳି ।

ପଲ୍ଲୀ ଜୀବନର ବାସ୍ତବତାକୁ ଉପଲବ୍ଧି କରି କବିଙ୍କର ସାହିତ୍ୟିକ କୃତିସମୂହ ତାଙ୍କୁ ସାହିତ୍ୟ ସାଧନାର ଶୀର୍ଷ ସ୍ଥାନରେ ପହଞ୍ଚିବାରେ ବିଶେଷ ସହାୟକ ହୋଇଛି । ଏହା ନିଃସନ୍ଦେହ ଯେ କବିଙ୍କର ସାହିତ୍ୟ କୃତି ସମୂହରେ ପଲ୍ଲୀର ବାସ୍ତବ ରୂପ ତାଙ୍କ କବିତା, ଗଳ୍ପ, କାବ୍ୟ ଓ ଉପନ୍ୟାସ ଇତ୍ୟାଦିରେ ପ୍ରକଟିତ ହୋଇଛି । ବାସ୍ତବ ପକ୍ଷେ ସେ ଜଣେ ସଂସ୍କାରଧର୍ମୀ, ସାମାଜିକ ଚେତନାରେ ଉତ୍ସର୍ଗୀକୃତ ଭାବେ ଲେଖନୀ ଚାଳନା କରିଛନ୍ତି । ସମାଜରୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର କରିବାରେ କବିଙ୍କର ସାହିତ୍ୟ କୃତି ତାଙ୍କୁ ଜନମାନସରେ ସବୁଦିନ ପାଇଁ କାଳଜୟୀ ଓ ଅବିସ୍ମରଣୀୟ କରିରଖିଛି । ଜନମାନସର ହୃଦୟରେ ନୈତିକତା ଓ ଉଚ୍ଚ ମାନବିକତା ପ୍ରକଟ କରିବାରେ ପଲ୍ଲୀ ପ୍ରାଣର ଭାବୁକତା କବିଙ୍କଠାରେ ଆଦରର ବିଷୟ ଥିଲା ।

ଆମର ସାମାଜିକ ଓ ଅର୍ଥନୈତିକ ସର୍ବୋପରି ଭାଷା ସାହିତ୍ୟର ପୃଷ୍ଠଭୂମି ଉପରେ ଏକ ଜାତିର ଉନ୍ମେଷ ଓ ବିକାଶର ଧାରା ସଂଶ୍ଳିଷ୍ଟ ଓ ଅଙ୍ଗୀକାରବଦ୍ଧ, ଯାହା କବିଙ୍କ ସାହିତ୍ୟାନୁଶୀଳନରୁ ସ୍ପଷ୍ଟ ଅନୁମେୟ । କବିଙ୍କର ପ୍ରତ୍ୟେକ ସାହିତ୍ୟ କୃତିତ୍ୱ ଅନନ୍ୟ ଓ ଅଭିନବ ସୃଷ୍ଟିରେ ମାନବ ଜୀବନର ଶୃଙ୍ଖଳା ସହ ଉଚ୍ଚ ଆଦର୍ଶ, ସାମାଜିକ ଧର୍ମୀ ଓ ବାସ୍ତବବାଦୀ ସାମାଜିକ ଜୀବନର ଦାଗଗୁଡିକ ବିଶେଷ ଭାବରେ ପ୍ରତିଫଳିତ ହୋଇଛି । ସେଥିପାଇଁ ସେ ଯୁଗଧର୍ମୀ ସମାଜ ସଂସ୍କାରକ ଓ ପ୍ରକୃତବାଦୀ କବି ।

ଗ୍ରାମ – ଅକରପଡ଼ା, ପୋଷ୍ଟ – ନଳୀପୁର<br>
ଭାୟା – ବାଲିଚନ୍ଦ୍ରପୁର, ଥାନା – ମାହାଙ୍ଗା<br>
ଜିଲ୍ଲା – କଟକ-୭୫୪୨୦୫



# ଆଦିବାସୀଙ୍କ ଦେବଦେବୀ

ଡକ୍ଟର ପ୍ରମୋଦିନୀ ହୋତା

ସବୁଜିମାଭରା କୋରାପୁଟ, ନୃତ୍ୟରତା ଝରଣା ଯେଉଁଠି ପବନ ବୀଣା ବଜାଏ, ସାଇଲୋଡ଼ି ଗୀତ, ଢ଼େମସା ନୃତ୍ୟ ସମସ୍ତଙ୍କର ମନମୋହି ନିଏ । ସୃଷ୍ଟିର ଆଦିବାସୀ ଆଦିମାନବ ଅରଣ୍ୟ ଓ ପ୍ରକୃତି ସହ ଏକ ପ୍ରାଣ । ପ୍ରକୃତି କୋଳରେ ଜନ୍ମିତ ଏବଂ ପ୍ରତିପାଳିତ ଏହି ଆଦିମ ଜନଜାତିମାନଙ୍କ ପାଇଁ ପ୍ରକୃତି ହିଁ ସବୁକିଛି । ସେମାନେ ଲୋକଦେବତା ବା ଦେବୀଙ୍କୁ ପୂର୍ଚାର୍ଚ୍ଚନା କରନ୍ତି । କାରଣ ପ୍ରାଚୀନ ସଂସ୍କୃତି ମାତୃକୈନ୍ଦ୍ରିକ । ଏହି ଜିଲ୍ଲାରେ ଆଦିବାସୀ ଗୋଷ୍ଠୀ ଯଥା– ପରଜା, ଗାଦବା, କନ୍ଧ, କୋଟିଆ, ଭୂମିଆ, ଧୁରୁଆ, ହଲକା, ଭତରା, ଅମନାତ୍ୟ, କୋୟା, ମାଡିଆ, ବଣ୍ଡା, ଡ଼ିଡ଼ାୟୀ, ଗଣ୍ଡିଆ, ଗଣ୍ଡ, ଭୂଞ୍ଜିୟା, ବନଜାରା, ଜାତାପୁ, ଦୋରା, ସଉରା, ଦାତାପୁ ଭଳି ୬୪ ପ୍ରକାର ଆଦିବାସୀ ବସ ବାସ କରିଥାନ୍ତି । ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବତା ବା ଲୋକଦେବୀ ପୂଜା ପାଆନ୍ତି । ମାଟିକୁ ସନ୍ତୁଷ୍ଟ କରିପାରିଲେ ଭଲ ଫସଲ ହୁଏ ବୋଲି ଆଦିବାସୀଙ୍କ ଦୃଢ଼ ଧାରଣା ରହିଛି । ତେଣୁ ସେମାନେ ରକ୍ତକୁ ଏକ ଶକ୍ତିରୂପରେ ବିବେଚନା କରିଥାନ୍ତି । ତେଣୁ ସେମାନଙ୍କ ଲୋକ ସଂସ୍କୃତିରେ ରହିଛି ଧରଣୀକୁ ରକ୍ତ ଦେଇ ବା ଧରନୀକୁ ରକ୍ତଦେଇ ସନ୍ତୁଷ୍ଟ କରିପାରିଲେ ଭଲ ଫସଲ ହୁଏ ।

ସମସ୍ତ ହୁଣ୍ଡିଘରେ ଲୋକଦେବତା ରହିଥାନ୍ତି । ଦେବୀମାନଙ୍କୁ ଦେବତା କୁହାଯାଏ । କୋରାପୁଟର ୪୨ଟି ବ୍ଲକ୍‌ରେ ଅନେକ ଦେବଦେବୀ ବା ଲୋକଦେବୀ ବାସ କରନ୍ତି । ଯଥା – ଦର୍ମୁ, ର୍ଦନୁ, ମାଟି ମା (ଦାଣ୍ଡି), ଭଣ୍ଡାର ଘରଣୀ, ପେଣ୍ଡ୍ରାଣୀ, ପାଟଖଣ୍ଡା, ଦନ୍ତେଶ୍ୱରୀ, ଚିପେଶ୍ୱରୀ, ମହୋବା ଇଙ୍ଗଲାଦିନ, କିତୁଙ୍ଗ, ବୀରାଳି, ବଟଗଡ଼ିନ, ଭୈରବ, ବିଭିଡ଼ି, ସୁନାଦେଇ, ଗପାଦେଇ, ତ୍ରାଜର ଦେଇ, ବାରଲାଲ, ଭୀମା, ଜଳକାମିନୀ, ପଣ୍ଡରୀ ମାଓଲି, କାଳିସୁନ୍ଦରୀ, ଭଙ୍ଗାରାମ, ବଇରାମ ଦେବତା, ବୁଢ଼ାଦେଓ, ଲିଙ୍ଗୋପେନ୍, ସକାଇତୁନୀ, କୁଳ ଡ଼ାଙ୍କୁଣୀ, ସତ୍ ବାରୁଣୀ, ଟାଙ୍କରଦେବତା, ତାଲୁପୁଲୁମ୍ମା, ମୁତ୍ୟାଲାମ୍ମା, ତେରୀପେନୁ, ଭାତବରସି, ଚମରାଇ, ଧରମୁ ଦେବତା ଇତ୍ୟାଦି । ଅନେକ ଲୋକଦେବତାଙ୍କ ନାମ ସହିତ ଆମ୍ମା (ମାତା) ଶବ୍ଦ ରହିଛି । କୋରାପୁଟରେ ଦ୍ରାବିଡ଼ ସଂସ୍କୃତିର ପ୍ରଭାବ ରହିଛି । ଲୋକଙ୍କ ଅଖଣ୍ଡ ବିଶ୍ୱାସ ଯୋଗୁଁ କାଠ ଓ ପଥର ଦେବତାର ଆସନରେ ଏଠାରେ ଅଧିଷ୍ଠିତ ହୋଇଥାନ୍ତି । ବସ୍ତୁତଃ ଲୋକ ପୂଜିତ ଅଲୌକିକ ଶକ୍ତିର ଅଧିକାରୀ ଅଦୃଶ୍ୟ ଜୀବନ ହେଉଛି ଲୋକ ଦେବତା । ସମୟର ବିବର୍ତ୍ତନବାଦ କ୍ରମେ ମଣିଷ ମନରେ ସୃଷ୍ଟି ହେଲା ଏକ ବଳିଷ୍ଠ ବିଶ୍ୱାସ, ସେହି ବିଶ୍ୱାସ ହିଁ ଗଢ଼ିଲା ଏକ ଦେବତାର କୁଣ୍ଡଳୀ ।

ଆଦିବାସୀ ମାତୃଶକ୍ତିକୁ ଗୁରୁତ୍ୱ ଦେଇଥାନ୍ତି । ପ୍ରତ୍ୟେକ ଆଦିବାସୀ ଗ୍ରାମରେ ଗୁଡ଼ି (ମନ୍ଦିର) ଥାଏ । ସେଠାରେ ଶକ୍ତି (ଠାକୁରାଣୀ) ପୂଜା ପାଇଥାନ୍ତି । ଆଦିବାସୀମାନେ ଦେବୀ ଦେବତାଙ୍କୁ ଭିନ୍ନ ଭିନ୍ନ ନାମରେ ପୂଜା କରିଥାନ୍ତି । ମୁକ୍ତ ପ୍ରାନ୍ତରେ, ନଦୀ ଓ ପୁଷ୍କରିଣୀ

ତଟରେ, ବୃକ୍ଷମୂଳରେ, ରାସ୍ତାକଡ଼ରେ । କୋଉରେ ସିନ୍ଦୂର ବୋଳା ହୋଇଥାଏ କାହା ଦେହରେ କଳାକନା ଘୋଡ଼ାଇ ଦିଆଯାଏ । ପ୍ରତ୍ୟେକ ଗ୍ରାମରେ ବେରନା ମୁଣ୍ଡା ଓ ନିଶାଣିମୁଣ୍ଡା ଥାଏ । ନିଶାଣି ମୁଣ୍ଡାରେ ପ୍ରତିଷ୍ଠା ହୋଇଥାନ୍ତି ହୁଣ୍ଡୀ ଠାକୁରାଣୀ । ଲମ୍ବା ଲମ୍ବା ପଥର ପରିବେଷ୍ଟିତ ବଖରା ଭିତରେ ଆସ୍ଥାନ ରହିଥାଏ । ଲୁହାଖମ୍ବ ଗ୍ରାମରେ ପ୍ରତିଷ୍ଠା ସମୟରେ ସ୍ଥାପନ କରାଯାଇଥାଏ । ଲୁହାଖମ୍ବ ନ ବଦଳାଇ ମାଟିହାଣ୍ଡି କାଟି ନିଶାଣିମୁଣ୍ଡାର ପ୍ରତିଷ୍ଠା ହୁଏ । ଆଦିବାସୀର ଦେବଦେବୀ ହେଉଛନ୍ତି ମାଟିହାଣ୍ଡି, ଲୁହାକାତି ଏବଂ ସ୍ଥାୟୀ ଲୁହାଖମ୍ବ ପୂଜା ସାମଗ୍ରୀ ମଧ୍ୟରେ ଚାଉଳ, ଫୁଲ, ସିନ୍ଦୂର, ଧୂପ ଓ ଦୀପ । ମହୁଲୀ ମଦକୁ ନୈବେଦ୍ୟ ରୂପେ ଅର୍ପଣ କରାଯାଏ । କୁକୁଡ଼ା, ପାରା, ବୋଦା, ମେଣ୍ଢା, ଘୁଷୁରି ଏବଂ ପୋଡ଼କୁ ନୈବେଦ୍ୟ (ବଳି) ରୂପେ ପୂଜା କରାଯାଏ । ମାଟିମାତା, ଧରନୀ ମାତାକୁ କୁକୁଡ଼ା, ଦେଓବାଡ଼ନୀ, ଗାଇଉଲି ଗ୍ରାମଦେବୀଙ୍କୁ ନୂଆଧାନର ଚୂଡ଼ା, ଫୁଲ, ପାଣି କୁଢ଼େଇ ପତ୍ର ହଂସ ଅଣ୍ଡା ପୂଜା କରାଯାଏ । ଗ୍ରାମର ପ୍ରତ୍ୟେକ ଲୋକ ଏକାଠି ହୋଇ ସାମାଜିକ-ମେଳନ ପାଳନ କରିଥାନ୍ତି, ତାକୁ ପରବ କୁହାଯାଏ । ଯେଉଁ ଅନୁଷ୍ଠାନଗୁଡ଼ିକ ଦେବଦେବୀଙ୍କ ସନ୍ତୁଷ୍ଟ କରିବା ପାଇଁ ପଶୁପକ୍ଷୀ ବଳି ଦେଇ ତାକୁ ପୂଜା କରିଥାନ୍ତି ତାକୁ ଯାତରା କୁହାଯାଏ । ଆଦିବାସୀମାନେ ଦେବଦେବୀଙ୍କୁ ଚାରି ଭାଗରେ ବିଭକ୍ତ କରିଥାନ୍ତି । (୧)ସୁରକ୍ଷା ପ୍ରଦାନକାରୀ ଦେବଦେବୀ (୨) ଉପକାରୀ ଦେବଦେବୀ (୩) କ୍ଷତିକାରଣ ଦେବଦେବୀ (୪) ପୂର୍ବ ପୁରୁଷଙ୍କ ଆତ୍ମା । ଲୋକଦେବତା ଲୋକ ବିଶ୍ୱାସରୁ ସୃଷ୍ଟି । ଆଦିବାସୀମାନଙ୍କର କଲ୍ୟାଣକାରୀ ଦେବତା ହେଲେ ଦର୍ମୁ ଦେବତା ଏବଂ ଧରତନୀ ମାତା, ଗୋଣ୍ଡ ଦେବତା ବୁଢ଼୍‌ହାପେନ୍, ପରସାପେନ୍, ସଲ୍ଲାପେନ, ଭତରାମାନଙ୍କ ମା' ଇଂଲାଇନି, ଭୀମା, ପରଦେଶିନୀ, ଦୁଲାଦିମାତା, ହାଲବାମାନଙ୍କର ସେନା ଦେଇ, ରୂପାଦେଇ, ଗାପାଦେଇ, ମାଓଲି, ଦୁରୁଆମାନଙ୍କର ମାଓଲି ବାଉଜାଉନୀ, ବଣ୍ଡାମାନଙ୍କର ପାଟଖଣ୍ଡା, ସିନ୍ଧିବୋର ଶିଙ୍ଗରାଇ, କୋୟାମାନଙ୍କର ଝାଙ୍କର ମାତା, ହୁଣ୍ଡି, କନ୍ଧମାନଙ୍କ ସୋପେନୁ, ସୁଗାପେନୁ, ଗଙ୍ଗିପେନୁ, ଦେଉପେନୁ, ଧରଣୀପେନୁ, ଡୁମା ଦେବତା, ନିଶାନ ଦେବତା, ପାରେଙ୍ଗାମାନଙ୍କର ଲାଣ୍ଡି, ଝାଙ୍କର ଦେଇ ଇତ୍ୟାଦି ।

ଦେବତାମାନଙ୍କୁ କେନ୍ଦ୍ରକରି ପର୍ବପର୍ବାଣି ଜନଜାତିମାନେ ପାଳନ କଲେ । ବଣ, ପାହାଡ଼, ନଈ, ନାଳ, ଝଡ଼, ତୋଫାନ, ବାଘ, ସିଂହ, ବୃକ୍ଷଲତା, ସର୍ପ, ଅଗ୍ନି, ମାଟି, ଗ୍ରହ ନକ୍ଷତ୍ରମାନଙ୍କ ଶକ୍ତି ପାଖରେ ମଣିଷ ଭୟ ଭକ୍ତି କଲେ ପ୍ରକୃତିର ଯାବତୀୟ ଉପାଦାନରେ ଅଦୃଶ୍ୟ ଶକ୍ତିର ଅନୁଭବ କଲେ ଏବଂ ଦେବତା ରୂପରେ ପୂଜା କରିବାକୁ ଆଦିବାସୀମାନେ ଚିନ୍ତା କଲେ । ଏମାନଙ୍କ ଭାବନା, ପର୍ଯ୍ୟବେକ୍ଷକ, ବିସ୍ମୟ ଓ ଭୟରୁ ଲୋକ ଦେବତାମାନେ ସୃଷ୍ଟି ହେଲେ । ଲୋକଦେବତାଙ୍କୁ ଆଦିବାସୀମାନେ ଗଛତଳେ, ପଥର ଗୁମ୍ଫାରେ, ଗାଁ ମୁଣ୍ଡରେ ପୂଜା କରିବାକୁ ଲାଗିଲେ । ପୂଜାବିଧି ଶାସ୍ତ୍ରୀୟ ନୁହେଁ, ନିଜସ୍ୱ ପରମ୍ପରାରେ ଆଦିବାସୀମାନେ ପୂଜା କରିଥାନ୍ତି । ଅନେକ ପୂଜା ତାନ୍ତ୍ରିକ ରୀତିରେ କରାଯାଇଥାଏ । ଆଦିବାସୀ ଗୋଷ୍ଠୀର ଧର୍ମବିଶ୍ୱାସ ଓ ଧର୍ମ ଆଚରଣ ତଥା କର୍ମକର୍ମାଣିରେ ନିଜସ୍ୱ ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ସେମାନେ ଈଶ୍ୱରବାଦୀ, ଜୀବଜଡ଼ ଉପାସନାବାଦ, ଜୀବନାରୋପବାଦ, ପ୍ରକୃତି ଉପାସନାବାଦ, ଜଡ଼ପୂଜା ଫେଟିସ୍‌ବାଦ, ଗୂଢ଼ରହସ୍ୟବାଦ, ଗୁଣି ଗାରେଡ଼ି, ଯାଦୁ ବିଦ୍ୟାରେ ବିଶ୍ୱାସ କରନ୍ତି । ଦୈନନ୍ଦିନ ଜୀବନରେ ଆକସ୍ମିକ ଘଟଣାବଳୀ ରୋଗ, ବଇରାଗ, ମୃତ୍ୟୁ ଏବଂ ଦୁର୍ବୋଧତା ଅଦୃଶ୍ୟ ଆତ୍ମାଙ୍କ ଜଗତ ଅଥବା ଅଲୌକିକ ଶକ୍ତି ପ୍ରତି ଧାରଣା କରିଥାନ୍ତି ଏବଂ ମନ୍ତ୍ର ଉଚ୍ଚାରଣ କରି ମଣିଷର ଉପକାର ଓ ଅପକାର କରିଥାନ୍ତି । ପୂଜା ଆରାଧନା କରି ଅତି ମାନବୀୟ ଶକ୍ତିକୁ ସଂପାଦନ କରିଥାନ୍ତି ।

**ମାଓଲି ଓ ଭୈରବ ଦେବତା**

ଗୋଣ୍ଡ, ଭତରାମାନେ ମୁଖ୍ୟଦେବତା ଭାବେ ପୂଜା କରିଥାନ୍ତି । ଦେବତାମାନେ ଗୁଡ଼ିରେ ପୂଜା ପାଇଥାନ୍ତି ।

ଗୁଡ଼ି ଆଗରେ କାଠ ଝୁଲଣା, ବୀରଖମ୍ବ ଦେଖିବାକୁ ମିଳେ । ମାଓଲି ଦେବୀଙ୍କୁ ଶକ୍ତିର ପ୍ରତୀକ ଧରାଯାଏ, ଅନେକ ପୌରାଣିକ ଜନଶ୍ରୁତି ଦେବୀଙ୍କ ବିଷୟରେ ରହିଛି । ମାଉଲି ମା' ମନ୍ଦିର କୋଟପାଡ଼ ଅଞ୍ଚଳର ଏକ ପ୍ରତୀକ ଶକ୍ତିପୀଠ । ଏହାକୁ ରାଜା ପ୍ରତିଷ୍ଠା କରିଥିଲେ । ଦେବୀଙ୍କ ପୂଜା ବିଧିରେ ପାଟଖଣ୍ଡା ପୂଜା ହୁଏ, ଦଶହରା ସମୟରେ ଆଶ୍ୱିନ ଶୁକ୍ଳ ପ୍ରତିପଦାଠାରୁ ମହାସପ୍ତମୀ ପର୍ଯ୍ୟନ୍ତ ବ୍ରାହ୍ମଣମାନଙ୍କୁ ଡକାଇ ବିବିଧ ପୂଜା, ହୋମ, ଚଣ୍ଡପୂଜା, ଶକ୍ତିପୂଜା କରାଯାଏ । ମା'ଙ୍କର ପୂଜା ସହ ଭୈରବ (ଶିବ)ଙ୍କ ପୂଜା ହୁଏ । ଭାଦ୍ରବ ଶୁକ୍ଳ ତୃତୀୟାଠାରୁ ତିଜାବାଲି ପୂଜା ହୁଏ । ପୂଜାରିଣୀ ହେଉଛନ୍ତି ଜଣେ ମହିଳା । ତାହାଙ୍କୁ 'ଗୁରୁମାଇ' କୁହାଯାଏ । ମା'ଙ୍କ ଉଦ୍ଦେଶ୍ୟରେ ଯେଉଁ ପୂଜା କରାଯାଏ ତାକୁ ହୁକୁମ୍ କୁହାଯାଏ । ଏକମୁହାଁ ଅନ୍ଧାର ଘରେ ବାଲି ଚାଙ୍ଗୁଡ଼ିରେ ଧାନବୁଣା ହୁଏ, ସେଥିରୁ ଗଜା ବାହାରେ, ବାଲିଭଙ୍ଗାରେ ଭୈରବ ଦେବଙ୍କ ଲାଠି ବା ଧ୍ୱଜା ସ୍ଥାପନ ହୁଏ । ମା' ପ୍ରଥମେ ଅଶ୍ୱ ସବାର ହୋଇ ଦମୟନ୍ତୀ ସାଗରରେ ପାଦଧୋଇ କୋଟପାଡ଼ ଅଞ୍ଚଳର ସମସ୍ତ ଦେବଦେବୀଙ୍କୁ ଆମନ୍ତ୍ରଣ ମା' ମାଉଲୀ କରିଥାନ୍ତି ଏବଂ ସମସ୍ତେ ଗାଁ ମାଉଲୀ ପୀଠରେ ଏକତ୍ରିତ ହୋଇଥାନ୍ତି । ଭୈରବ ଧ୍ୱଜା ସ୍ଥାପନ ହୁଏ ପୀଠରେ । ବୈଦିକ ମନ୍ତ୍ର ଅନୁଯାୟୀ ବ୍ରାହ୍ମଣମାନେ ପୂଜାବିଧି ସମ୍ପାଦିତ କରିଥାନ୍ତି । ବିଜୟ ଉତ୍ସବରେ ମା'ଙ୍କ ଆଦେଶକ୍ରମେ ପାରା ଉଡ଼ାଯାଏ ଯିଏକି ଶାନ୍ତିର ବାର୍ତ୍ତା ଦେଇଥାଏ । ତା'ପରେ ନବାନ୍ନ କ୍ଷୀରି ଗ୍ରହଣ କରିଥାନ୍ତି । ଫାଲ୍‌ଗୁନ ମାସରେ ମା' ମାଉଁଲିଙ୍କ ପୀଠରେ ହୋଲିକା ଦହନ କରାଯାଏ । ପୀଠରେ ଅଖଣ୍ଡ ଦୀପ, ପାଟଖଣ୍ଡା, ଆଜ୍ଞାମାଳ, ହୁକୁମ, ସଂକଳ୍ପିତ ସୁପାରୀ ପ୍ରତି ଗୁରୁତ୍ୱ ରହିଛି । ସେବାୟତମାନେ କହିଥାନ୍ତି ମା' ମାଉଲୀ ଆମକୁ ମନା କରିଛନ୍ତି କହିବୁନି, ମା' ଇଚ୍ଛା କରିଛନ୍ତି – ଆମେ ଏହି କାମ କରିବାକୁ – ଏହା ହେଉଛି ସେବାୟତଙ୍କ ନିତିଦିନିଆ କଥା, ସତେଯେମିତି ଲୋକମାନଙ୍କ ଘରର ଜଣେ ମୁରବି ଦେବି ମାଉଁଲି, ତାଙ୍କ ଇଙ୍ଗିତରେ ସମସ୍ତେ ପରିଚାଳିତ ।

### ଲୋକ ଦେବତା ବୀରଖମ୍ବ

ବୈପାରୀଗୁଡ଼ାରେ ଆଦିବାସୀ ସଂପ୍ରଦାୟ ଭୂମିଆ, ଗାଦବା, ଭତରା, ପରଜା ସମ୍ପ୍ରଦାୟ ବାସ କରିଥାନ୍ତି । ଏମାନଙ୍କ ଲୋକଦେବୀ – ବୀରଖମ୍ବ । ବୈପାରୀଗୁଡ଼ାରେ ଦୁଇଟି ପାହାଡ଼ ରହିଛି । ସେହି ପାହାଡ଼ ମଧ୍ୟରୁ ଗୋଟିଏ ବୀରଖମ୍ବଙ୍କର ବାସସ୍ଥଳୀ । ଏହି ପାହାଡ଼ରେ ଶାଳ, ପିଆଶାଳ, ଅମନ, କେନ୍ଦୁ, ଅଁଳା ଭଳି ଗଛ ରହିଛି । ବୀରଖମ୍ବଙ୍କ ଆବିର୍ଭାବ ବିଷୟରେ ଅନେକ କିମ୍ବଦନ୍ତୀ ରହିଛି । ଦେବୀଙ୍କ ଆସ୍ଥାନ ଖୋଜୁ ଖୋଜୁ ପୂଜାରୀ ପାହାଡ଼ର ଶୀର୍ଷସ୍ଥାନରେ ପହଞ୍ଚି ପୀଠ ଦେଖିଲେ । ସେହିଦିନ ସେଠାରେ ପୂଜାର୍ଚ୍ଚନା କଲେ । ସ୍ୱପ୍ନାଦେଶ ହେଲା ଢ଼ାଳ ଯେଉଁଠାରେ ପଡ଼ିବ ସେଠାରେ ଦେବୀ ପୂଜା ପାଇବେ । ଢ଼ାଳଟି ପାହାଡ଼ ଉପରୁ ଗଡ଼ି ଗଡ଼ି ଆସି ଗୋଟିଏ ଶିଆଳି ଲତାକୁଞ୍ଜରେ ଅଟକିଗଲା । ଆଜିଯାଏଁ ଦେବୀ ସେହି ଶିଆଳୀଲତା କୁଞ୍ଜରେ ପୂଜା ପାଇ ଆସୁଛନ୍ତି । ପ୍ରତିବର୍ଷ ଦଶହରା ପର୍ବ ଆଶ୍ୱିନ ମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ପାହାଡ଼ ଶିଖରରେ ଥିବା ମୂଳପୀଠ ଓ ପାହାଡ଼ରେ ଦଶହରା ପର୍ବ ପାଳନ କରାଯାଏ ।

### ପାଟଖଣ୍ଡା

ବାରଜଙ୍ଗର ୧୨ ଖଣ୍ଡ ଗ୍ରାମରୁ ଏବଂ ମୁଦୁଲିପଡ଼ାର ଗାଁ ମୁଣ୍ଡରେ ଥିବା ପୁରୁଣା ବରଗଛର କୋରଡରେ ବଣ୍ଡାମାନଙ୍କୁ ଲୋକ ଦେବତା ସିଙ୍ଗି ଆକି (ସୂର୍ଯ୍ୟଦେବତା) ବା ପାଟଖଣ୍ଡାକୁ ବଣ୍ଡାମାନେ ଆରାଧ ଦେବତା ଭାବରେ ପୂଜା କରିଥାନ୍ତି । ପ୍ରଭୁ ରାମଚନ୍ଦ୍ର, ସୀତା ଓ ଲକ୍ଷ୍ମଣ ବନରେ ଭ୍ରମଣ କରୁଥିବା ସମୟରେ ଏହି ପାଟଖଣ୍ଡାକୁ ପ୍ରଦାନ କରିଥିଲେ । ଯାହାକୁ ବଣ୍ଡାମାନେ ଦେବତା ଭାବରେ ପୂଜା କରିଥାନ୍ତି । ବଣ୍ଡାମାନଙ୍କ ବଡ଼ପର୍ବ ପାଟଖଣ୍ଡା ଯାତ୍ରା ପୂଜାର ଆଠଦିନ ପୂର୍ବରୁ ଗ୍ରାମର ନାୟକ କୁକୁଡ଼ା ଓ ଧାନ ଆଣିଥାଏ । ପାଟଖଣ୍ଡାର ପୂଜାରୀ ନାୟକର ମୁଣ୍ଡରେ ହଳଦୀ ଟୀକା ଦେଇଥାଏ । ମୁଦୁଲିପଡ଼ାର ଲୋକମାନେ ଧୂସର ଛେଳି, କୁକୁଡ଼ା,

ଆଣିଥାନ୍ତି । ଦିଶାରୀମାନେ ଭୂତପ୍ରେତ ନ ଆସିବା ପାଇଁ ମୟୂରପୁଚ୍ଛ ଧରି ହଲାଇ ହଲାଇ ମନ୍ତ୍ର ପାଠ କରିଥାନ୍ତି । ତା'ପରେ ସଂଗୃହୀତ ଧାନକୁ ପୂଜାରୀ ଫୁଲ ହଳଦୀ, ପାଣି, ଅରୁଆ ଚାଉଳ ଅଭିମନ୍ତ୍ରିତ କରି କୁଲାରେ ରଖେ ଏବଂ ପାଟଖଣ୍ଡାଙ୍କ ପାଦରେ ଅର୍ପଣ କରିଥାଏ । ତା'ପରେ ପୂଜାରୀ ଗୋଟିଏ ଛେଳିର ମୁଣ୍ଡକୁ ହାଣି ତାର ମୁଣ୍ଡକୁ ଧାନ ଗଦା ଉପରେ ରଖିଦିଏ । ଗୋଟିଏ ନୂଆ ବାଉଁଶ ନଳୀର ମୁହଁକୁ ଭଲ ଭାବରେ ବନ୍ଦକରି ନିଆଁ ଭିତରେ ପୋତି ଦିଆଯାଏ । ନଳୀକୁ ନିଆଁ ଭିତରେ କେତେ ସମୟ ରଖିଲା ପରେ ତାକୁ ବାହାରକୁ ଆଣି ସିଦ୍ଧ ହେବା ଅନ୍ନକୁ ପାଟଖଣ୍ଡାଙ୍କ ପାଖରେ ପୂଜା କରାଯାଏ । ବରଗଛ ମୂଳରେ ମାଣ ଓ ଅଢ଼ାରେ ଧାନ ଭର୍ତ୍ତିକରି ରଖାଯାଏ ଏବଂ ମନ୍ତ୍ରପଢ଼ି ସମର୍ପଣ କରାଯାଏ । ପୂଜାରୀ ସୀତାକୁଣ୍ଡରୁ ଜଳ ଆଣି ପୂଜା କରାଯାଏ । ପୂଜା ପରେ ବଡ଼ନାୟକ ପ୍ରତ୍ୟେକ ଧାନକୁ ଗ୍ରାମବାସୀଙ୍କ ମଧ୍ୟରେ ବାଣ୍ଟିଦେଇଥାନ୍ତି । ପାଟଖଣ୍ଡା ମହାପ୍ରଭୁ ବାଘ ଦାଉରୁ ଗ୍ରାମବାସୀଙ୍କୁ ରକ୍ଷା କରିଥାନ୍ତି । ଫସଲ ଭଲ ହୋଇଥାଏ । ବଣ୍ଡାମାନଙ୍କ ବିଶ୍ୱାସ ପାଟଖଣ୍ଡା ମହାପ୍ରଭୁ ଏକମାଣ ଧାନକୁ ଦୁଇମାଣ କରି ଦେଇଥାଏ । ମାଲକାନଗିରିର ବଣ୍ଡାମାନେ ପାଟଖଣ୍ଡା ଦେବତାଙ୍କୁ ପୂଜା କରିଥାନ୍ତି ।

### ଭୀମା ଦେଓ

ଗୋଣ୍ଡମାନଙ୍କ ଲୋକଦେବତା ଭୀମା ଦେଓ । ବର୍ଷା ନ ହେଲେ ଭୀମା ଦେଓଙ୍କୁ ପୂଜା କରାଯାଏ । ପ୍ରତ୍ୟେକ ଗ୍ରାମରେ ଭୀମା ଗୁଡ଼ି (ମନ୍ଦିର) ରହିଥାଏ । କୋଟପାଡ଼, ବରିଗୁମ୍ମା, କୁନ୍ଦ୍ରାରେ ହାଲବା ଜନଜାତି ଭୀମା ଦେଓଙ୍କୁ ପୂଜା କରିଥାନ୍ତି । ଆଦିବାସୀମାନଙ୍କ ବିଶ୍ୱାସ ଯେ ଭୀମାଦେଓ ଜମି ପ୍ରସ୍ତୁତି, କୃଷି ଉପକରଣ, ହଳ ବଳଦର ବ୍ୟବହାର ବୀଜ ବୁଣିବା (ପୁଟନି) ଫସଲ ସଂରକ୍ଷଣ ବିଷୟରେ ମଣିଷକୁ ଶିକ୍ଷା ଦେଇଥିଲେ । ତେଣୁ ହାଲବା ବା ଗଣ୍ଡଜାତିରେ କୁହାଯାଏ – "ଧନ ଦେଲେ ଭୀମା ଇନ୍ଦର ଦେଲେ ପାନି" ଭୀମା ଦେଓଙ୍କ ବିଗ୍ରହ ମହୁଲ କାଠରେ ନିର୍ମିତ ହୋଇଥାଏ । ଭୀମାଦେଓଙ୍କୁ ଜାନି (ପୂଜାରୀ) ପୂଜା କରନ୍ତି । ମନ୍ଦିରରେ ଢ଼ାପ ଓ ଟାମକ ବାଜା ବଜାଯାଏ, ତା'ପରେ ମହୁରୀ ନାଗରା ବଜାଯାଏ । ଭୀମାଦେଓଙ୍କର ଦୁଇଟି ପର୍ବ ପାଳନ କରାଯାଏ । ବାଲିପରବ ଏବଂ ମଣ୍ଡେଇ ପରବ । କନ୍ଧମାନେ ଆଦିପିତା ଓ ଶ୍ରେଷ୍ଠ ପୁରୁଷ ଭାବରେ ପୂଜା କରିଥାନ୍ତି । ସେମାନେ ବାର ଭାୟା ଭୀମା ବୋଲି ପୂଜା କରିଥାନ୍ତି । ପଳାସ ଓ ଡ଼ିମିରି ଫୁଲକୁ ଭୀମାଦେଓ ଭଲପାଆନ୍ତି ତେଣୁ ଭୀମା ଦେବତାଙ୍କ ଦେହରେ ପଳାସ ଫୁଲମାଳ ଓ ହାତରେ ଡ଼ିମିରିଫଳ ଧରିଥାନ୍ତି । ଭୀମାଦେଓଙ୍କ ନିକଟରେ ଯାତ୍ରା ସମୟରେ ବଳି ଦିଆଯାଏ । ବଳି ହେଇଥିବା ପୋଢ଼ର ମୁଣ୍ଡକୁ ଗାତ କରି ପୋତି ଦିଆଯାଏ । ଆଦିବାସୀମାନଙ୍କ ବିଶ୍ୱାସ ରହିଛି ଦାର୍ଣ୍ଣିମାତା (ଧରିତ୍ରୀ ମାତା) ଖୁସି ହୋଇ ପୋଢ଼ର ରକ୍ତରେ ରଞ୍ଜିତ ହେଲାପରେ ପ୍ରଚୁର ଫସଲ ଦେବେ । ଭୀମା ଦେଓଙ୍କ ନିକଟରେ ମଦ ମଧ ଢ଼ଳାଯାଏ । ମଣ୍ଡେଇ ପର୍ବରେ ଗାଁ ଗୁଡ଼ିକ ପାଖରେ ଭୀମା – ଭୀମାଣିଙ୍କ ମହୁଲ କାଠରେ ନିର୍ମିତ ଦାରୁମୂର୍ତ୍ତି ପ୍ରସ୍ତୁତ କରାଯାଏ । ବାଜାବାଜଣା ସହ ପୂଜାରୀ ପୂଜାର୍ଚ୍ଚନା କରନ୍ତି ଖଇମୁଆଁ, କଦଳୀ, ନଡ଼ିଆ, ପୂଜା କରାଯାଏ ଏବଂ କୁକୁଡ଼ା, ପାରା, ମେଣ୍ଢା, ଛେଳି ପୂଜା କରାଯାଏ । ବାଲିଯାତ୍ରାରେ ବାଲିଘର ପ୍ରସ୍ତୁତି, ବାଲିଅଣା, ଗୁରୁମାଇ ନିମନ୍ତ୍ରଣ, ବିହନ ସଂଗ୍ରହ, ବିହନ ଗଜାର ପ୍ରକ୍ରିୟା ଗୁରୁମାଇ ଓ ତାଙ୍କ ସହଯୋଗୀମାନଙ୍କ ପୁରାଣ ଗାନ ମେଳା, ବଜାଇ, ଢ଼ଶିଆ ନାଟ, ବାଲି ବାଇଦ ତାପ, ନାଗରା, ପାଟମହୁରୀ, ଟିଡ଼ିବିଡ଼ି ବଜାଯାଏ ଗୁରୁମାଇମାନଙ୍କ କାଳିସୀନାଟ, ବାଲିଗଦା ଦେଖି ଭବିଷ୍ୟତ ଫସଲ ହେବ କି ନାହିଁ ଜାଣିବା, ଭୀମା ଭୀମାଣିଙ୍କ ବିବାହ କର୍ମ କରାଯାଇଥାଏ । ଭୀମା, ଭୀମାଣି (ଭୀମାଦେଓ)ଙ୍କର ଅନେକ କିମ୍ବଦନ୍ତୀ ରହିଛି ।

### ମାର୍କମା

ବିଷମକଟକରେ ଦେବୀ ମାର୍କମା ଲୋକ ଦେବତା ଭାବରେ ପୂଜାପାଇ ଆସୁଛନ୍ତି । ଅନତି ଦୂରରେ ଅନ୍ୟ ମନ୍ଦିରରେ କର୍କମା ପୂଜା ପାଇଥାନ୍ତି । ଦୁହେଁ ତନ୍ତ୍ରଦେବୀ

। ମାର୍କମା ଓ କର୍କମା ସମ୍ବନ୍ଧରେ ବହୁ କିମ୍ବଦନ୍ତୀ ରହିଛି । ଏଠାରେ ଶାରଦୀୟ ନବରାତ୍ରୀ ଓ ଚୈତ୍ର ନବରାତ୍ରୀ ବାସନ୍ତୀ ପୂଜା ମହାଆଡ଼ମ୍ବରରେ ପାଳନ କରାଯାଏ । ଏଠାରେ ସାତ୍ତ୍ୱିକ ପୂଜାରେ ନଡ଼ିଆ, କଦଳୀ, ଗୋଜାମୁଆଁ ପୂଜା କରାଯାଏ । ଦେବୀ ମାର୍କମା ଏବଂ କର୍କମାଙ୍କ ନିୟମଗିରିର ରାଜା ନିୟମ ରାଜା ଏବଂ ଡୁଡୁମା ଜଳପ୍ରପାତର ମାଛକୁଣ୍ଡର ଉତ୍ପତ୍ତି ବିଷୟରେ ଅନେକ କଥା ଓ କାହାଣୀ ଶୁଣାଯାଏ । ଏଠରେ ମେରୀଆ ବଳି ଦିଆଯାଉଥିଲା । ଲୋକ କାହାଣୀ ରହିଛି ୨୧ ଦିନ ପୂଜା ଅର୍ଚ୍ଚନା କରି କୁଷ୍ଠରୋଗୀ ଭଲ ହେଉଥିଲେ । ମନ୍ଦିର ଦ୍ୱୟର ଉନ୍ନତି କରାଯାଇଛି । ରାଜାଙ୍କ ଗଡ଼ ନିକଟରେ ଦେବୀ ଦ୍ୱୟଙ୍କ ପ୍ରାଚୀନ ମନ୍ଦିରର ଧ୍ୱଂସାବଶେଷ ରହିଛି । ସାରଳା ଦାସଙ୍କ ଚଣ୍ଡୀ ପୁରାଣରେ ମାର୍କମା, ସରକମା, କର୍କମା ପ୍ରଭୃତି ୬୪ ଯୋଗିନୀ, ହାଡ଼ବାଇ, ବାଟଳୀ, କୁଠାରୀ, ତାରେଣୀ ପ୍ରଭୃତି ଗ୍ରାମ୍ୟଦେବୀଙ୍କ ବର୍ଣ୍ଣନା ରହିଅଛି । ତନ୍ତ୍ରଶାସ୍ତ୍ରର ସମସ୍ତ ଗ୍ରନ୍ଥର ସାରବସ୍ତୁ ଶାକ୍ତମାନଙ୍କୁ ସାରଳା ସାହିତ୍ୟ ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି ।

ଅବିଭକ୍ତ କୋରାପୁଟ ଜିଲ୍ଲାରେ ପୂଜାପର୍ବ ଯାନିଯାତ୍ରାରେ ମାଣ୍ଡିଆରାଣୀ, ଟୋକିମରା, ତାଣ୍ଡିସୁମ୍, ଲାବକୁସ, ନୂଆଖାଇ, ବାଲିଯାତ୍ରା, ଶାରଦୀୟ ଦଶହରା, କାନ୍ଦୁଲ ପର୍ବ, ଚଇତି ପର୍ବ, ପୁଷପୁନେଇ, ନିଜାଣୀ ପର୍ବ, ମେରିଆ ପର୍ବକୁ ଆଦିବାସୀମାନେ ଧୂମ୍‌ଧାମ୍‌ରେ ପାଳନ କରିଥାନ୍ତି । ମଦ, ମାଂସରେ ମଜ୍ଜିଯାଇ, ଢ଼େମସା ନାଚରେ ଗୋଡ଼କୁ ଗୋଡ଼ ଛନ୍ଦି ମସ୍‌ଗୁଲ ହୋଇ ନିଜ ଜୀବନକୁ ଆଦିବାସୀମାନେ ସୁନ୍ଦର ଭାବରେ ଉପଭୋଗ କରିଥାନ୍ତି ।

ପାଇଲ ସାହି, ଜୟପୁର, କୋରାପୁଟ



# ଓଡ଼ିଆ ସଂସ୍କୃତିରେ ଝୋଟିଚିତାର ଚିତ୍ରକଳା ଓ ମାଣବସା

କାଞ୍ଚନାରାୟଣ ମହାନ୍ତି

ମାର୍ଗଶିର ମାସର ମାଣବସା ଦେବୀ ଲକ୍ଷ୍ମୀଙ୍କର ପୂଜା । ରୂପ ଓ ଲାବଣ୍ୟରେ ଦେବୀମାନଙ୍କ ଭିତରେ ଲକ୍ଷ୍ମୀ ଶ୍ରେଷ୍ଠା । ସେଥିପାଇଁ ସେ 'ମହାଲକ୍ଷ୍ମୀ' ଭାବରେ ଅଭିହିତା ହୁଅନ୍ତି । ବଳରାମ ଦାସ 'ଲକ୍ଷ୍ମୀ ପୁରାଣ'ରେ ତାଙ୍କୁ 'ପରମଲକ୍ଷ୍ମୀ' କହିଛନ୍ତି ।



ଦେବୀ ଲକ୍ଷ୍ମୀଙ୍କର ଅନେକ ନାମ । 'ଅମରକୋଷ'ରେ ତାଙ୍କର ବିଭିନ୍ନ ନାମର ଉଲ୍ଲେଖ ରହିଛି । କିନ୍ତୁ ଅବସ୍ଥାନ ଭେଦରେ ତାଙ୍କର ଭିନ୍ନ ଭିନ୍ନ ନାମ ଅଛି । ସ୍ୱର୍ଗଲୋକରେ ଇନ୍ଦ୍ରଙ୍କର ସମ୍ପତ୍ତି ରୂପେ ସେ 'ସ୍ୱର୍ଗଲକ୍ଷ୍ମୀ' । ସେହିପରି ମର୍ତ୍ତ୍ୟଲୋକ ଓ ପାତାଳ ଲୋକରେ ସେ ରାଜାମାନଙ୍କ ନିମନ୍ତେ 'ରାଜଲକ୍ଷ୍ମୀ' । କିନ୍ତୁ ଗୃହସ୍ଥମାନଙ୍କ ପାଇଁ ସେ 'ଗୃହଲକ୍ଷ୍ମୀ' ରୂପେ ବିବେଚିତା ହୁଅନ୍ତି । ଏଣୁ ଯେଉଁ ସ୍ଥାନରେ ଲକ୍ଷ୍ମୀ ନଥାଆନ୍ତି, ସେହି ସ୍ଥାନ 'ଶ୍ରୀ'ହୀନ ବା ଲକ୍ଷ୍ମୀଛଡ଼ା ହୋଇଯାଏ ।

ଦେବୀ ଲକ୍ଷ୍ମୀ ମଧ୍ୟ ଶସ୍ୟରେ ଅବସ୍ଥାନ କରନ୍ତି । ଏ ଦୃଷ୍ଟିରୁ ସେ 'ଶସ୍ୟଲକ୍ଷ୍ମୀ' । ଶୁକ୍ଲଧାନକୁ ତାଙ୍କର ପ୍ରତୀକ ରୂପେ ଗ୍ରହଣ କରାଯାଏ । ଆମର ପାରମ୍ପରିକ ବିଧାନ ଅନୁସାରେ, ନୂଆ ମାଣରେ ମାଟି ଲେସି, ସେଥିରେ କଉଡ଼ି ଖଞ୍ଜି ତାଙ୍କର ଆଖି କରାଯାଏ । ମାଣକୁ ଧଳାଧାନରେ ପୂର୍ଣ୍ଣ କରାଯାଇ ଧଳାଧାନର ମେଣ୍ଟା ସେଥିରେ ସ୍ଥାପନା କରାଯାଏ । ତା' ଉପରେ ଲାଲ୍ ରଙ୍ଗର ବସ୍ତ୍ରକୁ ଓଢ଼ଣୀ ପରି ଘୋଡ଼ାଇ ଦିଆଯାଏ । ଏହାହିଁ ଆମ ମାଣବସାର ଦେବୀଲକ୍ଷ୍ମୀ 'ଗୃହଲକ୍ଷ୍ମୀ' । ଏହି ମାଣବସାରେ ଚିତା ପକାଇବା ଏକ ବିଧି । ଅରୁଆଚାଉଳ ବାଟି ପ୍ରସ୍ତୁତ ହୋଇଥିବା ପିଠଉରେ ଏହି ଚିତା ଲେଖାଯାଏ । ଏଥିରେ ପାଦ ଓ ପଦ୍ମ ମୁଖ୍ୟ । ଏହି ଚିତାରେ ଦାଣ୍ଡରୁ ଘର ଆଡ଼କୁ ଯୋଡ଼ିପାଦ ଅଙ୍କାଯାଇଥାଏ ଏବଂ କେତୋଟି ଯୋଡ଼ିପାଦ ପରେ ଗୋଟିଏ ଲେଖାଏଁ ପଦ୍ମ ବା ଝୋଟି ରହିଥାଏ । ଏହି ଯୋଡ଼ିପାଦ ଦେବୀ ଲକ୍ଷ୍ମୀଙ୍କର ଆଗମନ ଏବଂ ପଦ୍ମ ବା ଝୋଟି ତାଙ୍କ ଅବସ୍ଥାନର ସଙ୍କେତ । ତା' ସହିତ ଗୋବରଲିପା ମାଟିକାନ୍ଥରେ ପତଳା ପିଠଉରେ ଆଙ୍ଗୁଠି ବୁଡ଼ାଇ ଛାଟି ଛାଟି ଯେଉଁ ଚିତା ପକାଯାଏ, ତାହା କଟାଧାନ ବିଡ଼ାର ରୂପ ନିଏ । ଏହା 'ହଳା' ବା 'କଳେଇ'କୁ ବୁଝାଏ । ତାହାର ଉପରେ ଆଙ୍ଗୁଠିର ଟିପରେ ଥାକ ଥାକ କରି ଯେଉଁ ଚିହ୍ନ ଅଙ୍କାଯାଏ, ତାହା କଉଡ଼ିର ପ୍ରତୀକ ରୂପେ

ବିବେଚିତ ହୁଏ । ଏଣୁ ମାଣବସାର ଏହି ଚିତା ପ୍ରକୃତରେ ଶସ୍ୟଲକ୍ଷ୍ମୀ ଓ ଧନଲକ୍ଷ୍ମୀ ରୂପେ ଆମ ଗୃହକୁ ମହାଲକ୍ଷ୍ମୀଙ୍କର ଆଗମନ ଓ ଆମ ଗୃହରେ ତାଙ୍କର ଅବସ୍ଥାନକୁ ସୂଚାଏ । ଏହାହିଁ ଆମର ପାରମ୍ପରିକ ମାଣବସା ଚିତାର ବିଶେଷତ୍ୱ । ପରିଷ୍କାର ପରିଚ୍ଛନ୍ନତା ଓ ଶ୍ରଦ୍ଧା ଏହାର ମୁଖ୍ୟ କଥା । ଝୋଟିଚିତା ହେଉଛି ଓଡ଼ିଶାର ନିଜସ୍ୱ କଳା । ଏହାର ଅଙ୍କନ ଶୈଳୀରେ ସ୍ୱାତନ୍ତ୍ର୍ୟ ପରିସ୍ଫୁଟ । ଝୋଟିଚିତା ଏକ ମନୋଜ୍ଞ କଳା । ଏହି ଝୋଟିଚିତାରେ ସମତଳ ଭୂମି ବା କାନ୍ଥ ଉପରେ ଅଙ୍ଗୁଳି ଚାଳନା ଦ୍ୱାରା ମନଗହନର ନିଭୃତ ଭାବନା ସ୍ଥୂଳତଃ ଜୀବନ୍ୟାସ ପାଇଥାଏ । ଏହି ଝୋଟିଚିତାରେ ଓଡ଼ିଆଣୀର ସୌନ୍ଦର୍ଯ୍ୟ ଚେତନା, ଉନ୍ନତ ରୁଚିବୋଧ ତଥା କଳାନୁରାଗ ହିଁ ପ୍ରତିଫଳିତ ହୋଇଥାଏ । ଓଡ଼ିଆଣୀର ମନନଶୀଳ ଚିନ୍ତାରୁ ଜନ୍ମ ଏହି ଝୋଟିଚିତାର ବହିଃରଙ୍ଗର ବୈଚିତ୍ର୍ୟ, ଆଭ୍ୟନ୍ତରୀଣ ଶୃଙ୍ଖଳା, ଆଙ୍ଗିକ ପରିଚ୍ଛନ୍ନତା ତଥା ଆତ୍ମିକ ଶୁଚିନିଷ୍ଠା ବେଶ୍ ହୃଦୟସ୍ପର୍ଶୀ । ଓଡ଼ିଆଣୀର ନିରବଛିନ୍ନ ପ୍ରୟାସ ତଥା କଳାସୌନ୍ଦର୍ଯ୍ୟ ପ୍ରତି ପ୍ରଗାଢ଼ ଆସକ୍ତି ଯୋଗୁଁ ଏହି କଳା ପ୍ରତି ଓଡ଼ିଆ ଗୃହରେ ଆଦୃତ ହେବା ସଙ୍ଗେ ସଙ୍ଗେ ଯୁଗ ଯୁଗ ଧରି ଏହା ଓଡ଼ିଆ ଜାତି ପାଇଁ ଏକ ମହାନ୍ ପରମ୍ପରା ସୃଷ୍ଟି କରିଆସିଛି । ବିଶେଷତଃ ମାଣଓଷା ଅବସରରେ ପ୍ରତି ଓଡ଼ିଆ ଗୃହରେ ଝୋଟିର ପ୍ରଦର୍ଶନ ବାସ୍ତବରେ ବଡ଼ ଆକର୍ଷଣୀୟ ।

ଆମ ଓଡ଼ିଶାରେ ସାଧାରଣତଃ ବିଲରେ ଧାନ ପାଚିଲେ ଖଳାବାଡ଼ି ପରିଷ୍କାର କରି ଲିପି ଝୋଟିଚିତା ପକାଯାଇଥାଏ । ପୁନଶ୍ଚ ଧାନ ଅମଳ ପରେ ମଧ୍ୟ ପଲ୍ଲୀଗୃହିଣୀ ଶଗଡ଼ ଓ କୃଷି ପାଇଁ ଅନ୍ୟାନ୍ୟ ବ୍ୟବହୃତ ଉପକରଣ ଇତ୍ୟାଦିକୁ ଚିତ୍ରଣ କରି ମେଢ଼ି ପାଖରେ ପିଠାପଣା ନୈବେଦ୍ୟ ବାଢ଼ି ଶସ୍ୟଲକ୍ଷ୍ମୀଙ୍କୁ ଉପାସନା କରିଥାଏ । ଏହି ପ୍ରସଙ୍ଗରେ ଯଥାର୍ଥରେ କୁହାଯାଇଛି ଯେ-

''ପିଠଉରେ ଝୋଟି ମେଢ଼ିପାଶେ ଲେଖି ସରସେ
ପଲ୍ଲୀ ଘରଣୀ ଲକ୍ଷ୍ମୀ ପୂଜଇ ମନ ହରଷେ ।''



ନୂଆଧାନ ଅମଳ ପରେ ନଗରଠାରୁ ଜନପଦ ସର୍ବତ୍ର ପ୍ରତି ଘରେ ମହାଲକ୍ଷ୍ମୀ ଉପାସନା ବା ମାଣଓଷା ନିମିତ୍ତ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଯାଏ । ଫସଲର ଅଧିଷ୍ଠାତ୍ରୀ କୃଷିଦେବୀ ମହାଲକ୍ଷ୍ମୀଙ୍କ ପୂଜା ଉତ୍କଳୀୟ ପଲ୍ଲୀ ସଂସ୍କୃତିର ଏକ ପ୍ରଧାନ ପର୍ବ । ଶ୍ରୀ ଓ ସମୃଦ୍ଧିର ପର୍ବ ମାଣଓଷାର ମୁଖ୍ୟ ଆକର୍ଷଣ ହେଉଛି ଝୋଟିଚିତା । ଫସଲ ଅମଳ ସମୟ ମାର୍ଗଶିର ମାସରେ ମାଣଓଷା ଗୁରୁବାରର ଠିକ୍ ଅବ୍ୟବହିତ ପୂର୍ବରୁ ଗ୍ରାମାଞ୍ଚଳର ଓଡ଼ିଆଣୀ ଗେରୁମାଟି, ବନମାଟି ଅଥବା ଗୋବରରେ ଝାଟିମାଟି ଘର ତଥା ଅଗଣାକୁ ସୁଶୋଭନ କରି ଲିପି ଏବଂ ସିମେଣ୍ଟ ଚଟାଣକୁ ପରିଷ୍କାର କରି ଧୋଇ, ତାହା ଶୁଖିଲା ପରେ ଅରୁଆଚାଉଳ ବଟା ଧୋବ ଫରଫର ପିଠଉରେ ଝୋଟି ରଚନା କରିଥାଏ । ଲିପାପୋଛା କାନ୍ଥ ଉପରେ ବା ଚଟାଣରେ ବଟା ପିଠଉରେ ଅଙ୍କିତ ଝୋଟିଚିତା ଯେପରି ସୁନ୍ଦର, ସ୍ୱଚ୍ଛ ତଥା ଦୀର୍ଘସ୍ଥାୟୀ ହୋଇଥାଏ, ଅରୁଆଚାଉଳରୁ ପ୍ରସ୍ତୁତ ମୁରୁଜରେ ତାହା ସମ୍ଭବ ହୁଏ ନାହିଁ ।

ମାଣଓଷା ଅବସରରେ ଗ୍ରାମ୍ୟଲଳନା ଏହି ଝୋଟିଚିତା ମାଧ୍ୟମରେ ତା'ର ମନଗହନର ଅସୁମାରି ଅକୁହା କଥା ପ୍ରକାଶ କରିଥାଏ, ତାହା ବାସ୍ତବରେ ଭାବୋଦ୍ଦୀପକ । ଗୃହଜଞ୍ଜାଳ ସାରି ପିଲାମାନେ ଶୋଇପଡ଼ିବା ପରେ, ପିଠଉ ଗିନା ଧରି ଚମ୍ପକ ଆଙ୍ଗୁଳି ଚାଳନାରେ ଚିତା ଲେଖିଲାବେଳେ ଓଡ଼ିଆଣୀ ସାଧାରଣତଃ ଆତ୍ମବିସ୍ମୃତ ହୋଇଯାଏ । ବିନିଦ୍ର ରଜନୀ ଅତିବାହିତ କରି

ରାତ୍ରିର ବିଳମ୍ବିତ ପ୍ରହରରେ ଡିବିରିର ସ୍ତିମିତ ଆଲୋକରେ ଓଡ଼ିଆଣୀ ପିଠଉ ଗିନା ତଥା ଅଙ୍ଗୁଳି ଉପରେ ସ୍ୱୀୟା ଏକାଗ୍ରତା ଠୁଳୀଭୂତ କରି ଅଟ୍ଟାଳିକାଠାରୁ ପର୍ଣ୍ଣକୁଟୀର ପର୍ଯ୍ୟନ୍ତ ସର୍ବତ୍ର କଳେଇଗଦାର ସ୍ଥଳ ଆଭାସ ଚିତ୍ରରେ ପଟକୁ ପଟ କାନ୍ଥ ସଜେଇ ପ୍ରତି ଘରକୁ ଏକ ଏକ ପ୍ରଦର୍ଶନୀ ପ୍ରକୋଷ୍ଠରେ ପରିଣତ କରିଥାଏ । ମାଣଓଷାରେ ଏହା ପ୍ରତି ଓଡ଼ିଆଣୀର ଏକ ଅପରିହାର୍ଯ୍ୟ କୃତ୍ୟ । ମାଣଓଷା ଓଡ଼ିଶାର କଳା, ସଂସ୍କୃତି, ଖାଦ୍ୟପେୟ, ଆନନ୍ଦ-ଉତ୍ସବ ତଥା ସରଳ ବିଶ୍ୱାସର ଏକ ବଳିଷ୍ଠ ପରମ୍ପରା । ଧନ-ସମ୍ପଦ-ଶ୍ରୀ



କେବଳ ଆନନ୍ଦ, ପବିତ୍ରଭାବ ଓ ପରିଚ୍ଛନ୍ନତା ଉପରେ ନିର୍ଭରଶୀଳ । ପଦ୍ମଫୁଲ ଏହି ପରିଚ୍ଛନ୍ନତା, ପବିତ୍ରତା ତଥା ପୂର୍ଣ୍ଣତାର ପ୍ରତୀକ । ଇତ୍ୟବସରରେ କଳାନିପୁଣା ଓଡ଼ିଆ ଘରର କୁଳବଧୂ ତା'ର ମନର ସମସ୍ତ କଳ୍ପନା ଓ ହାତର କଳାକୌଶଳକୁ ରୂପ ପ୍ରଦାନ କରି ଖଳାବାଡ଼ିରୁ ବାଡ଼ିଦୁଆର ପର୍ଯ୍ୟନ୍ତ ଓ ଦାଣ୍ଡଦୁଆରଠାରୁ ଉପାସନା ପ୍ରକୋଷ୍ଠ ପର୍ଯ୍ୟନ୍ତ ଆଠ ପାଖୁଡ଼ିଆ, ଷୋହଳ ପାଖୁଡ଼ିଆ ଓ ଚଉଷଠି ପାଖୁଡ଼ିଆ ପଦ୍ମ ତଥା ଧାଡ଼ିକି ଧାଡ଼ି ଯୁଗଳ ଲକ୍ଷ୍ମୀପାଦ ଚିତା ଲେଖି ପଦ୍ମାଳୟାଙ୍କ ଶୁଭାଗମନ ନିମିତ୍ତ ସ୍ୱାଗତିକା ରଚନା କରେ । ସତେଯେପରି ପଦ୍ମଫୁଲ ଉପରେ ପାଦ ଥାପି ଥାପି ଲକ୍ଷ୍ମୀ ଠାକୁରାଣୀ ଉପାସନା ଗୃହକୁ ବିଜେ କରିଥାଆନ୍ତି ।

କେବଳ ସେତିକି ନୁହେଁ, ପତଳା ପିଠଉରେ ବୁଡ଼ାଯାଇଥିବା ଧଳା ସରୁକନା ଖଣ୍ଡିକରୁ ଓଡ଼ିଆ ଲଳନାର ପାପୁଲି ମଧ୍ୟରୁ ଅଙ୍ଗୁଳି ମାଧ୍ୟମରେ ପିଠଉ ଧାରା ସଙ୍ଗେ ତା'ର ସରଳ ଶିଳ୍ପୀମାନସର ତରଳ କଳ୍ପନା ସହିତ ନିବିଡ଼ ଅନୁଭୂତି ଚାହିଦା ମୁତାବକ ନିଗିଡ଼ିଆସି ଭୂମି ଉପରେ ବିଭିନ୍ନ ପ୍ରତୀକଧର୍ମୀ ଚିତ୍ରର ରୂପ ନେଇଥାଏ । ଓଡ଼ିଆଣୀ ସାଧାରଣତଃ ଏହି ପ୍ରକ୍ରିୟାରେ ଚଟାଣ ଉପରେ ଶଙ୍ଖ-ଚକ୍ର-ଗଦା-ପଦ୍ମ, ଛତ୍ରୀ, ତ୍ରାସ, ଆଢ଼େଣି, ଆଳଟ, ଚାମର, ଘଟକଳସୀ, ଦଧିନଉତି, ନୀଳଚକ୍ର, ହସ୍ତୀ, ଆମ୍ବକଷି, ପ୍ରଦୀପ, ସ୍ୱସ୍ତିକ ଚିହ୍ନ ଓ ଓଁକାର ଅଙ୍କନ କରିବା ସହିତ ବୁଢ଼ାଆଙ୍ଗୁଠି ଟିପରେ କଉଡ଼ି ଚିତା ମାଧ୍ୟମରେ ଫୁଲଡାଳି, ସାଧାଡାଳି ଚିତ୍ରଣ କରିଥାଏ । ତତ୍‌ସହିତ ମଝି ତିନିଆଙ୍ଗୁଠି ଟିପ ସାହାଯ୍ୟରେ ବେଙ୍ଗେଇ ଝୋଟି (ଛୋଟ ବେଙ୍ଗ ଆକୃତିର) ଅଙ୍କନ କରିଆରେ ରୁଖା, କଦଳୀଗଛ, ପୂର୍ଣ୍ଣକୁମ୍ଭ ସର୍ବୋପରି ସମ୍ପଦର ପ୍ରାଚୁର୍ଯ୍ୟଦ୍ୟୋତକ ରୂପାର ମେଢ଼ ଚିତ୍ରରେ ସମଗ୍ର କାନ୍ଥ ଆଚ୍ଛାଦନ ପାଇଁ ସଫଳ ପ୍ରୟନ୍ କରିଥାଏ । ଏହି ଚିତ୍ରଣ ପ୍ରକ୍ରିୟା ମଧ୍ୟ ମାଣଓଷା ଗୁରୁବାର ଦିନ ସକାଳକୁ ଅବ୍ୟାହତ ରହିଥାଏ । 'ଲକ୍ଷ୍ମୀପୁରାଣ'ରେ ପୀତାମ୍ବର ଦାସ ଏହି ପରିପ୍ରେକ୍ଷୀରେ କହିଛନ୍ତି ଯେ-

''ଅରୁଆଚାଉଳ ଆଣି ପିଠଉ ବାଟିବ<br>
ଲକ୍ଷ୍ମୀଦେବୀ ପାଦପଦ୍ମ ଚିତା ଯେ କାଟିବ ।<br>
ନୂଆମାଣ ଗୋଟିଏ ଯତନେ ଅଣାଇ<br>
ଧୋଇଧାଇ ଦେବ ତାକୁ ଖରାରେ ଶୁଖାଇ ।<br>
ଅରୁଆଚାଉଳ ବାଟି ଦେବ ତହିଁ ଚିତା<br>
ଚିତ୍ର ବିଚିତ୍ରରେ ତାକୁ କରିବ ଶୋଭିତା ।''

ପୂର୍ବୋଦ୍ଦିଷ୍ଟ ମାଣ ଓ ପୂଜାଖଟୁଲୀ ଚିତ୍ରଣ କରିସାରିବା ପରେ ଶସ୍ୟଲକ୍ଷ୍ମୀଙ୍କ ବନ୍ଦନା ନିମିତ୍ତ ଓଡ଼ିଆ ଗୃହିଣୀ ପୂଜାର ଆହ୍ୱାନରେ କୋଠିଚିତା ଆଙ୍କିବା ସଙ୍ଗେ ସଙ୍ଗେ ଗୃହ, ଅଙ୍ଗନ, ଚତ୍ୱର, ଅମାର ଘର, ଭଣ୍ଡାର ଘର, ରୋଷେଇ ଘର ସର୍ବତ୍ର ଆଙ୍ଗୁଠିମାନଙ୍କ ସାହାଯ୍ୟରେ କାନ୍ଥରେ ପିଠଉ ଛିଞ୍ଚି ଧାନସୀସା, ଧାନମେଣ୍ଟି ଓ କଳେଇ ଗଦାରୂପକ ଶସ୍ୟ ସମ୍ଭାରର ଛଳନା ଭରିଦିଏ । ଏତାଦୃଶ ଝୋଟିଚିତା ଓଡ଼ିଶାର କୃଷିକୈନ୍ଦ୍ରିକ ସଂସ୍କୃତିର ପରିଚାୟକ । ଏହି ଚିତା ହେଉଛି ପିଠଉର କବିତା ତଥା ପଲ୍ଲୀର କଳା ।

କାରଣ ଏହା ପଲ୍ଲୀର କୁଟୀରମାନଙ୍କୁ ଏକ ଏକ ପ୍ରଜ୍ଞାପିତ ଚିତ୍ରଶାଳାରେ ପରିଣତ କରିଥାଏ ।

ବିବାହ ଓ ବ୍ରତୋପନୟନ ଆମର ଏକ ଏକ ସାମାଜିକ ବ୍ୟବସ୍ଥା । ଧର୍ମପ୍ରାଣ ଓଡ଼ିଆର ସାଂସ୍କୃତିକ ଜୀବନ ସର୍ବଦା ଉତ୍ସବ ମୁଖରିତ । ଓଡ଼ିଆ ପରିବାରରେ ବିବାହ–ବ୍ରତ–ପାର୍ବଣ ପ୍ରଭୃତି ଉତ୍ସବାନୁଷ୍ଠାନରେ ଝୋଟି ଅଙ୍କନ ଏକ ଅପରିହାର୍ଯ୍ୟ ସାମାଜିକ ବିଧି । ଓଡ଼ିଶାର ଯାବତୀୟ ମାଙ୍ଗଳିକ କାର୍ଯ୍ୟରେ ପୁରପଲ୍ଲୀର ପର୍ଣ୍ଣକୁଟୀରଠାରୁ ସହରର ଅଟ୍ଟାଳିକା ପର୍ଯ୍ୟନ୍ତ ସର୍ବତ୍ର ଓଡ଼ିଆଣୀର ନିପୁଣ ହସ୍ତର ଝୋଟିରେ ସମୁଜ୍ଜ୍ୱଳ ହୋଇଉଠେ । ବିବାହ ସମୟରେ ଓଡ଼ିଆଣୀ ଝୋଟିଚିତାରେ ବେଦୀ ମଣ୍ଡନ କରି ସ୍ୱୀୟ କଳାଜ୍ଞାନର ପରାକାଷ୍ଠା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ବରକନ୍ୟାଙ୍କ ମଙ୍ଗୁଳାଘର, ବାଡୁଅପାଣି ଗାଧୁଆ ମଣ୍ଡପ, ପିଢ଼ା ଇତ୍ୟାଦି ଚିତ୍ରଣ କରିଥାଏ । ବର ପାଲିଙ୍କି, କନ୍ୟା ସବାରିରେ ଝୋଟି ଆଙ୍କିବା ସଙ୍ଗେ ସଙ୍ଗେ ଘରର କାନ୍ଥରେ ଗଉଡ଼ ବାହୁଥିବା ସବାରି, ପାଲିଙ୍କି, ଭାରୁଆ, ବାଜାବାଲା, କାହାଳିଆ, ଶଙ୍ଖୁଆ ଇତ୍ୟାଦି ଚିତ୍ର ଅଙ୍କନ କରିଥାଏ ।



ଗୃହର ପ୍ରବେଶ ପଥର ଉଭୟ ପାର୍ଶ୍ୱସ୍ଥ କାନ୍ଥରେ ଫଳନ୍ତି କଦଳୀଗଛ, ପୂର୍ଣ୍ଣକୁମ୍ଭ, ଶଙ୍ଖ–ମହୁରୀ, ପ୍ରଦୀପ, ସ୍ୱସ୍ତିକ ଚିହ୍ନ, ଯୋଡ଼ିମାଛ, ପ୍ରଜାପତି, ଫୁଲଗଛ, ଲତାଯୁକ୍ତ ଫୁଲ, ଶୁଆ, ମୟୂର, ଗାଈ, ନାରିକେଳ, ପୂର୍ଣ୍ଣକୁମ୍ଭ ଧାରଣ କରିଥିବା ସଖୀ, ଶଙ୍ଖ ବାଦନରତା ରମଣୀ, ବିବାହ ସମୟର ବରକନ୍ୟାଙ୍କ ହାତଗଣ୍ଠିର ଚିତ୍ର ପ୍ରଭୃତି ଶୁଭ ସଙ୍କେତ ଅଙ୍କନ କରିଥାଏ । ପୁରପଲ୍ଲୀରେ ମାଟିକାନ୍ଥରେ ଗେରୁଆ ଆସ୍ତରଣ ଦେଇ ଅରୁଆ ଚାଉଳବଟା ପିଠଉରେ ଓ ଚୂନଲିପା କାନ୍ଥରେ ବିଭିନ୍ନ ରଙ୍ଗରେ ଏହି ଚିତ୍ରାବଳୀ ଅଙ୍କନ କରାଯାଏ । ପୁନଶ୍ଚ ପୁଆଣୀ ଓ ଝିଅ ଶଙ୍ଖୁଳା ସମୟରେ ପିଠଉ ସାହାଯ୍ୟରେ ଭାରହାଣ୍ଡି ମଧ୍ୟ ଚିତ୍ରଣ କରାଯାଇଥାଏ । ସମୟ ଅଭାବରୁ ଯେ କାନ୍ଥରେ ଝୋଟି ଚିତ୍ରଣ କରିପାରେ ନାହିଁ, ସେ କଦଳୀ ବାହୁଙ୍ଗାକୁ ପିଠଉରେ ବୁଡ଼ାଇ ତାହାକୁ କାନ୍ଥରେ ବାଡ଼େଇ ସୁନ୍ଦର କଦମ୍ବଫୁଲର ଚିତା ରଚନା କରିଥାଏ ।

ଓଡ଼ିଶାର ପୁରପଲ୍ଲୀରେ ପ୍ରତ୍ୟହ ରୋଷେଇ ପୂର୍ବରୁ ଗୋବରରେ ଚୂଲି ଲିପି ପିଠଉରେ ଚିତା ଆଙ୍କିବା ଓଡ଼ିଆଣୀର ପ୍ରାତ୍ୟହିକ କର୍ମ ପରିସରଭୁକ୍ତ ଅଟେ । ସମ୍ପ୍ରତି ସହରରେ ବାସ କରୁଥିବା ଆଧୁନିକ ମାନବ ହିଟର, ଷ୍ଟୋଭ୍ ଓ ଗ୍ୟାସ୍ ଚୂଲା ବ୍ୟବହାର କରିବା ଫଳରେ ଓଡ଼ିଆଣୀ କ୍ରମଶଃ ଏହି ଚିତା ପରମ୍ପରାକୁ ଭୁଲିଯିବାକୁ ବସିଲାଣି । ସେହିପରି ପ୍ରତି ବୁଧବାର ରାତ୍ରିରେ ଆଗାମୀ ଗୁରୁବାର ଉପଲକ୍ଷେ ନିଦ୍ରା ଗମନ ପୂର୍ବରୁ ଗ୍ରାମାଞ୍ଚଳର ଓଡ଼ିଆଣୀ ଚୂଲି, ଡେଙ୍ଗେଡ଼ା ଓ ପ୍ରତି ଘରର ଦ୍ୱାରବନ୍ଧ ଲିପି ପିଠଉରେ ଝୋଟିଚିତା ପକାଇଥାଏ ।

ବିଭିନ୍ନ ପର୍ବପର୍ବାଣିରେ ଓଡ଼ିଆଣୀ କାନ୍ଥରେ ନାଗବନ୍ଧ, ମତ୍ସ୍ୟବନ୍ଧ, ମୀନକେତନ, ନବଗୁଞ୍ଜର, କାମଗୁଞ୍ଜର ଦ୍ୱାରବନ୍ଧ ଓ କବାଟରେ ଦଶଦିଗପାଳ, ନବଗ୍ରହ, ଘଣ୍ଟାକର୍ଣ୍ଣ, ଭୈରବ ପ୍ରଭୃତି ଆଭାସ ଚିତ୍ର ଅଙ୍କନ କରି ବ୍ୟାଧି ତଥା ଦୁଷ୍ଟଗ୍ରହ ଉପଦ୍ରବରୁ ରକ୍ଷା ପାଇବା ନିମିତ୍ତ ପୂଜା କରିଥାଏ । ବିଶେଷତଃ ଖୁଦୁରୁକୁଣୀ ଓଷାରେ ଉପାସନା ପୀଠରେ ବୋଇତ, ମଙ୍ଗଳା, ତଅପୋଇ ତଥା ଘରମଣି ଛେଳିର ଅଙ୍କିତ ଚିତ୍ର ଗ୍ରାମ୍ୟ ଅନୂଢ଼ା ବାଳିକାମାନଙ୍କର ଚିତ୍ର ପ୍ରଶିକ୍ଷଣର ପ୍ରାରମ୍ଭିକ ପ୍ରୟାସ ଅଟେ ।

ବୁଧେଇ ଓଷାରେ କାନ୍ଥରେ, ଦକ୍ଷିଣାୟନ ସଂକ୍ରାନ୍ତିରେ ଦକ୍ଷିଣାଭିମୁଖୀ ଦ୍ୱାରର କବାଟରେ, ମହାଳୟା ତଥା ଦୀପାବଳି ଅମାବାସ୍ୟାରେ ଗୃହ ଅଙ୍ଗନକୁ ଫୁଲ, ଫଳ, ଲତା, ଫୁଲଗୁଚ୍ଛ, ଫୁଲକଢ଼ି, ବିଭିନ୍ନ ଶସ୍ୟ, କାପ୍ତାକାପ୍ତି, ବଗବଗୁଲୀ, ଓଲଟ ଶୁଆ, ମୟୂର, ହାତୀ, ଘୋଡ଼ା, ପାଦପଦ୍ମ, ଓଲଟ ପଦ୍ମ ଓ ଯୋଡ଼ିମାଛ ପ୍ରଭୃତି ଚିତା ସ୍ୱତନ୍ତ୍ର ରୀତିରେ ଅଙ୍କନ କରି ସ୍ୱୀୟ କଳାପାଟବତାର ପରିଚୟ ଦେଇଥାଆନ୍ତି । ସର୍ବୋପରି ଓଡ଼ିଆ ଝିଅ ବୋହୂଙ୍କ ଆଲିମ୍ପନ କଳାରେ ପିଠଉଧାରା ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓଡ଼ିଶୀ ଚିତ୍ରକଳାର ଏକ ମହାର୍ଘ ବିଭବ ।

ଓଡ଼ିଶାରେ ମୁରୁଜ ଚିତାର ଏକ ବଳିଷ୍ଠ ପରମ୍ପରା ରହିଅଛି । ଓଡ଼ିଆ ସଂସ୍କୃତିର ପ୍ରାଣପୁରୁଷ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ ପ୍ରାତ୍ୟହିକ ଧୂପରେ ମୁରୁଜରେ ଚିତା ଅଙ୍କନ କରି ତାହା ଉପରେ ନୈବେଦ୍ୟ ଅର୍ପଣ କରାଯାଇଥାଏ । ବୈଜ୍ଞାନିକମାନଙ୍କ ମତରେ, ମୁରୁଜରେ ଠାଆକରି ତଦୁପରି ଖାଦ୍ୟଦ୍ରବ୍ୟ ପରିବେଷଣ କଲେ, ତାହା ଜୀବାଣୁମୁକ୍ତ ରହେ । ପୁନଶ୍ଚ ଶ୍ରୀମନ୍ଦିରରେ ପ୍ରତ୍ୟହ ରୋଷ ପୂର୍ବରୁ ରୋଷଚୁଲି, ଧୋପଖାଳିଆ ଓ ଗୋବରପାଣି ଦ୍ୱାରା ପରିଷ୍କୃତ ହୋଇ ପଞ୍ଚୁବର୍ଣ୍ଣ ମୁରୁଜରେ ଚିତା ଦିଆଯାଇଥାଏ । ଶ୍ରୀମନ୍ଦିରରେ ନିତ୍ୟ ଆଚରିତ ବିଧିକୁ ଅନୁସରଣ କରି ଓଡ଼ିଆଣୀ ରାନ୍ଧିବା ପୂର୍ବରୁ ଝୋଟି ବିକଳ୍ପରେ ଚୁଲିଝିଙ୍କାରେ ମୁରୁଜ ଚିତା ପକାଯାଇଥାଏ । ଏତଦ୍‌ବ୍ୟତୀତ ପ୍ରତି ବୁଧବାର ରାତ୍ରିରେ ଦିନର ସମସ୍ତ କର୍ମର ପରିସମାପ୍ତିରେ ରୋଷେଇ ଘର ଓ ହାଣ୍ଡିଶାଳ ଗୋମୟରେ ଲିପି ଚୁଲି, ଟେଙ୍ଗେଡ଼ା, ଈଶାଣପୀଠ ପ୍ରଭୃତି ମୁରୁଜ ଚିତାରେ ସୁଶୋଭନ କରାଯାଇଥାଏ ।

ପ୍ରତ୍ୟେକ ଗୁରୁବାର ଦିନ ଦ୍ୱାରବନ୍ଧକୁ ଧୋଇ କିମ୍ବା ଗୋମୟରେ ଲିପି ତଦୁପରି ମୁରୁଜଚିତା ଦିଆଯାଇଥାଏ । ଅନେକଙ୍କ ମତରେ, ସମାଜରେ ଯେତେବେଳେ ତନ୍ତ୍ରର ପ୍ରାବଲ୍ୟ ବୃଦ୍ଧି ପାଇଲା, ତାହାର ପ୍ରଭାବରେ ସେତେବେଳେ ଶ୍ରୀମନ୍ଦିର ସେବାନୀତିରେ ମୁରୁଜଚିତାର ପ୍ରୟୋଗ ପରିଦୃଷ୍ଟ ହେଲା । ବେଦ ପ୍ରଭାବରେ ହେଉ ଅଥବା ତନ୍ତ୍ର ପ୍ରୟୋଗରେ ହେଉ ଶ୍ରୀମନ୍ଦିରର ମୁରୁଜ ଚିତା ସମ୍ପ୍ରତି ଶ୍ରୀମନ୍ଦିର ସୀମା ଅତିକ୍ରମ କରି ଆସି ପ୍ରତି ଓଡ଼ିଆ ଘରେ ପ୍ରତ୍ୟେକ ମଙ୍ଗଳ ଉତ୍ସବର ଏକ ମୁଖ୍ୟକର୍ମ ରୂପେ ଅନ୍ତର୍ଭୁକ୍ତ ହୋଇଅଛି । ଓଡ଼ିଆ ଘରର ବିବାହ, ବ୍ରତ, ସଂକ୍ରାନ୍ତି ହୋମ, ବାର୍ଷିକ ଶ୍ରାଦ୍ଧ, ଗୃହପ୍ରତିଷ୍ଠା ଇତ୍ୟାଦି ସାମାଜିକ ଅନୁଷ୍ଠାନରେ ପୂର୍ଣ୍ଣକୁମ୍ଭ ସ୍ଥାପନ ନିମିତ୍ତ ମୁରୁଜଚିତା ଅଙ୍କନ ଏକ ଅପରିହାର୍ଯ୍ୟ ପ୍ରାରମ୍ଭିକ କର୍ମ ଅଟେ । ପୁନଶ୍ଚ କାର୍ତ୍ତିକ ମାସରେ ତୁଳସୀଚଉରା ମୂଳେ, ଆକାଶଦୀପ ସଂଯୁକ୍ତ ବାଉଁଶ ପାଦଦେଶରେ ମୁରୁଜ ସାହାଯ୍ୟରେ ଚତୁର୍ଦ୍ଧାମୂର୍ତ୍ତି, ଚତୁରାୟୁଧ, ଗରୁଡ଼ ପ୍ରଭୃତି ଚିତା ଅଙ୍କିତ ହୋଇଥାଏ । ବିଭିନ୍ନ ଓଷାବ୍ରତରେ ପୂଜାମଣ୍ଡପ, ଗୃହଅଙ୍ଗନ ପ୍ରଭୃତି ଲତା, ପତ୍ର, ଫୁଲ, ଫଳ, ପଶୁ, ପକ୍ଷୀର ମୁରୁଜଚିତାରେ ପରିପୂର୍ଣ୍ଣ ହୋଇଉଠେ । ଏହି ମୁରୁଜଚିତା ମଧ୍ୟଦେଇ ଯୁବତୀ ମନର ସଂଗୁପ୍ତ କଳାତ୍ମକ ଅଭିବ୍ୟକ୍ତି ପ୍ରତିବିମ୍ବିତ ହୋଇଥାଏ । ବାସ୍ତବରେ ମନର ଭାବ ସମ୍ପ୍ରସାରଣ ଦ୍ୱାରା କଳାର ବିକାଶ ସାଧିତ ହୋଇଥାଏ । ସୃଜନୀଶକ୍ତି ପ୍ରତି ଓଡ଼ିଆଣୀର ଲୋମକୂପରେ ଭରପୂର । ମୁରୁଜ ସାହାଯ୍ୟରେ ଚିତ୍ରିତ ସାହିତ୍ୟ ସୃଷ୍ଟି କରି ସେ ନିଜକୁ ଏକ ସାର୍ଥକ ଚିତ୍ରଶିଳ୍ପୀ ରୂପେ ପରିଚିତ କରାଇଥାଏ ।

ଓଡ଼ିଶାର ପ୍ରତ୍ୟେକ ଧର୍ମ ସଂସ୍କୃତି, ଓଷାବ୍ରତ, ପରମ୍ପରା ପଶ୍ଚାତ୍‌ରେ ଜନଗଣର ହିତ ତଥା ଜଗତ କଲ୍ୟାଣକାରୀ ମହତ ଉଦ୍ଦେଶ୍ୟ ନିହିତ ଥାଏ ।

ମହାଲକ୍ଷ୍ମୀଙ୍କର ବ୍ରତ ଦ୍ୱାରା ଐଶ୍ୱର୍ଯ୍ୟ ଏବଂ ମାଧୁର୍ଯ୍ୟ ଦ୍ୱାରା ବିଶ୍ୱରେ ସୁଖ, ଶାନ୍ତି ଓ ପୂର୍ଣ୍ଣତା ଲାଭ ହୋଇଥାଏ ।

'ଆଶ୍ରମ', ଶ୍ରୀବିହାର, କଟକ-୮



# ସମୟ ବଡ଼ ବଳବାନ୍

ଅନସୂୟା ମିଶ୍ର

ସମୟକୁ ନେଇ ଅନେକ କଳ୍ପନାଜଳ୍ପନା ସହ ଅନେକ ଭାବନା ମଣିଷକୁ ସର୍ବଦା ଜାଗ୍ରତ କରିଦିଏ । ଠିକ୍ ସମୟରେ ଠିକ୍ ପଦକ୍ଷେପ ନେବା ସହ ଉଚିତ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା କ୍ୱଚିତ୍ ଲୋକଙ୍କ ପାଖରେ ଦେଖାଯାଏ । ମାତ୍ର ବିଡ଼ମ୍ବନାର ବିଷୟ ହେଉଛି ଯେ ଏବେ ଘଣ୍ଟା ବା ସମୟ ମାପକଯନ୍ତ୍ର ଅଧିକାଂଶ ବ୍ୟକ୍ତିଙ୍କ ପାଖରେ ଛାଇ ଭଳି ରହିପାରିଛି । ଯାହା ଆମକୁ କେବଳ ଚଳଚଞ୍ଚଳ କରୁନାହିଁ, ବରଂ ବୟସକୁ ସୂଚାଇ ଦେଉଛି, ଚେତାଇ ଦେଉଛି, ପୃଥିବୀ ପୃଷ୍ଠରେ ନିଜକୁ ଦୃଢ଼ କରିବା ପାଇଁ କେବଳ ବଳ ନୁହେଁ, ବରଂ ବୁଦ୍ଧି ସହ ବିବେକ ମଧ୍ୟ ପ୍ରେରଣା ଯୋଗାଇଥାଏ । ଇତିହାସକୁ ପଢ଼ିବା, ବୁଝିବା ସହିତ ସେ ସମୟରେ ରହିଯାଇଥିବା ତ୍ରୁଟି ବିଚ୍ୟୁତିକୁ ସଂଶୋଧନ କରି ଆଗକୁ ବଢ଼ିବା ପ୍ରତ୍ୟେକ ବୁଦ୍ଧିମାନ୍ ବ୍ୟକ୍ତିର ବ୍ୟକ୍ତିତ୍ୱ ହିଁ ଏହାକୁ ସୂଚାଇଥାଏ । ଏହି ଭଳି ବିଦ୍ୱାନ ବ୍ୟକ୍ତିବିଶେଷ କେତେବେଳେ ଦାର୍ଶନିକ ସାଜି ସଂସାରର ପଥ ପ୍ରଦର୍ଶକ ହୋଇଥାଆନ୍ତି ତ ଆଉ କେତେକ ଶାସକ ସାଜି ନିଜର ପ୍ରଭୁତ୍ୱକୁ ବିସ୍ତାର କରିବା ସହିତ ସମାଜକୁ ଶୃଙ୍ଖଳିତ କରିବା ପାଇଁ ଅନେକ ନୀତିନିୟମକୁ ପ୍ରଣୟନ କରିଥାଆନ୍ତି । ଆଶା ରଖନ୍ତି ତାଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିବା ଶାସନ ବ୍ୟବସ୍ଥା ବା ନିୟମ ଜନସାଧାରଣଙ୍କର ଧେୟ ହେବା ସହିତ ସ୍ଥାୟୀ ହେଉ । ବିତର୍କର ଊର୍ଦ୍ଧ୍ୱରେ ରହି ଗ୍ରହଣୀୟ ହେଉ । ମାତ୍ର ଗତିଶୀଳ ସମୟର ଆହ୍ୱାନରେ ସଂସାରରେ କୌଣସି ଅବସ୍ଥା କିମ୍ବା ବ୍ୟବସ୍ଥା ଚିରସ୍ଥାୟୀ ହୋଇ ରହେନାହିଁ । ଏହା ହିଁ ସତ୍ୟ । ସମୟ ସତେଯେପରି ନିମନ୍ତ୍ରଣ କରି ଡାକି ଆଣେ ପରିବର୍ତ୍ତନ ସହ ସଂସ୍କାର, ନୂତନତ୍ୱ, ପ୍ରଗତି, ସଂସ୍କୃତି ଏବଂ ନୂତନ ଧର୍ମକୁ । କାରଣ ଶାସନ ବିନା ମନୁଷ୍ୟ ଜାତିର ଅଗ୍ରଗତି ବା ବିକାଶ ଧାରା ଅସମ୍ଭବ ହୋଇପଡ଼େ । ଏପରିକି ନିଜର ମନୁଷ୍ୟତ୍ୱକୁ ମଧ୍ୟ ଭୁଲିଯାଏ । ମାତ୍ର ଦୁଃଖର କଥା ହେଲା, ଅନେକ ଚିନ୍ତାଶୀଳ ବ୍ୟକ୍ତି ଆଧୁନିକ ମଣିଷକୁ ମାନବିକତା ଓ ପଶୁତ୍ୱର ବିସ୍ମୟକର ମିଳନ ବୋଲି ଆଖ୍ୟା ଦେଇଛନ୍ତି । କାରଣ ଅନେକ ଶାନ୍ତିପ୍ରିୟ ବ୍ୟକ୍ତି ପ୍ରକୃତି ମଧ୍ୟରେ ସତ୍ୟ, ଶିବ, ସୁନ୍ଦରଙ୍କୁ ଖୋଜି ପାଇଲାବେଳେ ଅନ୍ୟ କେତେକ ଭୂପୃଷ୍ଠରେ ସଭ୍ୟତା ଓ ସଂସ୍କୃତିର ପ୍ରତିଷ୍ଠା ପାଇଁ ବ୍ୟଗ୍ର ହୋଇଉଠନ୍ତି । ଫଳରେ ଆରମ୍ଭ ହୋଇଯାଏ ମତାନ୍ତର ସହିତ ମନାନ୍ତର ଏବଂ ପରେ ପରେ ଯୁଦ୍ଧ ।

ଏବେ ପୁଣି ବିଜ୍ଞାନର ଯୁଗ । ପ୍ରତି କ୍ଷେତ୍ରରେ ବିଜ୍ଞାନ ତା'ର ଚମତ୍କାରିତାକୁ ଦେଖାଇ ଚାଲିଛି । କେତେବେଳେ ମଣିଷକୁ ଅଜର, ଅମର କରିବାର ପ୍ରୟାସରେ ମଗ୍ନ ହୋଇଯାଉଛି ତ ଆଉ କେତେବେଳେ ପ୍ରକୃତି ଉପରେ ନିଜର ଆଧିପତ୍ୟକୁ ଜାହିର କରିବାକୁ ଯାଇ ଜଳ, ସ୍ଥଳ, ଆକାଶ ସବୁଆଡ଼େ ମଣିଷର ପଦଧ୍ୱନି ଶୁଭୁଛି । ବିଜ୍ଞାନର ପ୍ରଭାବ ଯୋଗୁଁ ଆଧୁନିକ ମାନବ ଏବେ ଶତାୟୁ ହେବାକୁ ଯାଉଛି । ପୃଥିବୀ ପୃଷ୍ଠର ଲୋକସଂଖ୍ୟା ଆଠଶହ କୋଟିକୁ ପାର କରିସାରିଲାଣି ।

ତଥାପି ମନରେ ଭୟ ଆସୁଛି ବିପରୀତ ବୁଦ୍ଧି ପାଇଁ । ଅର୍ଥାତ୍ 'ବିନାଶ କାଳେ ବିପରୀତ ବୁଦ୍ଧି'ର ପ୍ରଭାବ ଧୀରେ ଧୀରେ ଅନୁଭୂତ ହେଉଛି । କାରଣ ପୃଥିବୀ ପୃଷ୍ଠର କେତେଜଣ କୁଟିଳ, ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିମାନଙ୍କର କଳୁଷିତ ମନୋଭାବ ଯୋଗୁଁ ବିଜ୍ଞାନକୁ ମାନବ ସଭ୍ୟତା ପାଇଁ ଅଭିଶାପରେ ରୂପାନ୍ତରିତ କରିବାକୁ ପଛାଉନାହାନ୍ତି । ବିଜ୍ଞାନର ପ୍ରଗତି ଜୀବନରେ ଶାନ୍ତି ସମୃଦ୍ଧି ଆଣିବା ପରିବର୍ତ୍ତେ ଏବେ ପ୍ରାକୃତିକ ନିୟମର ବିପର୍ଯ୍ୟୟ, ଋତୁଚକ୍ରରେ ଅନିୟମିତତା, ପାଣିପାଗ ଓ ଜଳବାୟୁରେ ଅସ୍ଥିରତା ସହିତ ପରମାଣୁ ଅସ୍ତ୍ରର ଭୟ, ନିରୀହ ଜନତାଙ୍କୁ ସର୍ବଦା ଭୟଭୀତ କରି ରଖୁଛି । ଆମେ ଯେ ସଭ୍ୟ, ଶିକ୍ଷିତ ହେଉଛୁ ଏହାକୁ ଚିନ୍ତା କରିବାକୁ ସତେଯେପରି କାହାରି ପାଖରେ ଆଉ ସମୟ ନାହିଁ ।

ପୁରାଣ ଶାସ୍ତ୍ରରୁ ଆମେ ଅର୍ଥାତ୍ ଭାରତୀୟମାନେ ଅନେକ କିଛି ଶିଖିଛୁ । ରାମାୟଣରେ ବର୍ଣ୍ଣିତ ସ୍ୱର୍ଣ୍ଣମୟୀ ଲଙ୍କାପୁରୀର ଅଧୀଶ୍ୱର ପରମ ଜ୍ଞାନୀ, ନୈଷ୍ଠିକ ବ୍ରାହ୍ମଣ ରାବଣଙ୍କ ଦ୍ୱାରା ହୋଇଥିବା ଦୁର୍ବଳ ଉପରେ ସବଳର ଅତ୍ୟାଚାର ସହ ତା'ର ଭୟାବହ ପରିଣାମ ସମ୍ପର୍କରେ ଆମର ସମ୍ୟକ୍ ଜ୍ଞାନ ଅଛି । ରାବଣ ମହାନ୍ ତପସ୍ୱୀ, ଶ୍ରେଷ୍ଠ ବ୍ରାହ୍ମଣ ବିଶ୍ରବା ଏବଂ ମାତା ରାଜକୁମାରୀ କୈକଶୀଙ୍କ ପୁତ୍ର । ସେଥିପାଇଁ ରାବଣ ମହାଜ୍ଞାନୀ ହୋଇପାରିଲେ । ମାତ୍ର ନିଜ ଚତୁଃପାର୍ଶ୍ୱରେ ଥିବା ସାଧାରଣ ପ୍ରଜା, ସୈନ୍ୟସାମନ୍ତ, ଏପରିକି ନିଜ ପରିବାରର ଅଧିକାଂଶ ବ୍ୟକ୍ତିଙ୍କ ମଧ୍ୟରୁ ଅଜ୍ଞତା ଦୂର କରିପାରିନଥିଲେ । ଫଳରେ ଅଜ୍ଞତା ଭଳି ଅନ୍ଧକାର ଯୋଗୁଁ ପ୍ରଜାମାନେ ପଥଭ୍ରଷ୍ଟ ହେଉଥିଲେ । ସେମାନଙ୍କ ମଧ୍ୟରେ ଆସୁରିକ ପ୍ରବୃତ୍ତି ବୃଦ୍ଧି ପାଇଲା । ପ୍ରକୃତରେ ରାଷ୍ଟ୍ରର ଶାସକମାନେ ଯଦି ଅଜ୍ଞ ହେବେ, ସେମାନେ ଜନ ସମର୍ଥନ ପାଇଲେ ମଧ୍ୟ ନ୍ୟାୟ, ଅନ୍ୟାୟ ମଧ୍ୟରେ ଥିବା ପାର୍ଥକ୍ୟକୁ ଦେଖିପାରିବେ ନାହିଁ, ସତ୍ୟ ଏବଂ ମିଥ୍ୟା ମଧ୍ୟରେ ଥିବା ପ୍ରଭେଦକୁ ଜାଣିପାରିବେ ନାହିଁ । ଯଦି ରାଷ୍ଟ୍ରର ନାଗରିକମାନେ ମୂର୍ଖ ହେବେ, ତେବେ ସେମାନେ ବିନା ଦ୍ୱିଧାରେ ଅନ୍ୟାୟ କରିବେ ଏବଂ ଦରକାର ପଡ଼ିଲେ ଅନ୍ୟାୟକୁ ମଧ୍ୟ ସହ୍ୟ କରିବେ, ଯାହାଫଳରେ କି ପାପର ଭାରରେ ଶାସକଙ୍କ ସହ ପ୍ରଜାଗଣ ସମସ୍ତେ ମୂର୍ଖାମୀକୁ ଆପଣେଇ ନେଇ ଧ୍ୱଂସ ଆଡ଼କୁ ଗତି କରିବେ । ଯାହା ସ୍ୱର୍ଣ୍ଣନଗରୀ ଲଙ୍କାରେ ଘଟିଥିଲା । ଏହା କେବଳ ଭାରତୀୟଙ୍କ ପାଇଁ ନୁହେଁ ବରଂ ସମଗ୍ର ବିଶ୍ୱବାସୀଙ୍କ ପାଖରେ ଏହିଭଳି କଠୋର ସତ୍ୟକୁ ପ୍ରସାର କରୁଛି । ଅଜ୍ଞତା ବା ଅଶିକ୍ଷା ଗୋଟିଏ ରାଷ୍ଟ୍ରକୁ ଯେ ଧ୍ୱଂସ କରିଦେଇପାରେ ଏହା ହିଁ ସତ୍ୟ ଯୁଗର ବାର୍ତ୍ତା । ଠିକ୍ ସେହିଭଳି 'ବିନା ଯୁଦ୍ଧେ ନ ଦେବି ମୁଁ ସୂଚ୍ୟଗ୍ରେ ମେଦିନୀ' ଭଳି ବାକ୍ୟବାଣରେ ବା ଦମ୍ଭୋକ୍ତିକୁ ସଭାରେ କହିଥିବା ଅହଂକାରୀ ଦୁର୍ଯ୍ୟୋଧନର ଦର୍ପିତ ଶବ୍ଦ, ଶକୁନିର କପଟତାକୁ ବଳିଯାଇଥିଲା, ଦୁଃଶାସନର କ୍ରୂରତା, ଯାହା ଏକ ଅବଳା ନାରୀକୁ ସଭା ମଧ୍ୟରେ ବିବସ୍ତ୍ର କରିବାର ଆଜ୍ଞା, ଦୁଃସାହସରେ ପ୍ରକାଶ ପାଇଥିଲା । ସେଠାରେ ଉପସ୍ଥିତ ଥିବା ଜ୍ଞାନୀ, ଗୁଣୀ, ଅମିତ ଶକ୍ତିର ଅଧିକାରୀ ଗୁରୁଜନମାନଙ୍କର ନିରବତା ଗୋଟିଏ ଯୁଗକୁ ଧ୍ୱଂସାଭିମୁଖୀ କରିଦେଇଥିଲା । ଏହି ଧ୍ୱଂସ ପ୍ରକ୍ରିୟା ଏତେ ଭୟଙ୍କର ଥିଲା ଯେ, ସେଥିରେ ଉଭୟ ପକ୍ଷର ଧନଜୀବନ ହାନି ହେବା ସହିତ ଶାନ୍ତି ପାଇଁ ମଧ୍ୟସ୍ଥତା କରୁଥିବା ଶ୍ରୀକୃଷ୍ଣ ମଧ୍ୟ ଜଣେ ନାରୀଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇଥିଲେ । ତାଙ୍କ ସମ୍ମୁଖରେ ଯାଦବ କୂଳର ବିନାଶ ଘଟିଥିଲା । ଅପୂର୍ବ ସୁନ୍ଦର ସହ ଧନଧାନ୍ୟରେ ପୂର୍ଣ୍ଣ ଦ୍ୱାରିକାନଗରୀ ଆଡ଼କୁ ଜଳପ୍ରଳୟ ମାଡ଼ି ଆସିଥିଲା । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିର୍ମାଣ କରାଯାଇଥିବା ଦ୍ୱାରିକାନଗରୀ ସମୁଦ୍ର ଗର୍ଭରେ ସମ୍ପୂର୍ଣ୍ଣ ରୂପେ ଲୀନ ହୋଇଯାଇଥିଲା । ପୁରାଣ ଶାସ୍ତ୍ରର ଏହିଭଳି ଅନେକ ସତର୍କବାଣୀ ଆମକୁ ଠିକ୍ ମାର୍ଗ ଦେଖାଇବା ପାଇଁ ଉଦ୍ଦିଷ୍ଟ ଥିବାବେଳେ, ମହାତ୍ମା ଗାନ୍ଧୀଙ୍କର ସ୍ୱପ୍ନ ଥିଲା ଭାରତରେ ରାମରାଜ୍ୟ ପ୍ରତିଷ୍ଠା ହେବ । ଅର୍ଥାତ୍ ସମାଜରୁ ଅଜ୍ଞତା, କୁସଂସ୍କାର, ଜାତିଭେଦ ଭଳି ଅନେକ ବାଧାବିଘ୍ନ, ଯାହା ଦେଶର ପ୍ରଗତିକୁ ପଥରୋଧ କରୁଛି, ତାହା ନିଶ୍ଚୟ ଦୂର ହେବ ।

ଯୁବଗୋଷ୍ଠୀମାନେ ତେଜୀୟାନ୍, ବଳୀୟାନ୍, ସତ୍‌ସାହସୀ ହୁଅନ୍ତୁ । ସତ୍ୟକୁ ଅସ୍ତ୍ର ରୂପେ ଗ୍ରହଣ କରନ୍ତୁ । କାରଣ ସତ୍ୟ ହିଁ ଅମୋଘ ଅସ୍ତ୍ର ଏବଂ ସତ୍ୟର ପରାଜୟ ନାହିଁ । ଏହା ଥିଲା ସ୍ୱାମୀ ବିବେକାନନ୍ଦଙ୍କର ସ୍ୱପ୍ନ । ଏହିଭଳି ଅନେକ ଯୋଗଜନ୍ମା ଯୁଗସ୍ରଷ୍ଟା ଆମ ଦେଶ ସହ ପୃଥିବୀର କୋଣ ଅନୁକୋଣରେ ଜନ୍ମଗ୍ରହଣ କରିଛନ୍ତି । ସମାଜକୁ ସଂସ୍କାରିତ କରିବା ଏବଂ ସତ୍ୟର ପ୍ରୟୋଗ ପାଇଁ ନିଜ ଜୀବନକୁ ବଳିଦାନ ଦେଇଛନ୍ତି । ସମୟ ତାଙ୍କୁ ରକ୍ଷା କରିପାରିନାହିଁ କିନ୍ତୁ ପରବର୍ତ୍ତୀ କାଳରେ ସେମାନଙ୍କ ଅବର୍ତ୍ତମାନରେ ସାଧାରଣ ଜନତା ସେମାନଙ୍କୁ ଝୁରି ହେଉଛନ୍ତି । ମନେ ପକାଉଛନ୍ତି ତାଙ୍କର ଶ୍ରେଷ୍ଠତାକୁ, ବଳିଦାନକୁ । ସର୍ବୋପରି ସେମାନଙ୍କର ମହାନ୍ ଚିନ୍ତାଧାରା ସହ ପ୍ରଜ୍ଞାକୁ, ବାଗ୍ମୀତାକୁ । ଯାହାଫଳରେ କି ସେମାନେ ସମୟ ସ୍ରୋତର ପ୍ରତିକୂଳରେ ଗତିକରି ସମାଜକୁ ଏକ ଶାଶ୍ୱତ ଆଲୋକ ପ୍ରଦାନ କରୁଛନ୍ତି । ଯାହାକୁ ଦେଖିବା ଏବଂ ଦେଖାଇବାର ଦାୟିତ୍ୱ ଶାସକମାନଙ୍କ ପାଖରେ ରହିବା ଉଚିତ ।

ସମୟ ଅନୁସାରେ ଇତିହାସ ଲେଖାଯାଉଛି । ସେଥିରୁ ଆମେ କେତେଜଣ କ୍ରୂର ଶାସକଙ୍କ ବିଷୟରେ ପଢ଼ିଛୁ । ସେମାନେ ଶାନ୍ତିପ୍ରିୟ, ନିରୀହ ତଥା ସାଧାରଣ ଲୋକଙ୍କୁ ଭୟଭୀତ କରି ରଖିବାରେ ଆନନ୍ଦ ପାଇଥାଆନ୍ତି । ସେହିଭଳି ପୃଥିବୀ ପୃଷ୍ଠରେ ସଂଘଟିତ ହୋଇଥିବା ଅନେକ ଯୁଦ୍ଧ ମଧ୍ୟରୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା, ସେସମୟର ଲୋମହର୍ଷଣକାରୀ ଦୃଶ୍ୟ ସହ କେତୋଟି କାହାଣୀ ଲୋକଙ୍କ ମନରୁ ନ ଲିଭୁଣୁ, ଏବେକାର କେତେକ ବ୍ୟକ୍ତିବିଶେଷଙ୍କର ଯୁଦ୍ଧଖୋର ମନୋବୃତ୍ତି ପରମାଣୁ ବୋମାଠାରୁ ଆରମ୍ଭ କରି ଉଦ୍ୟାନ ବୋମା, ରାସାୟନିକ ଅସ୍ତ୍ରର ଭଣ୍ଡାର ବୃଦ୍ଧି ସହ ନୂତନ ଜ୍ଞାନକୌଶଳରେ ନିର୍ମାଣ କରାଯାଉଥିବା ଯୁଦ୍ଧାସ୍ତ୍ର, ଯୁଦ୍ଧଯାନର ସଂଖ୍ୟା ବୃଦ୍ଧି, ଆଉ ଏକ ମହାବିଲୁପ୍ତି ବା ବିଶ୍ୱଯୁଦ୍ଧକୁ ଡାକି ଆଣୁଛି ବୋଲି ଚିନ୍ତା କରିବାକୁ ଆମେ ବାଧ୍ୟ ହେଉଛୁ । ଯୁଦ୍ଧର ଘନଘଟା ମଧ୍ୟରେ ଆତଙ୍କବାଦର ଭୟ, ଅନେକ ଅବଳାଙ୍କ ସହିତ ଭବିଷ୍ୟତର କର୍ଣ୍ଣଧାର ବା ଶିଶୁମାନଙ୍କୁ ଅକଥନୀୟ ଅତ୍ୟାଚାରର ସମ୍ମୁଖୀନ ହେବାକୁ ପଡୁଛି । ତଥାପି କେତେଜଣ ହିତାକାଂକ୍ଷୀ ବ୍ୟକ୍ତିଙ୍କର ବୁଦ୍ଧିମତ୍ତା ହେଉ ବା କୂଟନୀତିର ପ୍ରଭାବ ଯୋଗୁଁ ହେଉ ଭୂପୃଷ୍ଠର ବିଚକ୍ଷଣ ଜୀବ, ଯାହାକୁ ଆମେ ଦେବତା ଏବଂ ଦାନବଙ୍କର ମିଶ୍ରଣ ବୋଲି ବିବେଚନା କରୁ ସେମାନଙ୍କର ବିଲୁପ୍ତି ପ୍ରକ୍ରିୟା ଏତେଶୀଘ୍ର ନ ହୋଇ ଆଉ କିଛି ସମୟ ଲାଗିପାରେ ବୋଲି ଆଶା କରାଯାଉଛି । ତଥାପି 'ସମୟ ବଡ଼ ବଳବାନ୍' ନ୍ୟାୟରେ ସମୟୋଚିତ ପଦକ୍ଷେପ ନ ନେଲେ ଧ୍ୱଂସ ଯେ ଅବଶ୍ୟମ୍ଭାବୀ, ଏହାକୁ ମନେରଖିବାକୁ ପଡ଼ିବ । ତା' ସହିତ ଆମକୁ ଧରିତ୍ରୀ ମାତାର ସେବା କରିବାକୁ ହେବ । ମାଟି, ପାଣି, ପବନ, ଜଙ୍ଗଲ ସହ ଜୈବବିବିଧତାକୁ ରକ୍ଷା କରିବାକୁ ହେବ । ଯାହା କେବଳ ମଣିଷରୂପୀ ଭଗବାନଙ୍କ ହାତରେ ହିଁ ନ୍ୟସ୍ତ ଅଛି । ଏହାକୁ ସ୍ମରଣ ରଖି ଉଚିତ ପଦକ୍ଷେପ ନେବାକୁ ହେବ । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ମାନବ ସମାଜରେ ମାନବିକତା ହିଁ ଏକ ନୂତନ ଯୁଗର ଭିତ୍ତି ସ୍ଥାପନ କରିପାରିବ ବୋଲି ଚିନ୍ତାଶୀଳ ବ୍ୟକ୍ତିମାନେ ମତବ୍ୟକ୍ତ କରୁଛନ୍ତି । ନଚେତ୍ ନିଜର କୃତକର୍ମ ପାଇଁ ଆଧୁନିକ ମାନବ ଇତିହାସ ପାଲଟିଯିବା ପରେ ଆଗାମୀ ପିଢ଼ି ସେମାନଙ୍କୁ କିଭଳି ସମ୍ମାନ ଦେବ, ତାହା ସମୟ ହିଁ କହିବ । କାରଣ ସମୟ ବଡ଼ ବଳବାନ୍ ।

ସାମ୍ବାଦିକ କଲୋନୀ
ତୁଳସୀପୁର, କଟକ–୮



## ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୨୩

# ଓଡ଼ିଶା ପାଭିଲିୟନ ବାଣ୍ଟିଲା 'ବସୁଧୈବ କୁଟୁମ୍ବକମ୍'ର ବାର୍ତ୍ତା

**ହର ପ୍ରସାଦ ମହାପାତ୍ର**

ପ୍ରତିବର୍ଷ ପରି ଚଳିତ ବର୍ଷ ମଧ୍ୟ ଭାରତ ବାଣିଜ୍ୟିକ ପ୍ରୋତ୍ସାହନ ସଂଗଠନ ଆନୁକୂଲ୍ୟରେ ଗତ ମାସ ନଭେମ୍ବର ୧୪ ତାରିଖଠାରୁ ୨୭ ତାରିଖ ପର୍ଯ୍ୟନ୍ତ ନୂଆଦିଲ୍ଲୀର ପ୍ରଗତି ମୈଦାନସ୍ଥିତ ଭାରତ ମଣ୍ଡପମ୍‌ରେ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା ଆୟୋଜିତ ହୋଇଥିଲା । ବାଣିଜ୍ୟିକ ପରମ୍ପରା ମାଧ୍ୟମରେ ସମଗ୍ର ବିଶ୍ୱ ଆଜି କିପରି ଗୋଟିଏ ପରିବାରରେ ପରିଣତ ହୋଇପାରିଛି, ତାହାକୁ ପ୍ରତିପାଦିତ କରିବା ଉଦ୍ଦେଶ୍ୟରେ ଚଳିତ ବର୍ଷ ଅର୍ଥାତ୍ ବାଣିଜ୍ୟ ମେଳାର ୪୨ ତମ ସଂସ୍କରଣର ବିଷୟବସ୍ତୁ 'ବସୁଧୈବ କୁଟୁମ୍ବକମ୍, ୟୁନାଇଟେଡ୍ ବାଇ ଟ୍ରେଡ୍'ଆଧାରରେ ଓଡ଼ିଶା ପାଭିଲିୟନ୍ ପ୍ରସ୍ତୁତ କରାଯାଇଥିଲା । ବାଣିଜ୍ୟ ମେଳାର ପ୍ରଥମ ୫ ଦିନ ଅର୍ଥାତ୍ ୧୪ ତାରିଖରୁ ୧୮ ତାରିଖ ପର୍ଯ୍ୟନ୍ତ ଏହା ବ୍ୟାବସାୟିକ ଓ ବାଣିଜ୍ୟିକ ସଂସ୍ଥା ପାଇଁ ଉଦ୍ଦିଷ୍ଟ ଥିବା ବେଳେ ଅବଶିଷ୍ଟ ୯ ଦିନ ଅର୍ଥାତ୍ ୧୯ ତାରିଖଠାରୁ ୨୭ ତାରିଖ ପର୍ଯ୍ୟନ୍ତ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ ଥିଲା । ପ୍ରତ୍ୟହ ପୂର୍ବାହ୍ନ ୧୦ଟାରୁ ସନ୍ଧ୍ୟା ୭ଟା ୩୦ ପର୍ଯ୍ୟନ୍ତ ଖୋଲା ରହୁଥିବା ଏହି ମେଳାରେ ଭାରତର ୨୮ଟି ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳ, ବିଶ୍ୱର ୧୨ଟି ଦେଶ, କେନ୍ଦ୍ର ସରକାରଙ୍କ ୪୪ଟି ମନ୍ତ୍ରାଳୟ ଓ ସେମାନଙ୍କ ଦ୍ୱାରା ପରିଚାଳିତ ଶତାଧିକ ନିଗମ ଓ ପରିଷଦ ଏବଂ ୩୫୦ଟି ବେସରକାରୀ ସଂସ୍ଥା ଅଂଶଗ୍ରହଣ କରିଥିଲେ । ନଭେମ୍ବର ୧୪ ତାରିଖ ଦିନ ଭାରତ ସରକାରଙ୍କ ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରୀ ଶ୍ରୀମତୀ ଅନୁପ୍ରିୟା ସିଂହ ପଟେଲ ଏବଂ ଶ୍ରୀଯୁକ୍ତ ସୋମ ପ୍ରକାଶ ଏହି ମେଳାକୁ ଉଦ୍‌ଘାଟନ କରିଥିବା ବେଳେ ଓଡ଼ିଶା ପାଭିଲିୟନକୁ ଓଡ଼ିଶାର ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ, ସାଧାରଣ ଉଦ୍ୟୋଗ ଏବଂ ବିଜ୍ଞାନ ଓ କାରିଗରୀ କୌଶଳ ମନ୍ତ୍ରୀ ଶ୍ରୀଯୁକ୍ତ ଅଶୋକ ଚନ୍ଦ୍ର ପଣ୍ଡା ଉଦ୍‌ଘାଟନ କରିଥିଲେ । ଏହି ବିଶାଳ ମେଳାର ଅନ୍ୟତମ ଆକର୍ଷଣ ଥିଲା ଓଡ଼ିଶା ପାଭିଲିୟନ । ଯେଉଁଠାରେ ପ୍ରତିଫଳିତ ହୋଇଥିଲା ରାଜ୍ୟର କଳା, ସଂସ୍କୃତି, ଜନଜାତି ଜୀବନ, କୃଷି, ଶିଳ୍ପ ଓ ବାଣିଜ୍ୟ ତଥା ରାଜ୍ୟର ସାମଗ୍ରିକ ବିକାଶର ଛବି । ଏଥିସହିତ, ପ୍ରାଚୀନ ଉତ୍କଳୀୟ ସମୃଦ୍ଧ ନୌବାଣିଜ୍ୟ ପରମ୍ପରାର ପ୍ରତୀକ ବୋଇତ ଏବଂ ଓଡ଼ିଶାର କଳା ଓ ଭାସ୍କର୍ଯ୍ୟର ପ୍ରତୀକ କୋଣାର୍କ ଚକ ପାଭିଲିୟନର ଶୋଭାକୁ ମଧ୍ୟ ବହୁଗୁଣରେ ପରିବର୍ଦ୍ଧିତ କରିଥିଲା ।



ଏହି ମେଳାରେ ଅଂଶଗ୍ରହଣ କରିବା ପାଇଁ ରାଜ୍ୟ ସରକାରଙ୍କ ତରଫରୁ ସୂଚନା ଓ ଲୋକସମ୍ପର୍କ ବିଭାଗକୁ ସବୁଜ ସଙ୍କେତ ମିଳିବା ପରେ ବିଭାଗ ତରଫରୁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ ଦିଗରେ ତତ୍ପରତା ପ୍ରକାଶ ପାଇଥିଲା । ଭାରତ ବାଣିଜ୍ୟିକ ପ୍ରୋତ୍ସାହନ ସଂଗଠନର ନବନିର୍ମିତ ସୌଧର ପ୍ରଥମ ମହଲାର ୨ ନମ୍ବର ପ୍ରକୋଷ୍ଠରେ ୫୫୦ ବର୍ଗ ମିଟର ପରିମିତ ସ୍ଥାନରେ ସୁଦୃଶ୍ୟ ଓଡିଶା ପାଭିଲିୟନ ନିର୍ମିତ ହୋଇଥିଲା ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତତ୍ତ୍ୱାବଧାନରେ ପ୍ରସ୍ତୁତ ଓଡ଼ିଶା ପାଭିଲିୟନରେ ଚଳିତ ବର୍ଷ ୮ଟି ବିଭାଗ ଏବଂ ବିଭିନ୍ନ ସହଯୋଗୀ ସଂସ୍ଥାର ମୋଟ ୨୪ଟି ଷ୍ଟଲ୍ ସ୍ଥାନ ପାଇଥିଲା । ଏହା ମଧ୍ୟରେ ଥିଲା ଓଡ଼ିଶାର ବିଭିନ୍ନ ଆକର୍ଷଣୀୟ ହସ୍ତତନ୍ତ, ବୟନଶିଳ୍ପ ଓ ହସ୍ତକଳା ସାମଗ୍ରୀ, ଓରମାସ୍ ଦ୍ୱାରା ପ୍ରସ୍ତୁତ ଗ୍ରାମୀଣ ଉତ୍ପାଦ, ମିଶନ ଶକ୍ତି ମା' ଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ପ୍ରକାର ଘରକରଣା, ସାଜସଜ୍ଜା ଓ ଖାଦ୍ୟପଦାର୍ଥ ଏବଂ ମିଲେଟ ମିଶନ ଅଧୀନରେ ଓଡ଼ିଶାର ପୁଷ୍ଟିଶସ୍ୟ ଖାଦ୍ୟ ପଦାର୍ଥ ଇତ୍ୟାଦି । ସେହିପରି ଓଡ଼ିଶାର ଜନଜାତି ଜୀବନ, କଳା ଓ ସଂସ୍କୃତି ସହିତ ଏମ୍‌ଏସ୍‌ଏମ୍‌ଇ ଏବଂ ଓଡ଼ିଶା ପର୍ଯ୍ୟଟନର ଆକର୍ଷଣ ଓଡ଼ିଶା ପାଭିଲିୟନକୁ ସମୃଦ୍ଧ କରିଥିଲା । ରାଜ୍ୟର କଳା, ସଂସ୍କୃତି ଓ ବିଭିନ୍ନ ଉତ୍ପାଦ ସହିତ ହସ୍ତତନ୍ତ ଓ ହସ୍ତକଳା ତଥା ଆଦିବାସୀ କଳାର ଲାଇଭ୍ ଡେମନଷ୍ଟ୍ରେସନ୍ ନୂଆଦିଲ୍ଲୀର ବାଣିଜ୍ୟ ମେଳାରେ ଓଡ଼ିଶାର ସ୍ୱତନ୍ତ୍ର ପରିଚୟକୁ ପ୍ରମାଣିତ କରୁଥିଲା । ବାଣିଜ୍ୟ ମେଳାକୁ ଆସୁଥିବା ଜନସାଧାରଣଙ୍କୁ ସ୍ୱତନ୍ତ୍ର ଓଡ଼ିଆ ଖାଦ୍ୟ ପରିବେଷଣ କରିବାରେ ପର୍ଯ୍ୟଟନ ବିଭାଗ ମଧ୍ୟ ସଫଳ ହୋଇଥିଲା ।


प्रगति मैदान, नई दिल्ली में 14-27 नवंबर, 2023 तक आयोजित
42वां
भारतीय अंतरराष्ट्रीय व्यापार मेला 2023
में उत्कृष्ट प्रदर्शन के लिए **राज्य** क्षेत्र के मण्डप में **स्वर्ण पदक** से पुरस्कृत

For the **State** Pavilion adjudged First for Excellence in Display in the
42nd
**India International Trade Fair 2023**
held at Pragati Maidan, New Delhi, November 14-27, 2023
given this award of **Gold Medal**

विजेता: **ओडिशा**
To : **ODISHA**

प्रदीप सिंह खरोला
अध्यक्ष एवं प्रबंध निदेशक

### ବିଶ୍ୱକୁ ଓଡ଼ିଶା ଦେଖାଇଲା ତା'ର ପ୍ରାଚୀନ ନୌବାଣିଜ୍ୟ ପରମ୍ପରାର ଝଲକ

ବାଣିଜ୍ୟ ମାଧ୍ୟମରେ ସମଗ୍ର ବିଶ୍ୱକୁ ଗୋଟିଏ ପରିବାରରେ ପରିଣତ କରିବାକୁ ଅତୀତର ସ୍ୱର୍ଣ୍ଣିମ ଓ ବୈଭବମୟୀ କଳିଙ୍ଗ ସହିତ ବର୍ତ୍ତମାନର ପ୍ରଗତିଶୀଳ ଓଡ଼ିଶାକୁ ଯୋଡି ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିବା ସହିତ ସମସ୍ତଙ୍କୁ ଆକୃଷ୍ଟ କରିବାରେ ଓଡିଶା ପାଭିଲିୟନ ଆଶାତୀତ ଭାବେ ସଫଳତା ହାସଲ କରିଥିଲା । ମେକ୍-ଇନ୍-ଓଡ଼ିଶା କନକ୍ଲେଭ୍ ମାଧ୍ୟମରେ ବିଶ୍ୱର ପ୍ରତିଷ୍ଠିତ ଶିଳ୍ପପତି ଓ ପୁଞ୍ଜିପତିମାନଙ୍କୁ ଓଡିଶା ପ୍ରତି ଆକର୍ଷିତ କରିବା ହେଉ ଅବା ଓଡିଶାର ସୁଦକ୍ଷ ଯୁବଗୋଷ୍ଠୀ ଓ ସେମାନଙ୍କ ଉତ୍ପାଦକୁ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିବାକୁ ଓଡିଶା ସ୍କିଲ କନକ୍ଲେଭ ଆୟୋଜନ ହେଉ, ବିଶ୍ୱକପ ହକି ମହାକୁମ୍ଭର ସଫଳ ଆୟୋଜନ ହେଉ କିମ୍ବା ଓଡିଶାରେ ଉତ୍ପାଦିତ ମିଲେଟକୁ ବିଶ୍ୱ ବଜାର ସୁବିଧା ଉପଲବ୍ଧ କରିବାକୁ ନିକଟ ଅତୀତରେ ଇଣ୍ଟରନ୍ୟାସନାଲ ମିଲେଟ କନ୍‌ଭେନ୍‌ସନ୍ ଆୟୋଜନ ହେଉ, ପ୍ରତ୍ୟେକ କ୍ଷେତ୍ରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରଗତିଶୀଳ ନୀତିକୁ ସମଗ୍ର ବିଶ୍ୱ ସକାରାତ୍ମକ ଦୃଷ୍ଟିରେ ଦେଖୁଥିବାରୁ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ବିଷୟବସ୍ତୁ ଯଥାର୍ଥରେ ଅତୀତ ଓଡିଶାର ଦରିଆପାରି ନୌବାଣିଜ୍ୟ ପରମ୍ପରାକୁ ପ୍ରତିପାଦିତ କରିବା ସହିତ ଶିଳ୍ପ, ପର୍ଯ୍ୟଟନ, ଆମଦାନୀ ଓ ରପ୍ତାନି ଆଦି ବିଭିନ୍ନ କ୍ଷେତ୍ରରେ ଓଡ଼ିଶାର ଅଗ୍ରଗତିକୁ ପ୍ରଦର୍ଶନ କରିଥିଲା । ତତ୍‌ସହିତ, ଓଡିଶା ପାଭିଲିୟନ ମାଧ୍ୟମରେ ଓଡିଶାର କୃଷି, ହସ୍ତତନ୍ତ ଓ ହସ୍ତଶିଳ୍ପ ସମେତ ବିଭିନ୍ନ ଉତ୍ପାଦର ବିବିଧତା ଏବଂ ଉତ୍କୃଷ୍ଟ ଚିତ୍ରକଳା, ମୂର୍ତ୍ତି, ବୟନ ଶିଳ୍ପ ଏବଂ ହସ୍ତଶିଳ୍ପ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ମଣ୍ଡପର ମଧ୍ୟଭାଗରେ

ରଘୁରାଜପୁରର ପଟ୍ଟଚିତ୍ର, ପିପିଲିର ଚାନ୍ଦୁଆ, ସମ୍ବଲପୁରୀ ବସ୍ତ୍ର ଆଦି ଦ୍ୱାରା ସୁସଜ୍ଜିତ ବୋଇତ ଓଡ଼ିଶାର ଗୌରବମୟ ନୌବାଣିଜ୍ୟ ପରମ୍ପରାକୁ ପ୍ରତିଫଳିତ କରୁଥିଲା । ବେପାରବଣିଜ ଉଦ୍ଦେଶ୍ୟରେ ଓଡିଆ ସାଧବ ପୁଅମାନଙ୍କ ନୌଯାତ୍ରା ସମୟରେ ଓଡିଶାର କାରିଗରମାନେ ଡଙ୍ଗାର ଡେକ୍ ଉପରେ ଯେପରି ବିଭିନ୍ନ ଉତ୍ପାଦ ପ୍ରସ୍ତୁତ କରୁଥିଲେ, ତାହାର ଅବିକଳ ନକଲ ସ୍ୱରୂପ ମଣ୍ଡପର ମଧ୍ୟଭାଗରେ ଥିବା ବୋଇତ ଉପରେ କାରିଗରମାନେ ବିଭିନ୍ନ ହସ୍ତଶିଳ୍ପ ସାମଗ୍ରୀ ପ୍ରସ୍ତୁତ କରୁଥିଲେ ।

### ଓଡ଼ିଶାର ଅନନ୍ୟ ନୃତ୍ୟ ଓ ସଙ୍ଗୀତର ଝଲକରେ ବିମୋହିତ ହେଲେ ଦର୍ଶକ

ବାଣିଜ୍ୟ ମେଳାର ଷଷ୍ଠ ଦିବସ ଅର୍ଥାତ୍ ୧୯ ତାରିଖ ଅପରାହ୍ନରେ ପ୍ରଗତି ମୈଦାନର ମୁକ୍ତାକାଶ ରଙ୍ଗମଞ୍ଚ ଆମ୍ଫି ଥିଏଟର-୧ରେ ଅନୁଷ୍ଠିତ ହୋଇଥିଲା ଓଡ଼ିଶା ରାଜ୍ୟ ଦିବସ ସମାରୋହ । ଏହି ଉପଲକ୍ଷେ ଓଡିଶା ସରକାରଙ୍କ ମାନ୍ୟବର ପଞ୍ଚାୟତିରାଜ ଓ ପାନୀୟ ଜଳ, ଜଙ୍ଗଲ, ପରିବେଶ ଓ ଜଳବାୟୁ ପରିବର୍ତ୍ତନ ଏବଂ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରଦିପ କୁମାର ଅମାତ ମୁଖ୍ୟ ଅତିଥି ଭାବେ ଯୋଗଦେଇ ପ୍ରଦୀପ ପ୍ରଜ୍ୱଳନ ପୂର୍ବକ ଓଡ଼ିଶା ରାଜ୍ୟ ଦିବସ ସମାରୋହର ଶୁଭ ଉଦ୍‌ଘାଟନ କରିବା ସହିତ ଓଡ଼ିଶା ସରକାରଙ୍କ ମାସିକ ମୁଖପତ୍ର 'ଓଡ଼ିଶା ରିଭ୍ୟୁ' ଓ 'ଉତ୍କଳ ପ୍ରସଙ୍ଗ'ର ସ୍ୱତନ୍ତ୍ର ସଂସ୍କରଣ ଉନ୍ମୋଚିତ କରିଥିଲେ । ହଜାର ହଜାର ଦର୍ଶକ ଅତ୍ୟନ୍ତ ଉତ୍ସାହର ସହ ଦେଖିଥିଲେ ଭୁବନେଶ୍ୱର ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର କଳାକାରମାନଙ୍କ ଦ୍ୱାରା ପରିବେଷିତ ଓଡିଶୀ ନୃତ୍ୟ, କୋରାପୁଟ ଜିଲ୍ଲା ବୈପାରିଗୁଡାର ଆଦର୍ଶ ଆଦିବାସୀ ନୃତ୍ୟକଳା ଅନୁଷ୍ଠାନର କଳାକାରମାନଙ୍କ ଦ୍ୱାରା ଧରୁଆ ଜନଜାତି ସଂପ୍ରଦାୟର ବିର୍ଲି ନୃତ୍ୟ, ବରଗଡ ବଉଳ ଝୁପା ସାଂସ୍କୃତିକ ଅନୁଷ୍ଠାନର କଳାକାରମାନଙ୍କ ଡାଲଖାଇ ନୃତ୍ୟ । 'ହର ହର ଶମ୍ଭୁ...' ଗୀତ ପାଇଁ ବେଶ୍ ଖ୍ୟାତି ଅର୍ଜନ କରିଥିବା ଅଭିଲିପ୍ସା ପଣ୍ଡାଙ୍କ ସଙ୍ଗୀତ ପ୍ରଗତି ମୈଦାନରେ ଶିହରଣ ସୃଷ୍ଟି କରିଥିଲା ।

### ରାଜ୍ୟ ସହିତ ବିଶ୍ୱକୁ ଯୋଡିଲା ଓଡ଼ିଶାର ଗ୍ରାମୀଣ ହସ୍ତଶିଳ୍ପ ଓ ବୟନଶିଳ୍ପ

ଓଡିଶାର ଗ୍ରାମୀଣ ହସ୍ତଶିଳ୍ପୀ ଓ ବୟନଶିଳ୍ପୀମାନଙ୍କୁ ବିଶ୍ୱ ବଜାର ସୁବିଧା ଉପଲବ୍ଧ କରି ସେମାନଙ୍କୁ ସ୍ଥାୟୀ ଜୀବିକା ସୁଯୋଗ ଦେବା, ସେମାନଙ୍କ ଜୀବନ ଜୀବିକା ଗୁଣବତ୍ତାରେ ଉନ୍ନତି ଆଣିବା ଓ ସେମାନଙ୍କ ଅଭିନବ ଦକ୍ଷତାକୁ ବିଶ୍ୱ ପରିଚୟ ପ୍ରଦାନ କରିବା ଲକ୍ଷ୍ୟରେ ରାଜ୍ୟ ସରକାରଙ୍କ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗର ସହଯୋଗୀ ସଂସ୍ଥା 'ଓରମାସ୍' ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ଓଡିଶା ପାଭିଲିୟନ ମାଧ୍ୟମରେ ଅଂଶ ଗ୍ରହଣ କରିଥିଲା ।

ପାଭିଲିୟନର ୧ ନମ୍ବର ଷ୍ଟଲରେ ନୂଆପଡାର ମା' ବୈଭବଲକ୍ଷ୍ମୀ ସ୍ୱୟଂ ସହାୟକ ଗୋଷ୍ଠୀ ଓ ମୟୂରଭଞ୍ଜର ମା' ତାରିଣୀ ସ୍ୱୟଂ ସହାୟକ ଗୋଷ୍ଠୀଙ୍କ ଦ୍ୱାରା ପ୍ରସ୍ତୁତ କାଷ୍ଠ କାରୁକାର୍ଯ୍ୟ ଓ ସବାଇ ଘାସରୁ ପ୍ରସ୍ତୁତ ସାମଗ୍ରୀ ଏବଂ ୨ ନମ୍ବର ଷ୍ଟଲରେ କୋରାପୁଟର ଲେମନ ଗ୍ରାସ ଉତ୍ପାଦକ ଗୋଷ୍ଠୀ ଦ୍ୱାରା ଲେମନ ଗ୍ରାସରୁ ପ୍ରସ୍ତୁତ ବିଭିନ୍ନ ଦ୍ରବ୍ୟ ଓ ନବରଙ୍ଗପୁରର ନବରଙ୍ଗୀ ଫାର୍ମ ଉତ୍ପାଦକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ କୃଷି ଉପକରଣ ମିଳୁଥିବା ବେଳେ ୩ ନମ୍ବର ଷ୍ଟଲରେ ବାଲେଶ୍ୱରର ବାବା ପଞ୍ଚଲିଙ୍ଗେଶ୍ୱର ଟେରାକୋଟା ଉତ୍ପାଦକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଓଡିଶାର ଟେରାକୋଟା ଗୃହସଜ୍ଜା ସାମଗ୍ରୀ ଓ ଗଞ୍ଜାମର ଅନନ୍ତ ନାରାୟଣ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଆଚାର, ପାମ୍ପଡ ଆଦି ଖାଦ୍ୟ ସାମଗ୍ରୀ ଏବଂ ୪ ନମ୍ବର ଷ୍ଟଲରେ ଯାଜପୁରର ଜୟ ମା' ମଙ୍ଗଳା ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ଟସରରୁ ପ୍ରସ୍ତୁତ ଶାଢୀ ଓ ଅନ୍ୟାନ୍ୟ ବସ୍ତ୍ର ଓ କୋଟପାଡର ସନ୍ଥକବି ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଜି.ଆଇ. ଟ୍ୟାଗ୍ କୋଟପାଡ ଶାଢୀ ଉପଲବ୍ଧ ହେଉଥିଲା । ଅନୁରୂପ ଭାବେ, ପାଭିଲିୟନର ମଧ୍ୟଭାଗରେ ନିର୍ମିତ ବୋଇତର ଡେକ ଉପରେ କେଉଁଝରରୁ ଆସିଥିବା ଜ୍ୟୋତି ଉତ୍ପାଦକ ଗୋଷ୍ଠୀ ବ୍ୟବହୃତ କାଗଜରୁ ପ୍ରସ୍ତୁତ ବିଭିନ୍ନ ଗୃହସଜ୍ଜା ସାମଗ୍ରୀର ନିର୍ମାଣ ଶୈଳୀ ପ୍ରଦର୍ଶନ କରି ସମସ୍ତଙ୍କ ପ୍ରଶଂସା ଭାଜନ ହୋଇପାରିଥିଲେ ।

### ଓଡ଼ିଶା ପାଭିଲିୟନରେ ପ୍ରତିବିମ୍ବିତ ହେଲା ମହିଳା ସଶକ୍ତିକରଣର ଚିତ୍ର ଓ ଚରିତ୍ର

ଓଡିଶାର ମହିଳାମାନଙ୍କୁ ସ୍ୱରୋଜଗାରୀ ଓ ସ୍ୱାବଲମ୍ବୀ କରିବା ସହିତ ସମାଜରେ ସେମାନଙ୍କୁ ଏକ ସମ୍ମାନଜନକ ପରିଚୟ ପ୍ରଦାନ କରିବାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ପ୍ରେରଣାଦାୟୀ ନେତୃତ୍ୱରେ ୨୦୦୮ ମସିହାରେ ଗଠିତ ମିଶନ ଶକ୍ତି ଆଜି ଏକ ମହାଦ୍ରୁମରେ ପରିଣତ ହୋଇଛି । ମିଶନ ଶକ୍ତି ଅଧୀନରେ ସୁସଙ୍ଗଠିତ ୬ ଲକ୍ଷ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀ ମାଧ୍ୟମରେ ରାଜ୍ୟର ୭୦ ଲକ୍ଷ ମହିଳା ଆର୍ଥିକ ଦୃଷ୍ଟିରୁ ସଶକ୍ତ ହେବା ସହିତ ସେମାନଙ୍କ ପରିବାର ମଧ୍ୟ ଆର୍ଥିକ ଦୃଷ୍ଟିକୋଣରୁ ସ୍ୱଚ୍ଛଳ ହୋଇପାରିଛନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଆନ୍ତରିକ ଉଦ୍ୟମକ୍ରମେ ରାଜ୍ୟର ମହିଳାମାନେ କେବଳ ସଶକ୍ତ ହୋଇନାହାନ୍ତି, ବରଂ ଆଜି ସେମାନେ ମହିଳା ଉଦ୍ୟୋଗୀରେ ପରିଣତ ହୋଇଛନ୍ତି । ଯାହାର ପ୍ରତିଫଳନ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ଓଡିଶା ପାଭିଲିୟନରେ ଦେଖିବାକୁ ମିଳିଥିଲା ।

ପାଭିଲିୟନର ୫ ନମ୍ବର ଷ୍ଟଲରେ ଜଗତସିଂହପୁର ଜିଲ୍ଲାର ପ୍ରଗତି କାଇଁଚ ଉତ୍ପାଦକ ଗୋଷ୍ଠୀ ଦ୍ୱାରା କାଇଞ୍ଚରୁ ପ୍ରସ୍ତୁତ ବିଭିନ୍ନ ଗୃହସଜ୍ଜା, ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଓ ଡବା/ବାକ୍ସ ଏବଂ ବାଲେଶ୍ୱର ଜିଲ୍ଲାର ବିଜୟିନୀ ଉତ୍ପାଦକ ଗୋଷ୍ଠୀ ଦ୍ୱାରା ଖୋଟରୁ ପ୍ରସ୍ତୁତ ଲାପଟପ ବ୍ୟାଗ, ମହିଳାମାନଙ୍କ ପାଇଁ ସୁନ୍ଦର ସୁନ୍ଦର ଡିଜାଇନ୍‌ର ଭ୍ୟାନିଟି ବ୍ୟାଗ ଓ ମନିପର୍ସ ମିଳୁଥିବା ବେଳେ ୬ ନମ୍ବର ଷ୍ଟଲରେ ମୟୂରଭଞ୍ଜ ଜିଲ୍ଲାର ମାତୃଶକ୍ତି ଉତ୍ପାଦକ ଗୋଷ୍ଠୀ ଦ୍ୱାରା ରେଶମ ସୂତାରୁ ପ୍ରସ୍ତୁତ ଅଳଙ୍କାର ଏବଂ ମା' ଅନ୍ଧାରୀବୁଢୀ ଉତ୍ପାଦକ ଗୋଷ୍ଠୀ ଦ୍ୱାରା ସବାଇ ଘାସରୁ ପ୍ରସ୍ତୁତ ବିଭିନ୍ନ ଆକାରର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଓ ଡବା/ବାକ୍ସ ଆଦି ମିଳୁଥିଲା । ଅନୁରୂପ ଭାବେ, ଓଡିଶା ପ୍ରସିଦ୍ଧ ସୁନ୍ଦର ସୁନ୍ଦର ଡୋକ୍ରା କାରୁକାର୍ଯ୍ୟ ସାମଗ୍ରୀ ପ୍ରସ୍ତୁତ କରିଥିବା ମୟୂରଭଞ୍ଜ ଜିଲ୍ଲାର ଜୟ ମା' ଦୁର୍ଗା ଉତ୍ପାଦକ ଗୋଷ୍ଠୀ ଏବଂ ଟସର ହସ୍ତତନ୍ତ ଓ ବୟନ ପାଇଁ ପ୍ରସିଦ୍ଧ ଯାଜପୁର ଜିଲ୍ଲାର ଓମ୍ ଶାନ୍ତି ଟସର ହସ୍ତତନ୍ତ ଉତ୍ପାଦକ ଗୋଷ୍ଠୀ ଦ୍ୱାରା ଉଭୟ ମହିଳା ଓ ପୁରୁଷଙ୍କ ପାଇଁ ପ୍ରସ୍ତୁତ ଟସର ବସ୍ତ୍ର ୭ ନମ୍ବର ଷ୍ଟଲରେ ମିଳୁଥିବା ବେଳେ ୮ ନମ୍ବର ଷ୍ଟଲରେ ବଲାଙ୍ଗୀର ଜିଲ୍ଲା ପ୍ରଗତି ଉତ୍ପାଦକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ହସ୍ତତନ୍ତ ବସ୍ତ୍ର ଏବଂ ନବରଙ୍ଗପୁରର ମା' ବନଦୁର୍ଗା ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଜନଜାତି ଅଳଙ୍କାର ମିଳୁଥିଲା । ପାଭିଲିୟନର ୯ ନମ୍ବର ଷ୍ଟଲରେ କନ୍ଧମାଳ ଜିଲ୍ଲାରେ ଉତ୍ପାଦିତ ହଳଦୀ, ସୋରିଷ, ମସଲା ଆଦି ଜୈବିକ କୃଷିଜାତ ପଦାର୍ଥର ପ୍ରକ୍ରିୟାକୃତ ସାମଗ୍ରୀ ଜିଲ୍ଲାର ମାତୃଶକ୍ତି ଉତ୍ପାଦକ ଗୋଷ୍ଠୀ ବିକ୍ରୀ କରୁଥିଲେ । ମିଶନ ଶକ୍ତିର ଷ୍ଟଲଗୁଡିକରେ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀର ସଦସ୍ୟାମାନେ ସେମାନଙ୍କ ପାରମ୍ପରିକ ପୋଷାକରେ ରହୁଥିବାରୁ ଦର୍ଶକମାନେ ସେମାନଙ୍କ ଉତ୍ପାଦ ଉପରେ ଆସ୍ଥା ପ୍ରକଟ କରୁଥିଲେ ।

### ଓଡ଼ିଶା ପାଭିଲିୟନରେ ଦେଖିବାକୁ ମିଳିଲା ଜନଜାତି ସଶକ୍ତିକରଣ ଓ ସେମାନଙ୍କ ହସ୍ତକଳାର ଝଲକ

ରାଜ୍ୟ ସରକାରଙ୍କ ଦ୍ୱାରା ରାଜ୍ୟର ବିଭିନ୍ନ ଜିଲ୍ଲାରେ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ ହେବା ଫଳରେ ସେମାନଙ୍କ ଜୀବନ ଶୈଳୀରେ ଉଲ୍ଲେଖନୀୟ ଉନ୍ନତି ପରିଲକ୍ଷିତ ହେବା ସହିତ ଓଡିଶାର ଜନଜାତି ସମୁଦାୟ ସମେତ ବିଲୁପ୍ତପ୍ରାୟ ଜନଜାତିଙ୍କ ସର୍ବାଙ୍ଗୀନ ଉନ୍ନତି ଏବଂ ସେମାନଙ୍କ କଳା, ସଂସ୍କୃତି ଓ ପରମ୍ପରାର ଆଶାତୀତ ସୁରକ୍ଷା ସମ୍ଭବ ହୋଇପାରିଛି । ଯାହାର ଝଲକ ଦେଖିବାକୁ ମିଳିଥିଲା ନୂଆଦିଲ୍ଲୀସ୍ଥିତ ପ୍ରଗତି ମଇଦାନରେ ଆୟୋଜିତ ହେଉଥିବା ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ଓଡିଶା ପାଭିଲିୟନରେ । ରାଜ୍ୟ ସରକାରଙ୍କ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ସଶକ୍ତିକରଣ, ପଛୁଆ ବର୍ଗ ଓ ସଂଖ୍ୟାଲଘୁ କଲ୍ୟାଣ ବିଭାଗ ପ୍ରଥମଥର ପାଇଁ ଏହି ବାଣିଜ୍ୟ ମେଳାରେ ଅଂଶ ଗ୍ରହଣ କରିଥିଲେ । ପାଭିଲିୟନର ୧୯ ଓ ୨୦ ନମ୍ବର ଷ୍ଟଲରେ ଓଡିଶା ରାଜ୍ୟ ଜନଜାତି ସଂଗ୍ରହାଳୟ ତରଫରୁ ଖୋଲାଯାଇଥିବା ଷ୍ଟଲରେ ଜନଜାତି ସଂପ୍ରଦାୟଙ୍କ ହସ୍ତ ସାମଗ୍ରୀ ମିଳୁଥିବା ବେଳେ, ଆଦିଶା

(ADISHA) ଦ୍ୱାରା ୨୧ ନମ୍ବର ଷ୍ଟଲରେ କୋରାପୁଟ କଫି ମିଳୁଥିଲା ।

ପାଭିଲିୟନର ମଧ୍ୟଭାଗରେ ଥିବା ବୋଇତ ଉପରେ ନବରଙ୍ଗପୁର ଜିଲ୍ଲାରୁ ଆସିଥିବା ଭୋଡଡା ଜନଜାତି ସଂପ୍ରଦାୟ ଦ୍ୱାରା ଧାନରୁ ପ୍ରସ୍ତୁତ ବିଭିନ୍ନ ଦେବାଦେବୀ ଓ ଗୃହସଜ୍ଜା ସାମଗ୍ରୀ, ରାୟଗଡା ଜିଲ୍ଲାରୁ ଆସିଥିବା ଲାଞ୍ଜିଆ ସଉରା ଜନଜାତିଙ୍କ ଇଡ଼ିତାଲ ଚିତ୍ରକଳା, ଡଙ୍ଗରିଆ କନ୍ଧ ଜନଜାତିଙ୍କ ଦ୍ୱାରା ପ୍ରସ୍ତୁତ ଶାଲ ପ୍ରସ୍ତୁତିକୁ ମଧ୍ୟ ଦର୍ଶକମାନେ ସେମାନଙ୍କ କ୍ୟାମେରା ମାଧ୍ୟମରେ ସାଇତି ରଖିବା ସହିତ ଭୁରି ଭୁରି ପ୍ରଶଂସା କରିଥିଲେ । ଓଡିଶା ପାଭଲିୟନ ମାଧ୍ୟମରେ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳାରେ ଅଂଶଗ୍ରହଣ କରିଥିବା ଜନଜାତି ସଂପ୍ରଦାୟ ସେମାନଙ୍କ ପାରମ୍ପରିକ ବେଶଭୂଷା ଓ ଆଭୂଷଣରେ ରହୁଥିବାରୁ, ସେମାନଙ୍କ ଜୀବନଶୈଳୀ, କଳା, ସଂସ୍କୃତି, ପରମ୍ପରା ସମ୍ପର୍କରେ ଜାଣିବା ପାଇଁ ମଧ୍ୟ ଦର୍ଶକମାନଙ୍କ ମଧ୍ୟରେ ବିଶେଷ ଆଗ୍ରହ ଦେଖାଦେଇଥିଲା । ଏତଦବ୍ୟତୀତ, କୋରାପୁଟ କଫି କିଣିବା ପାଇଁ ଓଡିଶା ପାଭିଲିୟନରେ ମଧ୍ୟ ପ୍ରବଳ ଜନଗହଳି ପରିଲକ୍ଷିତ ହେଉଥିଲା ।




### ଗ୍ରାହକଙ୍କ ଚାହିଦାର ଶୀର୍ଷରେ ଥିଲା ମିଲେଟ, ତାଳଗୁଡ଼, କନ୍ଧମାଳ ହଳଦୀ ଏବଂ ଉତ୍କଳୀୟ ହସ୍ତତନ୍ତ ଓ ହସ୍ତକଳା ସାମଗ୍ରୀ

କୃଷି ଓ କୃଷକ ସଶକ୍ତିକରଣ ବିଭାଗ ତରଫରୁ ଖୋଲାଯାଇଥିବା ଷ୍ଟଲରେ ଓଡିଶାରୁ ଉତ୍ପନ୍ନ ମିଲେଟରୁ ପ୍ରସ୍ତୁତ ବିସ୍କୁଟ, ମିକ୍ସଚର, ଆରିସା, କାକରା, ନୁଡୁଲ୍ସ, ମାଣ୍ଡିଆ ଓ ଅନ୍ୟାନ୍ୟ କ୍ଷୁଦ୍ରଶସ୍ୟର ଗୁଣ୍ଡ ଆଦି ସାମଗ୍ରୀକୁ ଦର୍ଶକ ଆଗ୍ରହର ସହିତ ବହୁ ପରିମାଣରେ କ୍ରୟ କରୁଥିଲେ । ସେହିପରି କନ୍ଧମାଳ ଜିଲ୍ଲାର ଜୈବିକ କୃଷିଜାତ ସାମଗ୍ରୀ ଯଥା:- ହଳଦୀ, ଅଦା, ସୋରିଷ, ପାଳୁଅ ଆଦିକୁ ମଧ୍ୟ ଗ୍ରାହକମାନେ ହାତଛଡା କରିବାକୁ ଚାହୁଁନଥିଲେ ।

ଖଜୁରୀ ରସରୁ ପ୍ରସ୍ତୁତ ଗୁଡ ଓ ଚିନି ଏବଂ ତାଳ ଗଛର ବିଭିନ୍ନ ଅଂଶରୁ ପ୍ରସ୍ତୁତ ଅନ୍ୟାନ୍ୟ ସୁନ୍ଦର ସୁନ୍ଦର ଘରକରଣା ସାମଗ୍ରୀକୁ ନେଇ ରାଜ୍ୟ ସରକାରଙ୍କ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ ତରଫରୁ ଚଳିତ ବର୍ଷ ପ୍ରଥମଥର ପାଇଁ ବାଣିଜ୍ୟ ମେଳାରେ ଓଡିଶା ରାଜ୍ୟ ତାଳଗୁଡ ସମବାୟ ସମିତି ଅଂଶ ଗ୍ରହଣ କରିଥିଲା । ଏହି ଷ୍ଟଲରୁ ଦର୍ଶକ ଓ ଗ୍ରାହକମାନେ ଆଗ୍ରହର ସହିତ ଖଜୁରୀ ଗୁଡ ଓ ଚିନି କ୍ରୟ କରିବା ଦେଖିବାକୁ ମିଳିଥିଲା ।

ଓଡିଶା ପାଭିଲିୟନକୁ ଆସୁଥିବା ସମସ୍ତ ଦର୍ଶକଙ୍କ ପ୍ରଥମ ପସନ୍ଦ ଥିଲା ଓଡିଶାର ବୁଣାକାରମାନଙ୍କ ଦ୍ୱାରା ପ୍ରସ୍ତୁତ ପାରମ୍ପରିକ ଓ ଆଧୁନିକ ଡିଜାଇନ୍‌ର ହସ୍ତତନ୍ତ ବସ୍ତ୍ର । ବୟନିକା ଷ୍ଟଲରେ ମିଳୁଥିବା ଏହିସବୁ ହସ୍ତତନ୍ତ ସାମଗ୍ରୀ ସହିତ କଟକର ସୁପ୍ରସିଦ୍ଧ ରୁପା ତାରକସୀ ସାମଗ୍ରୀ, ଓଡିଶାର ଭାସ୍କର୍ଯ୍ୟ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ କାଷ୍ଠ ଓ ପ୍ରସ୍ତର କାରୁକାର୍ଯ୍ୟ, ରଘୁରାଜପୁର ପଟ୍ଟଚିତ୍ର, ପିପିଲି ଚାନ୍ଦୁଆ ଆଦି ହସ୍ତଶିଳ୍ପ ସାମଗ୍ରୀ ମିଳୁଥିବା ଉତ୍କଳିକା ଷ୍ଟଲରେ ମଧ୍ୟ ପ୍ରବଳ ଜନଗହଳି ରହୁଥିଲା ।

ପାଭିଲିୟନର ମଧ୍ୟଭାଗରେ ଥିବା ବୋଇତ ଉପରେ ତନ୍ତରେ ବସ୍ତ୍ର ପ୍ରସ୍ତୁତି କଳାକୁ ଦର୍ଶକମାନେ ବହୁ ସଂଖ୍ୟାରେ ଉପଭୋଗ କରିବା ସହିତ ଚାନ୍ଦୁଆ, ପଟ୍ଟଚିତ୍ର ଓ ପ୍ରସ୍ତର ମୂର୍ତ୍ତି ନିର୍ମାଣ ଶୈଳୀ ଏବଂ ଏହାର ଉପଲବ୍ଧତା ସମ୍ପର୍କରେ ଶିଳ୍ପୀମାନଙ୍କଠାରୁ ପଚାରି ବୁଝୁଥିଲେ ।

### ବିଶିଷ୍ଟ ବ୍ୟକ୍ତିଙ୍କ ଓଡ଼ିଶା ମଣ୍ଡପ ପରିଦର୍ଶନ

ବାଣିଜ୍ୟ ମେଳା ଅବଧିର ବିଭିନ୍ନ ଦିବସରେ ଖ୍ୟାତନାମା ଭାସ୍କର୍ଯ୍ୟ ଶିଳ୍ପୀ ପଦ୍ମ ବିଭୂଷଣ ଶ୍ରୀ ସୁଦର୍ଶନ ସାହୁ, ଓଡ଼ିଶାର ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ଜେନା,

ପ୍ରମୁଖ ଶାସନ ସଚିବ ଶ୍ରୀ ସଞ୍ଜୟ କୁମାର ସିଂ, ଶ୍ରୀ ସୁଶୀଲ କୁମାର ଲୋହାନୀ ଓ ଶ୍ରୀ ବିଶାଳ ଦେବ, ଓରମାସ୍‌ର ନିର୍ଦ୍ଦେଶିକା ପୁନମ ତାପସ କୁମାର ଗୁହା, ହସ୍ତତନ୍ତ ଓ ବୟନଶିଳ୍ପ ନିର୍ଦ୍ଦେଶକ ଶ୍ରୀ ଶୋଭନ କ୍ରିଷ୍ଣା ସାହୁ, ବୟନିକାର ପରିଚାଳନା ନିର୍ଦ୍ଦେଶିକା ପ୍ରଣତି ଛୋଟରାୟ, ଆସାମର ଶିଳ୍ପମନ୍ତ୍ରୀ ଶ୍ରୀ ବିମଲ ବରୁଆ, ହିମାଚଳ ପ୍ରଦେଶ ଶିଳ୍ପ ମନ୍ତ୍ରୀ ଶ୍ରୀ ହର୍ଷ ବର୍ଦ୍ଧନ ଚୌହାନ, କେରଳ ରାଜ୍ୟପାଳଙ୍କ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଡ. ଦେବେନ୍ଦ୍ର କୁମାର ଧୋଡାଓ୍ୱତ୍, ଭାରତୀୟ ପାଣିପାଗ ବିଜ୍ଞାନ ବିଭାଗର ମହାନିର୍ଦ୍ଦେଶକ ଡ. ମୃତ୍ୟୁଞ୍ଜୟ ମହାପାତ୍ର, ପଶ୍ଚିମବଙ୍ଗର ଆବାସିକ ଆୟୁକ୍ତ ଶ୍ରୀମତୀ ଉଜ୍ଜୟିନୀ ଦତ୍ତ, ରାଜସ୍ଥାନ ଶିଳ୍ପ ବିଭାଗର ଯୁଗ୍ମ ଆୟୁକ୍ତ ଶ୍ରୀ ପି. ଏନ. ଶର୍ମା, ଝାଡଖଣ୍ଡର ନୃତତ୍ତ୍ୱ ନିର୍ଦ୍ଦେଶକ ଶ୍ରୀ ମନୋଜ କୁମାର, ଓଡ଼ିଶା ଜନଜାତି ଉନ୍ନୟନ ବିଭାଗର ନିର୍ଦ୍ଦେଶକ ଶ୍ରୀ ଇନ୍ଦ୍ରମଣି ତ୍ରିପାଠୀ, ପ୍ରେସ କାଉନସିଲ ଅଫ ଇଣ୍ଡିଆର ସଦସ୍ୟ ଶ୍ରୀ ପ୍ରସନ୍ନ କୁମାର ମହାନ୍ତି, ଏୟାର ଇଣ୍ଡିଆର ପୂର୍ବତନ ନିର୍ଦ୍ଦେଶକ ଶ୍ରୀମତୀ ମିନାକ୍ଷୀ ମଲ୍ଲିକ, ଓଡିଶା ପର୍ଯ୍ୟଟନ ଉନ୍ନୟନ ନିଗମର ଅଧ୍ୟକ୍ଷ ଡ. ଲେନିନ୍ ମହାନ୍ତି, 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସମ୍ପାଦିକା କସ୍ତୁରୀ ମହାପାତ୍ରଙ୍କ ସମେତ କେନ୍ଦ୍ର ସରକାର, ଓଡିଶା ସରକାର ଓ ଅନ୍ୟ ରାଜ୍ୟର ବରିଷ୍ଠ ପଦାଧିକାରୀ ଏବଂ ଭାରତ ବାଣିଜ୍ୟିକ ପ୍ରୋତ୍ସାହନ ସଂଗଠନର ଉଚ୍ଚ ପଦାଧିକାରୀ ପ୍ରମୁଖ ଓଡିଶା ମଣ୍ଡପ ପରିଦର୍ଶନ କରି ଏହାର ପରିକଳ୍ପନା, ନିର୍ମାଣ, ସାଜସଜ୍ଜା, କଳାକୃତିର ଜୀବନ୍ତ ପରିସ୍ଫୁଟନ, ପରିଷ୍କାର ପରିଚ୍ଛନ୍ନତା, ଗ୍ରାହକ ଓ ଅନ୍ୟ ତଥ୍ୟ ସଂଗ୍ରହକାରୀଙ୍କ ପ୍ରତି ଉତ୍କୃଷ୍ଟ ଆତିଥେୟତା ଏବଂ ଅନ୍ୟାନ୍ୟ ବ୍ୟବସ୍ଥାର ଭୂୟସୀ ପ୍ରଶଂସା କରିଥିଲେ ।

### ଓଡ଼ିଶା ପାଭିଲିୟନର ପ୍ରତ୍ୟେକ ଅଂଶ ଥିଲା ଗୋଟିଏ ଗୋଟିଏ ସେଲ୍‌ଫି ପଏଣ୍ଟ

ଓଡିଶା ମଣ୍ଡପର ସୁଦୃଶ୍ୟ ସାଜସଜ୍ଜା ଯୋଗୁଁ ଏହା ଥିଲା ସମସ୍ତଙ୍କ ପ୍ରଥମ ପସନ୍ଦ । ଏହାର ସୂକ୍ଷ୍ମ ଓ ସୁଦୃଶ୍ୟ କାରୁକାର୍ଯ୍ୟ ସମସ୍ତଙ୍କୁ ବିମୋହିତ କରୁଥିଲା । ବିଶେଷ କରି ପାଭିଲିୟନର ମଧ୍ୟସ୍ଥଳରେ କଳିଙ୍ଗର ପ୍ରାଚୀନ ନୌବାଣିଜ୍ୟ ପରମ୍ପରାର ଗୌରବମୟ ସ୍ମୃତି ବହନ କରୁଥିବା ବୋଇତ ଓ ସିନ୍ଦୁକ ସମେତ ପାଭିଲିୟନ ମଧ୍ୟରେ ସ୍ଥାପିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ଏବଂ ବାହ୍ୟ ପାର୍ଶ୍ୱରେ ନିର୍ମିତ କୋଣାର୍କ ଚକ ଓ କୋଣାର୍କ ମନ୍ଦିର ପ୍ରତ୍ୟେକଙ୍କ ପାଇଁ ପରିଣତ ହୋଇଯାଇଥିଲା ଗୋଟିଏ ଗୋଟିଏ ସେଲ୍‌ଫି ପଏଣ୍ଟରେ ।

### ବିଜୟ ଉଲ୍ଲାସରେ ଉଲ୍ଲସିତ ଓଡ଼ିଶା ପାଭିଲିୟନ୍, ଶ୍ରେଷ୍ଠ ପାଭିଲିୟନ ଭାବେ ଓଡ଼ିଶା ମଣ୍ଡପକୁ ସ୍ୱର୍ଣ୍ଣ ପଦକ

ପ୍ରାଚୀନ କଳିଙ୍ଗର ଗୌରବମୟ ନୌବାଣିଜ୍ୟ ପରମ୍ପରା, ଉତ୍କଳୀୟ କଳାକୃତିର ଜୀବନ୍ତ ପ୍ରଦର୍ଶନ ଏବଂ ରାଜ୍ୟର ସାମଗ୍ରିକ ବିକାଶଧାରାକୁ ସଫଳତାର ସହିତ ପ୍ରଦର୍ଶିତ କରିଥିବା ଓଡ଼ିଶା ପାଭିଲିୟନ ପ୍ରଥମ ଦିନରୁହିଁ ଦର୍ଶକମାନଙ୍କ ଅହେତୁକ ଆକର୍ଷଣର କେନ୍ଦ୍ରବିନ୍ଦୁ ଏବଂ ପୁରସ୍କାରର ପ୍ରମୁଖ ଦାବିଦାର ଥିଲା । ଭାରତ ବାଣିଜ୍ୟ ପ୍ରୋତ୍ସାହନ ସଂଗଠନ ଦ୍ୱାରା ନିଯୁକ୍ତ ବିଚାରକ ମଣ୍ଡଳୀ ଏବଂ ସଂଗଠନର ଉଚ୍ଚ ପଦାଧିକାରୀମାନେ ବିଭିନ୍ନ ପର୍ଯ୍ୟାୟରେ ଓଡିଶା ପାଭିଲିୟନକୁ ଆସି ଏହାର ମୂଲ୍ୟାଙ୍କନ କରିଥିଲେ । ପୁରସ୍କାର ପାଇବା ପାଇଁ ଓଡ଼ିଶା ଯୋଗ୍ୟ ବିବେଚିତ ହୋଇଛି ବୋଲି ଭାରତ ବାଣିଜ୍ୟ ପ୍ରୋତ୍ସାହନ ସଂଗଠନ ତରଫରୁ ୨୬ ତାରିଖରେ ସୂଚନା ମିଳିବା ପରେ ଓଡିଶା ପାଭିଲିୟନରେ ଖୁସିର ଲହରୀ ଖେଳିଯାଇଥିଲା । ପରେ ପରେ ବିଭିନ୍ନ ମହଲରୁ ଶୁଭେଚ୍ଛା ବାର୍ତ୍ତାର ସୁଅ ଛୁଟିବା ସହିତ ଅନ୍ୟ ରାଜ୍ୟ ପାଭିଲିୟନ୍‌ଗୁଡିକ ମଧ୍ୟ ଓଡ଼ିଶା ପାଭିଲିୟନକୁ ଆସି ସେମାନଙ୍କର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଇଥିଲେ ।

ଅନ୍ତର୍ଜାତୀୟ ବାଣିଜ୍ୟ ମେଳାର ଅନ୍ତିମ ସନ୍ଧ୍ୟାରେ ପ୍ରଗତି ମୈଦାନର ପରିସରରେ ଆୟୋଜିତ ପୁରସ୍କାର ପ୍ରଦାନ ଉତ୍ସବରେ ମେଳାରେ ଅଂଶଗ୍ରହଣକାରୀ ରାଜ୍ୟମାନଙ୍କର ପାଭିଲିୟନ ମଧ୍ୟରୁ 'ଶ୍ରେଷ୍ଠ ପାଭିଲିୟନ' ଭାବେ ଓଡିଶା ପାଭିଲିୟନକୁ 'ସ୍ୱର୍ଣ୍ଣ ପଦକ' ପୁରସ୍କାରରେ ପୁରସ୍କୃତ କରାଯାଇଥିବାବେଳେ ଆସାମକୁ ରୌପ୍ୟ ଏବଂ



ରାଜସ୍ଥାନକୁ କାଂସ୍ୟ ମିଳିଥିଲା । ଓଡ଼ିଶା ତରଫରୁ ସୂଚନା ଓ ଲୋକସମ୍ପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ସରୋଜ କୁମାର ସାମଲ, ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ସନ୍ତୋଷ କୁମାର ଦାସ ଏବଂ ଯୁଗ୍ମ ନିର୍ଦ୍ଦେଶକ ତଥା ଓଡ଼ିଶା ପାଭିଲିୟନର ନିର୍ଦ୍ଦେଶକ ଶ୍ରୀ ସୂର୍ଯ୍ୟ ରଞ୍ଜନ ମହାନ୍ତି, ଭାରତ ବାଣିଜ୍ୟିକ ପ୍ରୋତ୍ସାହନ ସଂଗଠନର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ପ୍ରଦୀପ ସିଂହ ଖରୋଲାଙ୍କଠାରୁ ଏହି ପୁରସ୍କାର ଗ୍ରହଣ କରିଥିଲେ । ପୁରସ୍କାର ପ୍ରଦାନ ଉତ୍ସବରେ ଭାରତ ବାଣିଜ୍ୟିକ ପ୍ରୋତ୍ସାହନ ସଂଗଠନର କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ରଜତ ଅଗ୍ରୱାଲ ଏବଂ କାର୍ଯ୍ୟ ନିର୍ବାହୀ ନିର୍ଦ୍ଦେଶକ (ପ୍ରକଳ୍ପ) ଶ୍ରୀ ମଥୁରା ପ୍ରସାଦ ପ୍ରମୁଖ ଉପସ୍ଥିତ ଥିଲେ । ବାଣିଜ୍ୟ ମେଳା ଅବଧିର ୧୪ ଦିନ ମଧ୍ୟରେ ଓଡ଼ିଶା ମଣ୍ଡପକୁ ୫ ଲକ୍ଷ ଲୋକ ଆସିଥିବା ବେଳେ ପାଖାପାଖି ୭୦ ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କାର ବ୍ୟବସାୟ ହୋଇଥିଲା । ନୂଆଦିଲ୍ଲୀଠାରେ ଅବସ୍ଥାପିତ ଓଡ଼ିଶାର ଆବାସିକ ଆୟୁକ୍ତ ଶ୍ରୀ ରବି କାନ୍ତ, ଉପାୟୁକ୍ତ ଶ୍ରୀ ସୁଧାଂଶୁ କୁମାର ମହାନ୍ତି ତଥା ବାଣିଜ୍ୟ ମେଳା ପାଇଁ ନିୟୋଜିତ ସୂଚନା ଓ ଲୋକସମ୍ପର୍କ ବିଭାଗ ଏବଂ ଅନ୍ୟ ବିଭାଗର ଅଧିକାରୀଙ୍କ ସକ୍ରିୟ ସହଯୋଗ ଫଳରେ ସମସ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପାଦିତ ହୋଇଥିଲା ।

ସହକାରୀ ପ୍ରେସ୍ ସୂଚନା ଅଧିକାରୀ
ଲୋକସମ୍ପର୍କ ଭବନ, ଭୁବନେଶ୍ୱର



# ଓଡ଼ିଆ ପଦାବଳୀ ସାହିତ୍ୟରେ ଶାସ୍ତ୍ରୀୟ ଭାଷାର ସ୍ୱରୂପ

ଡକ୍ଟର ହିମାଦ୍ରୀ ତନୟା ମିଶ୍ର

ପଦାବଳୀ ସାହିତ୍ୟ କହିଲେ କେତେଗୁଡ଼ିଏ ପଦର ସମାହାରକୁ ବୁଝାଏ ନାହିଁ । ବିଭିନ୍ନ ଭାରତୀୟ ଭାଷାରେ ଏହା ସାହିତ୍ୟର ଏକ ବିଶିଷ୍ଟ ବିଭାଗ ରୂପେ ବିକାଶ ଲାଭ କରିଅଛି । 'ଗୀତଗୋବିନ୍ଦ'ର ରଚୟିତା ୧୨ଶ ଶତାବ୍ଦୀର କବି ଜୟଦେବ ପ୍ରଥମ କରି ପଦାବଳୀ ଶବ୍ଦଟି ବ୍ୟବହାର କରିଥିଲେ । ଶ୍ରୀକୃଷ୍ଣଙ୍କ ବ୍ରଜଲୀଳାକୁ ଉପଜୀବ୍ୟ କରି ରଚିତ ସ୍ୱକୀୟ କାବ୍ୟକୁ ସେ ଲଳିତ କୋମଳକାନ୍ତ ପଦାବଳୀ କହିବା ପରେ ପରବର୍ତ୍ତୀ ବୈଷ୍ଣବ କବିଗଣ କୃଷ୍ଣଙ୍କ ବ୍ରଜଲୀଳାତ୍ମକ ଗାନୋପଯୋଗୀ କବିତାକୁ ପଦାବଳୀ ଆଖ୍ୟା ଦେଲେ । ତେଣୁ ପଦାବଳୀ ସାହିତ୍ୟ ଅନ୍ତର୍ଭୁକ୍ତ ପଦାବଳୀ ଶବ୍ଦଟି ଆଭିଧାନିକ ଅର୍ଥରେ ବ୍ୟବହୃତ ନ ହୋଇ ଏକ ସାଂକେତିକ ଅର୍ଥ ବା ରୂଢ଼ି ଅର୍ଥରେ ବ୍ୟବହୃତ । ବ୍ରଜପୁରର ଗୋପୀ, ରାଧା, ବ୍ରଜବାଳକ ଓ ଯଶୋଦାଙ୍କ ସହ ଶ୍ରୀକୃଷ୍ଣଙ୍କ ମଧୁର ଲୀଳାକୁ କେନ୍ଦ୍ର କରି ରଚିତ ସଂଗୀତାତ୍ମକ କବିତାମାନ ପଦାବଳୀ ସାହିତ୍ୟ ଭାବେ ସ୍ୱୀକୃତି ଲାଭ କରିଛି । ପଦ୍ୟାବଳୀ ଓ ପଦାବଳୀ ଶବ୍ଦ ଦୁଇଟିରେ ରୂପଗତ ସାମର୍ଥ୍ୟ ଥିଲେ ହେଁ ଅର୍ଥଗତ ପାର୍ଥକ୍ୟ ରହିଛି । ଯେକୌଣସି ବିଷୟକୁ କେନ୍ଦ୍ରକରି ରଚିତ ପଦ୍ୟ ରଚନାଗୁଡ଼ିକର ସମାହାରକୁ ପଦ୍ୟାବଳୀ କୁହାଯାଏ । କିନ୍ତୁ ପଦାବଳୀ କହିଲେ କେବଳ ଶ୍ରୀକୃଷ୍ଣଙ୍କ ବ୍ରଜଲୀଳା ବିଷୟକ ରାଗ, ତାଳ ସମନ୍ୱିତ ଗୀତିଧର୍ମୀ କବିତାକୁ ବୁଝାଏ । ସେ ଦୃଷ୍ଟିରୁ ଦେଖିଲେ ସବୁ ପଦାବଳୀ ପଦ୍ୟାବଳୀର ଅନ୍ତର୍ଭୁକ୍ତ । କିନ୍ତୁ ସବୁ ପଦ୍ୟ ପଦାବଳୀ ନୁହେଁ । ଏହା ଓଡ଼ିଶାର ପାରମ୍ପରିକ ସଂଗୀତ ବା ଚଉପଦୀର ଆଙ୍ଗିକ ଦ୍ୱାରା ପରିଚିହ୍ନିତ । ଏଥିରେ ପ୍ରଥମେ ଘୋଷା ବା ଧ୍ରୁବପଦ ଓ ପରେ ଚାରି–ପାଞ୍ଚଟି ଅନ୍ତରା ପଦ ରହିବା ହେଉଛି ସାଧାରଣ ବିଧି । ଶେଷ ପଦରେ ପଦକର୍ତ୍ତାଙ୍କ ନାମ ଭଣିତା ଆକାରରେ ଥାଏ । କେତେକ ପଦାବଳୀରେ ଉକ୍ତି ପ୍ରତ୍ୟୁକ୍ତି ମାଧ୍ୟମରେ ଭାବ ପ୍ରକାଶିତ ହୋଇଥାଏ । ରୀତିଯୁଗର ଶେଷ ଭାଗରେ ପଦାବଳୀ ରଚିତ ହୋଇଥିବାରୁ ଆଳଙ୍କାରିକ ଛଟା ପରିଲକ୍ଷିତ ହୁଏ । ଯେଉଁଥିରେ ଆଳଙ୍କାରିକତାର ଅଧିକ୍ୟ ଥାଏ ତା'ର ସାଙ୍ଗୀତିକତା ବ୍ୟାହତ ହୋଇଥାଏ । ଅଳଙ୍କାରର ପ୍ରୟୋଗ ପରିମିତ ଥିଲେ ଗୀତଗୁଡ଼ିକ ଅତ୍ୟନ୍ତ ଶ୍ରୁତିମଧୁର ଲାଗେ । ପଦାବଳୀ ସାହିତ୍ୟରେ ସଂଗୀତର ସ୍ୱରମୂର୍ଚ୍ଛନା ଓ କବିତାର ଭାବମୂର୍ଚ୍ଛନା ଉଭୟ ଉପଲବ୍ଧି ହେଉଥିବାରୁ ଏହା ସଂଗୀତ ଓ କବିତାର ଏକ ଅପୂର୍ବ ସମନ୍ୱୟ ମନେ ହୁଏ । ବୈଷ୍ଣବ ପଦାବଳୀ ପ୍ରଥମେ ସଂସ୍କୃତ ଭାଷାରେ ରଚିତ ହୋଇ ପରେ ବ୍ରଜବୁଲି ଭାଷାରେ ପ୍ରସାର ଲାଭ କରିଥିଲା । 'History of Brajabuli Literature' ଗ୍ରନ୍ଥରେ ସୁକୁମାର ସେନ୍ କହିଛନ୍ତି, ବୌଦ୍ଧଧର୍ମର ପ୍ରଚାର ପାଇଁ ପାଲି ଭାଷା ଯେପରି ମାଧ୍ୟମ ଥିଲା ସେହିପରି ବୈଷ୍ଣବ ଧର୍ମର ପ୍ରଚାର ପାଇଁ ବ୍ରଜବୁଲି ଭାଷାକୁ ତତ୍ତୁଲ୍ୟ ଉପଯୁକ୍ତ ଭାଷା ରୂପେ ଗ୍ରହଣ କରାଯାଇଥିଲା ।

ଶ୍ରୀକୃଷ୍ଣଙ୍କ ବ୍ରଜଲୀଳାକୁ କେନ୍ଦ୍ରକରି ରସାଳ ସାହିତ୍ୟ ସୃଷ୍ଟି କରିବା ଦିଗରେ ଓଡ଼ିଶାରେ ଆଦ୍ୟ ପଦକ୍ଷେପ ନେଇଥିବା ପ୍ରମୁଖ କବିମାନଙ୍କ ମଧ୍ୟରେ ଅଛନ୍ତି – ମାଧବୀଦାସୀ, ଭୂପତି ପଣ୍ଡିତ, ଯଦୁପତି, ଚାନ୍ଦକବି, ରାୟ ରାମାନନ୍ଦ, ଦାମୋଦର ଦାସ, ଚମ୍ପତ୍ତି ରାୟ, ମୁରାରି ମିଶ୍ର, ବଳରାମ ଦାସ, ଲୋକନାଥ ଦାସ, ଅଚ୍ୟୁତାନନ୍ଦ ଦାସ ଓଡ଼ିଆ ସାହିତ୍ୟରେ ପଦାବଳୀ ଶବ୍ଦର ବ୍ୟବହାର କଲେ । ଦକ୍ଷିଣ ଓଡ଼ିଶାର ରାୟରାମାନନ୍ଦ ବ୍ରଜବୁଲି ଭାଷାରେ ପଦାବଳୀ ରଚନା କରି ଓଡ଼ିଆ କବିମାନଙ୍କୁ ଅନୁପ୍ରାଣିତ କଲେ । ଏହା ପରେ ମାଧବ ଦାସଙ୍କ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ', ଲୋକନାଥଙ୍କର 'ବୃନ୍ଦାବନ ବିହାର', ଭୂପତି ପଣ୍ଡିତଙ୍କର 'ପ୍ରେମ ପଞ୍ଚାମୃତ', କୃଷ୍ଣଲୀଳା ବିଷୟକ ଉତ୍କୃଷ୍ଟ ଗ୍ରନ୍ଥ ପଦାବଳୀ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଏହା ସହିତ ଦାମୋଦର ଦାସଙ୍କ 'ବିରହିଣୀ ଶ୍ରୀରାଧା' ଓ ରାୟ ଚମ୍ପତ୍ତିଙ୍କର 'ଶ୍ରୀରାଧା ବିରହ' ଆଦି ଓଡ଼ିଆ ପଦାବଳୀ ସାହିତ୍ୟକୁ ଉଲ୍ଲେଖନୀୟ ଅବଦାନ । ରୀତିଯୁଗୀୟ କବିମାନେ ଶ୍ରୀକୃଷ୍ଣଙ୍କ ବ୍ରଜଲୀଳାକୁ କେନ୍ଦ୍ର କରି ବହୁ ପଦାବଳୀ ରଚନା କରିଛନ୍ତି । ଦନାଇ ଦାସଙ୍କ 'ଗୋପୀ ଭାଷା', ଦେବଦୁର୍ଲଭଙ୍କ 'ରହସ୍ୟ ମଞ୍ଜରୀ', ଦୀନକୃଷ୍ଣଙ୍କ 'ରସକଲ୍ଲୋଳ', କବିସୂର୍ଯ୍ୟଙ୍କ ସଦାନନ୍ଦ ବ୍ରହ୍ମାଙ୍କ 'ଯୁଗଳ ରସାମୃତ ଲହରୀ', ଉପେନ୍ଦ୍ର ଭଞ୍ଜଙ୍କ 'କଳା କଉତୁକ', ଭକ୍ତଚରଣଙ୍କ 'ମଥୁରାମଙ୍ଗଳ', ଅଭିମନ୍ୟୁ ସାମନ୍ତ ସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି', ବ୍ରଜନାଥ ବଡ଼ଜେନାଙ୍କ 'ଶ୍ୟାମ ରାସୋତ୍ସବ' ଏବଂ ନାରାୟଣ ଦେବଙ୍କ 'ବୃନ୍ଦାବନ ଚନ୍ଦ୍ର ବିହାର' ଆଦି ଗ୍ରନ୍ଥ ପଦାବଳୀ ସାହିତ୍ୟର ଦୃଷ୍ଟାନ୍ତ । ରଚନା ଶୈଳୀର ବିଭିନ୍ନତା ଦୃଷ୍ଟିରୁ ଏ ଗୀତିକବିତାଗୁଡ଼ିକ କୋଇଲି, ଚଉତିଶା, ପୋଇ, ପଦିଆ, ବୋଲି, ଚମ୍ପୂ, ଚଉପଦୀ ଆଦି ଭେଦରେ ବିଭକ୍ତ । ବଳରାମ ଦାସଙ୍କ 'ବାରମାସୀ କୋଇଲି', ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି', ଦନେଇ ଦାସଙ୍କ 'ଯଶୋଦା କୋଇଲି', ଅଚ୍ୟୁତାନନ୍ଦଙ୍କ 'ଦୂତୀବୋଧ ଚଉତିଶା', ଦାମୋଦର ଦାସଙ୍କ 'ରସ କେଇଲା ଚଉତିଶା', ଅର୍ଜୁନ ଦାସଙ୍କ 'ମିଳନ ଚଉତିଶା', ବଳରାମ ଦାସଙ୍କ 'କମଳ ଲୋଚନ ଚଉତିଶା', ଦୀନକୃଷ୍ଣଙ୍କ 'ରାଧା ଦର୍ଶନ ଚଉତିଶା', ଭୂପତି ପଣ୍ଡିତଙ୍କ 'ଉଦ୍ଧବ ଚଉତିଶା', କଣ୍ଢ ଦାସଙ୍କ 'ନ ପୋଇ ଛ ପୋଇ', ରସାନନ୍ଦଙ୍କ 'କୃଷ୍ଣଲୀଳାତ୍ମକ ଚଉପଦୀ' ଆଦିରେ ପଦାବଳୀ ସାହିତ୍ୟର ବିକାଶ ଲକ୍ଷ୍ୟ କରିହୁଏ । ଏଥି ସହିତ ଓଡ଼ିଆ ପଦାବଳୀ ସାହିତ୍ୟକୁ ଯେଉଁମାନେ ବହୁ ବ୍ୟାପକ କରିଛନ୍ତି ସେମାନଙ୍କ ମଧ୍ୟରେ ଭକ୍ତକବି ସାଲବେଗ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ବଳଦେବ ରଥ, ବନମାଳୀ ଗୌରହରି, ଗୌରଚରଣ ପ୍ରମୁଖଙ୍କ ନାମ ସ୍ମରଣୀୟ ।

**ଗୋପାଳକୃଷ୍ଣଙ୍କ ପଦାବଳୀ ସାହିତ୍ୟରେ ଶାସ୍ତ୍ରୀୟ ଓଡ଼ିଆ ଭାଷାର ସ୍ୱରୂପ**

ଗୋପାଳକୃଷ୍ଣଙ୍କ ସମୟ ୧୭୮୫ ଖ୍ରୀଷ୍ଟାବ୍ଦ–୧୮୬୨ ଖ୍ରୀଷ୍ଟାବ୍ଦ । ପିତା ଶ୍ରୀ ବନବାସୀ ପଟ୍ଟନାୟକ ଓ ମାତା ଶ୍ରୀମତୀ ଲଳିତା ଦେବୀ । ରାଗାନୁଗାପନ୍ଥୀ ଗୋପାଳକୃଷ୍ଣ ୧୮୧୨ ଖ୍ରୀଷ୍ଟାବ୍ଦରେ ପୁରୁଷାନୁକ୍ରମେ ପାରଳାଖେମୁଣ୍ଡି ରାଜାଙ୍କର ପାଞ୍ଜିଆ କରଣ କାର୍ଯ୍ୟରେ ନିଯୁକ୍ତି ପାଇଥିଲେ । ତାଙ୍କ ରଚିତ କବିତାବଳୀ ଓଡ଼ିଆ, ବଙ୍ଗଳା, ବ୍ରଜବୁଲି ଓ ସଂସ୍କୃତର ସେ ପାରଦର୍ଶୀ ଥିବାର ସୂଚନା ଦିଅନ୍ତି । କବି କୀର୍ତ୍ତନ, ପ୍ରାର୍ଥନା, ସ୍ତବ, ସ୍ତୋତ୍ର ପ୍ରଭୃତି ଭକ୍ତିମୂଳକ ସଂଗୀତ ସହ କୋଇଲି, ଦୋଳିଗୀତ ଭଳି ବାତ୍ସଲ୍ୟ ରସାଶ୍ରିତ ସଂଗୀତ ରଚନା କରିଛନ୍ତି । ନବାନୁରାଗ, ପ୍ରେମାନୁରାଗ, ଶ୍ରୀକୃଷ୍ଣଙ୍କ କୈଶୋରାବସ୍ଥା ଓ ରାଧାକୃଷ୍ଣ ଭକ୍ତିମୂଳକ କବିତାମାନ ସେ ଲେଖିଛନ୍ତି । ମଧୁର ଭାବରାଜିକୁ କୋମଳ ଶବ୍ଦାବଳୀ ଓ ଶ୍ରୁତିମଧୁର ରାଗରାଗିଣୀରେ ପ୍ରକାଶ କରି ପଦାବଳୀ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଉଦାହରଣ ସ୍ୱରୂପ – ଅଗାଧନୀ (ଗଭୀର), ଅଥାନନ୍ତ (ବିସ୍ମରଣଶୀଳ), ଆଟକ (ଅଟକ), ଅକୂତ (ଅଭିଳାଷ), କୁଞ୍ଜମୋହିନୀ (ଲତାଗୃହ), କୋଶାଦ୍ୟ (କେଶର ଆଦ୍ୟ), କରକ (ଡ଼ାଳିମ୍ବ), ଗୁଞ୍ଜମାଳିୟା (କାଇଁଚ ମାଳି), ଗର୍ଗର (ଗରା), ଘୋଣାଗ୍ର (ନାକର ଅଗ୍ର), ଘନଜଘନା (ବହଳଜାନୁ), ଚାରୁମନ୍ଦତୁନ୍ଦେ

(ସୁନ୍ଦର ଶରୀର), ଜୃମ୍ଭା (ଆଳସ୍ୟ), ଜୁଳି (ଖଦ୍ୟୋତ), ଢଳାଚୂଳ (ଛାଞ୍ଚ), ଧ୍ୱାନ୍ତ (ତିମିର), ନୀପଫୁଲ (କଦମ୍ବ), ପୀତାଧଟୀ (ହଳଦିଆ ବସ୍ତ୍ର), ବିତାନ (ମଣ୍ଡପ), ବଧୁଲୀ ଅଧରୀ (ରଙ୍ଗଣୀ ଫୁଲ), ମକରୀ (ଚନ୍ଦନଚିତା), ରସାଳସୀ (ରସବତୀ), ରମ୍ଭ ସଞ୍ଜଣି (ବାଉଁଶ କଣି), ଶର୍ମସଦ୍ମା (ଅଶୁଭ ଗୃହ), ହେମାବଜ ନନ୍ଦନ (ଅତିଥଣ୍ଡା), ଲୁକି (ଲଚକାଳି) ଆଦି ଶବ୍ଦଗୁଡ଼ିକ ଶାସ୍ତ୍ରୀୟ ଓଡ଼ିଆ ଭାଷାର ସମ୍ଭାର । ରାଗ ଓ ତାଳ ଉପରେ ରଚିତ ତାଙ୍କ କବିତାଗୁଡ଼ିକରେ ଶାସ୍ତ୍ରୀୟ ଓଡ଼ିଆ ଭାଷାର ବହୁରୂପ ବିଭବ ରହିଛି, ଯେପରି – ରାଗ – ମୋହନ, ତାଳ – ରୂପକ

‘ହୋରି ରଙ୍ଗେ ବିରହି ।
ହରି ସଂଗେ ଶ୍ରୀ କିଶୋରୀ

ପବନେ ଚଳି ଚମ୍ପକ ବଲ୍ଲୀ
ତମାଳେ ଢଳିଲା ପରି

ପଶୁପୀବାଳା ଚପଳା ମାଳା
ଘନକୁ ଘେରିଲା ପରି

ହେମାବଜ ବନ ବୟସୀ ଜନ
ମଧୁବ୍ରତ ଗିରିଧାରୀ

ଫଙ୍ଗୁ ଅବିର ବ୍ରଜସୁନ୍ଦର
କଞ୍ଚୁଳୀ ଗଳି ବାହାରି

ରାଗ – ମାଳବ ଗୌଡ଼ା     ତାଳ – ମିଶ୍ର

ଲଭିଲୁ ଏ ଦଶା ବୃଥା ରସାଳସା
କାଲି ଏକା ଆଣି ଯାଇ ପାଣିରେ
କମ୍ପ ସ୍ୱରଭଙ୍ଗ ରୋମାଞ୍ଚ ଉଦ୍‌ବେଗ
ମୋହ ହେଉଛୁ କ୍ଷଣକୁ କ୍ଷଣିରେ ।’

**କବସୂର୍ଯ୍ୟ ବଳଦେବ ରଥଙ୍କ ପଦାବଳୀ ସାହିତ୍ୟରେ ଶାସ୍ତ୍ରୀୟ ଓଡ଼ିଆ ଭାଷାର ସ୍ୱରୂପ**

କବିସୂର୍ଯ୍ୟଙ୍କ ସମୟ ୧୭୮୯ ଖ୍ରୀଷ୍ଟାବ୍ଦ । ପିତା ଉଜ୍ଜ୍ୱଳ ରଥ । ଅଜା ତ୍ରିପୁରାରୀ ହୋତାଙ୍କ ତତ୍ତ୍ୱାବଧାନରେ କବି ସଂସ୍କୃତ କାବ୍ୟ, ଅଳଙ୍କାର, ଦର୍ଶନ, ସ୍ମୃତି ପ୍ରଭୃତିରେ ପାଣ୍ଡିତ୍ୟ ଲାଭ କରିଥିଲେ । ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟଙ୍କଠାରୁ ସେ ‘କବିସୂର୍ଯ୍ୟ’ ଉପାଧି ପାଇଥିଲେ । ଗଜପତି ମୁକୁନ୍ଦଦେବଙ୍କ ଦ୍ୱାରା କବିସୂର୍ଯ୍ୟ ‘ରାୟଗୁରୁ ମହାପାତ୍ର’ ଉପାଧି ପାଇଥିଲେ । କବିଙ୍କର ସାର୍ଥକ ସୃଷ୍ଟି ମଧ୍ୟରେ ରହିଛି – ଚନ୍ଦ୍ରକଳା, କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ଦୌପଦୀ ଚନ୍ଦ୍ରୋଦୟ, ହାସ୍ୟ କଲ୍ଲୋଳ ଇତ୍ୟାଦି । କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ତାଙ୍କର ଚର୍ଚ୍ଚିତ ପଦାବଳୀ । ନାଟକ ଓ ସଂଗୀତ ଉଭୟ ଦୃଷ୍ଟିରୁ ଏହା ତାଙ୍କର ସାର୍ଥକ ସୃଷ୍ଟି । ଏଥିରେ ‘କ’ ଠାରୁ ‘କ୍ଷ’ ପର୍ଯ୍ୟନ୍ତ ଚଉତିରିଶିଟି ଅକ୍ଷର ନେଇ ସ୍ୱତନ୍ତ୍ର ଭାବରେ କବିତାଗୁଡ଼ିକ ରଚନା କରିଛନ୍ତି । ଶୃଙ୍ଗାର ରସ ଏହାର ମୁଖ୍ୟ ଉପାଦାନ । କରୁଣ ରସର ସାମୟିକ ପ୍ରଭାବ ରହିଛି । ଏହି ଚମ୍ପୂର ଚଉପଦୀଗୁଡ଼ିକ ଓଡ଼ିଶୀ ପଦ୍ଧତିର ଶାସ୍ତ୍ରୀୟ ସଂଗୀତ । ଏଥିରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସୁଷମ ବ୍ୟବହାର ଚମ୍ପୂର କାବ୍ୟିକ ମର୍ଯ୍ୟାଦା ବୃଦ୍ଧି କରିଛି । ଉଦାହରଣ ସ୍ୱରୂପ – ‘ଖରାପ ତୁ ହେଲୁରେ, ଗଙ୍ଗାରୁ ବିଷଦ ଗଭୀର ତୋ ହୃଦ’, ‘ଡାଳିମ୍ବ ମଞ୍ଜି ଦଶନା, ବଲ୍ଲୀ–ନିଳୟ ବିହାର ଲୋଳା’, ‘ତରା ଭରା କିରଣ ବରାବର ଚରଣ ନଖାଂଶୁ ସୁରଗଣ ଶିଖା ଭରଣ’ ପ୍ରଭୃତି ବହୁ ଅଳଙ୍କାରର ମଧୁର ପ୍ରୟୋଗ ବିଦ୍ୟମାନ । ସଂଗୀତ ଶାସ୍ତ୍ର ନିୟମକୁ ଧରି ରଖି କବିସୂର୍ଯ୍ୟ ସାବେରୀ, ତୋଡ଼ି, ପରଜ, କେଦାର, ଶଙ୍କରାଭରଣ, କାଫି ଆଦି ରାଗ ରହିଛି ।

ଓଡ଼ିଆ ଶବ୍ଦମାନଙ୍କୁ ସଂସ୍କୃତ ଶବ୍ଦମାନଙ୍କ ସହ ବ୍ୟବହାର କରି ସେ ଭାଷାକୁ ନୂତନ ଭାବ ଦେଇଛନ୍ତି । ଉଦାହରଣ ସ୍ୱରୂପ – କୁଞ୍ଜକୁକ୍ଷି (ବଡ଼ପେଟ), ଖେଳାଳୋଳା ଖଞ୍ଜନାକ୍ଷି (କ୍ରୀଡ଼ାରେ ଚଞ୍ଚଳମନା ଖଞ୍ଜନ ଚଢ଼େଇର ଆଖି ପରି), ରଞ୍ଜାଇଲା (ମୋହିତ କରିବା), ନାଟପୁଟ (ନୃତ୍ୟ ନିପୁଣ), ଗଗନ କୁସୁମ (ଅସମ୍ଭବ ବସ୍ତୁ), ଘୃତଘଟ (ଘିଅ ମାଠିଆ), ଅବଗାହିଲୁ (ବୁଡ଼ ଦେଲୁ), ଆନୀଳ ଶତପତ୍ରନେତ୍ରା (ସଂପୂର୍ଣ୍ଣ ରୂପେ ନୀଳ), ନୂଆନଟ ପଟଳୀ ମୁକୁଟ (ନୂତନ ନର୍ତ୍ତକମାନଙ୍କ ମଧ୍ୟରେ ଶ୍ରେଷ୍ଠ), ଅମରୀଏ (ଅପ୍‌ସରାମାନେ), ଚଳାପାଙ୍ଗୀ

(ଚଞ୍ଚଳ ନେତ୍ରା), ଚାମର ଚିକୁରା (ଚାମର ପରି ଚିକୁର ଯାହାର), ଚିରାମରା (ପାଟିତୁଣ୍ଡ), ଚାମୀକର (ସୁନା), ଚାରୁମାରୁତ (ମନୋହର ପବନ), ଝିମୁଟ (ମୁହୂର୍ତ୍ତ), ଝୁମିଝିମି (ଘୁମାଇ ଘୁମାଇ), ପଦାମ୍ବୁଜଧାନ (ପାଦପଦ୍ମ ଧ୍ୟାନ), କୁନ୍ଦକଳି ଦଶନା (କୁନ୍ଦ ଫୁଲ କଢ଼ି ପରି ଦାନ୍ତ), ତନାବି (ଝରକା), ମୃଗମଦ କଲି (କସ୍ତୁରୀ ଚିତା), ଆବୁର (ମହତ୍ତ୍ୱ), ପଞ୍ଚବାଣ (କନ୍ଦର୍ପ), କୁରୁବିନ୍ଦ (ପଦ୍ମରାଗ ମଣି), ଲଲାମ (ଲଲାଟ ଭୂଷଣ), ଲାକ୍ଷା (ଅଳତା), ଶମନ ସ୍ୱସ୍ୱା (ଯମଙ୍କ ଭଉଣୀ), ସୁତ୍ରାମା (ଇନ୍ଦ୍ର), ଶାଖିବ୍ୟୂହ (ବୃକ୍ଷରାଜି), ରଦାମ୍ବର (ଅଧର) ଏହିପରି ଅନେକ ଶବ୍ଦର ସମ୍ଭାର ରହିଛି । ଏଥିସହିତ ବହୁ ଯାବନିକ ଶବ୍ଦର ପ୍ରୟୋଗ ରହିଛି । ଖିଆଲ (ଆରବୀ), ଦରଦ (ଫରାସୀ), ଆବୁର (ଫରାସୀ), ହୁକୁମ (ଆରବୀ), ଜହର (ଫରାସୀ), ନିଜର (ଆରବୀ), ଫରିଆଦ (ଫରାସୀ) ପ୍ରଭୃତି ଶବ୍ଦର ସୁନ୍ଦର ସଂଯୋଜନା କବିଙ୍କ ରଚନାବଳୀରେ ଶାସ୍ତ୍ରୀୟ ଓଡ଼ିଆ ଭାଷାର ଯଥାର୍ଥ ସ୍ୱରୂପ ପ୍ରକାଶିତ ହୋଇଛି ।

ଓଡ଼ିଆ ପଦାବଳୀ ସଂଗୀତ ଓ କବିତାର ଏକ ସମନ୍ୱିତ ରୂପ । ଶବ୍ଦାବଳୀରେ ବିରଚିତ ସଂଗୀତ ହେଉଛି କବିତା ଏବଂ ଧ୍ୱନିରେ ବିରଚିତ କବିତା ହେଉଛି ସଂଗୀତ । ସଂଗୀତର ସୁଲଳିତ ମଧୁର ଛନ୍ଦ ବ୍ୟତୀତ କବିତା କିମ୍ବା କବିତାର ସରସ ଭାବ ବ୍ୟତୀତ ସଂଗୀତ ପାଠକ ବା ଶ୍ରୋତାଙ୍କୁ ଆଲୋଡ଼ିତ କରିପାରେ ନାହିଁ । କବିତାର ଭାବ ହେଉଛି ପ୍ରାଣ କିନ୍ତୁ ସଂଗୀତର କବିତା ହେଉଛି ପ୍ରାଣ ସଦୃଶ, ତେଣୁ ଉଚ୍ଚକୋଟୀର ସଂଗୀତ ସରସ ଭାବେ ସଂପନ୍ନ ହେବା ଉଚିତ – ଏ କଥା ପଦାବଳୀ ଯୁଗର କବିଗଣ ଖୁବ୍ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ଶାସ୍ତ୍ରୀୟ ସଂଗୀତର ଲକ୍ଷଣକୁ ବୁଝି ସଂଗୀତ ଶିକ୍ଷାକରି କାବ୍ୟ କବିତାମାନ ରଚନା କରି ପଦାବଳୀ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସେମାନେ ସ୍ୱରଚିତ ପଦାବଳୀରେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଭକ୍ତି ଓ ପ୍ରୀତିର ସୁମଧୁର ଭାବକୁ ଉପଜୀବ୍ୟ କରି ତାହାର ଆତ୍ମିକ ବିଭବକୁ ପରିପୁଷ୍ଟ କରିବା ସଂଗେ ସଂଗେ ରାଗ, ତାଳ ବାଦ୍ୟ ସମନ୍ୱିତ ସାଙ୍ଗୀତିକ ପ୍ରକାଶଭଙ୍ଗୀ ମାଧ୍ୟମରେ ତାହାର ଆଙ୍ଗିକ ସୌଷ୍ଠବ ବୃଦ୍ଧି କରିପାରିଛନ୍ତି । କବିତାର ସରସ ଭାବ ଓ ସଂଗୀତର ସ୍ୱର ମାଧୁର୍ଯ୍ୟର ସମନ୍ୱୟରେ ଓଡ଼ିଆ ପଦାବଳୀ ସାହିତ୍ୟ ଯୁଗ ଯୁଗ ଧରି ପାଠକ ତଥା ଶ୍ରୋତାଙ୍କ ଚିତ୍ତହରଣ ପୂର୍ବକ ଜନପ୍ରିୟତା ଅର୍ଜନ କରିଆସିଅଛି ।

---

ସହକାରୀ ଗବେଷିକା
ଶାସ୍ତ୍ରୀୟ ଓଡ଼ିଆ ଉତ୍କର୍ଷ ଅଧ୍ୟୟନ କେନ୍ଦ୍ର
ଶିକ୍ଷା ମନ୍ତ୍ରାଳୟ, ସର୍ଦ୍ଦାର ପଟେଲ ହଲ୍ କମ୍ପ୍ଲେକ୍ସ
ଭୁବନେଶ୍ୱର



# ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟରେ ବାଲେଶ୍ୱର ଜିଲ୍ଲାର ଭୂମିକା

**ହେମନ୍ତ କୁମାର ନାୟକ**

ପ୍ରାଚୀନ ଓଡିଶାର ନୌବାଣିଜ୍ୟରେ ଉପକୂଳ ବାଲେଶ୍ୱର ଜିଲ୍ଲାର ଭୂମିକା ସର୍ବାଧିକ ଥିଲା । ଏହି ଜିଲ୍ଲାର ୧୩୭ କି.ମି. ବିସ୍ତୀର୍ଣ୍ଣ ଉପକୂଳରେ ଛୋଟ ବଡ ବନ୍ଦରଗୁଡିକ ନୌବାଣିଜ୍ୟ ନିମନ୍ତେ ପ୍ରୋତ୍ସାହିତ କରୁଥିଲା । ଜିଲ୍ଲା ମଧ ଦେଇ ସୁବର୍ଣ୍ଣରେଖା, ବୁଢାବଳଙ୍ଗ, କାଂସବାଂସ ଇତ୍ୟାଦି ନଦୀଗୁଡିକ ପ୍ରବାହିତ ହୋଇ ବଙ୍ଗୋପସାଗରରେ ମିଶଛି । ଗଢିଉଠିଥିବା ପ୍ରାକୃତିକ ବନ୍ଦରଗୁଡିକ ମଧ୍ୟରେ ତାଳସାରି, କୀର୍ତ୍ତନିଆ, ବାହାବଳପୁର, ଚାନ୍ଦିପୁର, ଇଞ୍ଚୁଡ଼ି ଇତ୍ୟାଦି ଛୋଟ ଛୋଟ ବନ୍ଦର ବାଲେଶ୍ୱର ଜିଲ୍ଲାକୁ ଏକ ମୁଖ୍ୟ ବ୍ୟବସାୟିକ କେନ୍ଦ୍ରରେ ପରିଣତ କରିଥିଲା ।

୧୬୨୫ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ପର୍ତ୍ତୁଗୀଜମାନେ ପ୍ରଥମ ଉପନିବେଶ ସ୍ଥାପନ କରିଥିଲେ । ଇଂରେଜମାନେ ୧୬୩୩ ଓ ଡେନ୍‌ମାନେ ୧୬୩୬ରେ ସେମାନଙ୍କର ବ୍ୟବସାୟିକ ଉପନିବେଶ ସ୍ଥାପନ କରିଥିଲେ । ଫରାସୀମାନେ ୧୬୭୩ ରୁ ୧୬୯୩ ମଧ୍ୟରେ ସେମାନଙ୍କର ବ୍ୟବସାୟ ଆରମ୍ଭ କରିଥିଲେ । ଇତିହାସରୁ ଜଣାପଡେ ପ୍ରାୟ ପାଞ୍ଚୋଟି ୟୁରୋପୀୟ ସଂସ୍ଥା ବାଲେଶ୍ୱରରେ ସେମାନଙ୍କର ବ୍ୟବସାୟିକ ଉପନିବେଶ ଆରମ୍ଭ କରିଥିଲେ । ଡଚ୍‌ମାନେ ମଧ ୧୬୩୬ ପାଖାପାଖି ସମୟରେ ସେମାନଙ୍କର ନୌବାଣିଜ୍ୟ ବାଲେଶ୍ୱରଠାରେ ଆରମ୍ଭ କରିଥିଲେ । ବାଲେଶ୍ୱର ବନ୍ଦରରେ ନୌବାଣିଜ୍ୟରେ ଇଂରେଜ, ଡଚ୍ ଓ ଡେନ୍‌ମାନେ ପ୍ରମୁଖ ଅଂଶୀଦାର ଥିଲେ । ସପ୍ତଦଶ ଶତାବ୍ଦୀରେ ୟୁରୋପୀୟ ବଣିକମାନଙ୍କ ସମେତ ବାଲେଶ୍ୱରର ଅନେକ ବ୍ୟବସାୟୀ ଓଡିଶା ଓ ପଶ୍ଚିମବଙ୍ଗରେ ବାଣିଜ୍ୟିକ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ । ଖେମ୍‌ଚାନ୍ଦ୍, ଚିନ୍ତାମଣି, ଗୋଖଲଚାନ୍ଦ୍, ଗଙ୍ଗାରାମ, ରାଜାରାମ, ଶିବରାମ, ନିଲୁ ସାହା, ନଇ ଦାସ, ୟୁସୁଫ ଖାଁ, ଏନାୟତ ଖାଁ ପ୍ରଭୃତି ବ୍ୟବସାୟୀ ସେମାନଙ୍କ ମଧ୍ୟରେ ଅନ୍ୟତମ । ବାଲେଶ୍ୱରର ସବୁଠୁ ଅଧିକ ପ୍ରଭାବଶାଳୀ ବଣିକମାନଙ୍କ ମଧ୍ୟରେ ଖେମ୍‌ଚାନ୍ଦ୍ ଓ ଚିନ୍ତାମଣି ସାହାଙ୍କ ନାମ ବ୍ରିଟିଶ କମ୍ପାନିର ଦସ୍ତାବିଜ୍‌ରୁ ଜଣାପଡେ । ୟୁରୋପୀୟ କମ୍ପାନିମାନଙ୍କ ଦଲାଲ ଭାବେ ସେମାନେ ପଣ୍ୟଦ୍ରବ୍ୟର ଆମଦାନୀ ଓ ରପ୍ତାନି କାମ କରୁଥିଲେ ।

ବଙ୍ଗୋପସାଗରର ନାମ କଳିଙ୍ଗ ସାଗର ଥିବା କଥା ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ ପୁସ୍ତକରୁ ଜଣାପଡେ । ଏହି ସାଗରରେ ଥିବା ସମସ୍ତ ଦ୍ୱୀପଗୁଡିକ କଳିଙ୍ଗ ଦେଶ ନାମରେ ଖ୍ୟାତ ଥିଲା । ତେଣୁ କଳିଙ୍ଗସାଗରରେ କଳିଙ୍ଗ ଦେଶର ଜାହାଜଗୁଡିକ ପ୍ରାଧାନ୍ୟ ବିସ୍ତାର କରି ନୌବାଣିଜ୍ୟ କାର୍ଯ୍ୟରେ ଲିପ୍ତ ଥିଲେ । ସେ ସମୟର ତାମ୍ରଲିପି ବନ୍ଦର ବାଲେଶ୍ୱର ଜିଲ୍ଲାରେ ଥିଲା । ଏହା ରୂପନାରାୟଣ ନଦୀର ମୁହାଣରେ ଥିଲା, ଯାହାକି ବର୍ତ୍ତମାନ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାର 'ତମଲୋକ' ନାମରେ ପରିଚିତ । ଭାରତର ବୃହତ୍ତମ ବନ୍ଦରମାନଙ୍କ ମଧ୍ୟରୁ ଏହା ଥିଲା ଅନ୍ୟତମ, ଯାହାକି ଉଭୟ ଜଳ ଓ ସ୍ଥଳପଥରେ ଭାରତର ବିଭିନ୍ନ ଅଂଚଳ ସହ ସଂଯୁକ୍ତ ଥିଲା । ଏହି ବନ୍ଦରକୁ ଅକ୍ତିଆର କରିବା ଅଶୋକଙ୍କ କଳିଙ୍ଗ ଆକ୍ରମଣର ମୁଖ୍ୟ କାରଣ ଥିଲା । ମଗଧକୁ ଜଳପଥ ନ ଥିବାରୁ ଏହି ବନ୍ଦରକୁ ଅଧୀନସ୍ଥ କଲେ ମଗଧର ନୌବାଣିଜ୍ୟ ପରମ୍ପରା ସୃଷ୍ଟି ହୋଇପାରିବ ବୋଲି ଅଶୋକଙ୍କ ଧାରଣା ଥିଲା ।

ମହାଭାରତ, ଭାରତୀୟ ଓ ସିଂହଳୀ ସାହିତ୍ୟରେ, ଚୀନ୍, ଗ୍ରୀସ୍ ଓ ରୋମ୍‌ର ପ୍ରାଚୀନ ଗ୍ରନ୍ଥମାନଙ୍କରେ ମଧ୍ୟ ତାମ୍ରଲିପି ବନ୍ଦର ବିଷୟରେ ଉଲ୍ଲେଖ ଅଛି । ଚାଣକ୍ୟଙ୍କ ଅର୍ଥଶାସ୍ତ୍ର ଅନୁସାରେ ସେସମୟରେ ନୌବାଣିଜ୍ୟ ପରମ୍ପରାରେ ତାମ୍ରଲିପି ବନ୍ଦର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଥିଲା ।

ଆକବରଙ୍କ ରାଜତ୍ୱ ସମୟରେ ପିପ୍‌ଲି ଏକ ମୁଖ୍ୟ ନୌବାଣିଜ୍ୟ କେନ୍ଦ୍ର ଥିଲା । ସୁବର୍ଣ୍ଣନଦୀ କୂଳରେ ଥିବା ଏହି ବନ୍ଦର ପର୍ତ୍ତୁଗୀଜମାନଙ୍କର ଏକ ମୁଖ୍ୟ ବନ୍ଦର ଥିଲା । ସେହିପରି ବୁଢାବଳଙ୍ଗ ନଦୀ ମୁହାଣରେ ବାଲେଶ୍ୱର ବନ୍ଦର ଅବସ୍ଥିତ ଥିଲା । ସେ ସମୟରେ ଏହା ଏକ ଉନ୍ନତ ବନ୍ଦର ଥିଲା । ଭାରତ ଓ ବିଦେଶର ବିଭିନ୍ନ ଅଂଚଳ ସହ ଆମଦାନୀ ରପ୍ତାନି କ୍ଷେତ୍ରରେ ବାଲେଶ୍ୱର ବନ୍ଦର ସକ୍ରିୟ ଥିବା କଥା ଐତିହାସିକମାନଙ୍କ ମତାମତରୁ ଜଣାପଡେ । ଭାରତର ପୂର୍ବ ଉପକୂଳ ଅଞ୍ଚଳରେ ଢାକା, ଚିଟାଗଙ୍ଗ, ନରଣପୁର, ବିଶାଖାପଟନମ୍, ମୁସଲିପଟନମ୍, ମାନ୍ଦ୍ରାସ ପ୍ରଭୃତି ବନ୍ଦର ସହ ପଶ୍ଚିମ ଉପକୂଳରେ ସୁରାଟ ଓ କାଲିକଟ ପ୍ରଭୃତି ବନ୍ଦର ସହିତ ବାଲେଶ୍ୱର ବନ୍ଦରର ବାଣିଜ୍ୟିକ ସମ୍ପର୍କ ଥିଲା । ବଙ୍ଗ, ବିହାର, ଗୁଜୁରାଟ, କେରଳ ପ୍ରଭୃତି ରାଜ୍ୟ ସହ ଆନ୍ତଃପ୍ରାଦେଶିକ ବାଣିଜ୍ୟ ସମ୍ପର୍କ ରହିଥିବା ବେଳେ ପାର୍ଶିଆ, ମାଲଦ୍ୱୀପ, ବର୍ମା, ଇଣ୍ଡୋନେସିଆ, ଚୀନ୍, ସିଲଂ, ଇଂଲଣ୍ଡ ପ୍ରଭୃତି ଦେଶ ସହ ଏହାର ବୈଦେଶିକ ବାଣିଜ୍ୟ ସମ୍ପର୍କ ଥିଲା । ଦେଶ ବିଦେଶରେ ଏହି ବାଣିଜ୍ୟିକ ସମ୍ପର୍କ ବାଲେଶ୍ୱରର କୃଷିଜାତ ତଥା ଶିଳ୍ପଜାତ ଉତ୍ପାଦନ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ସ୍ଥାନୀୟ ବଣିକ ତଥା ୟୁରୋପୀୟ ବ୍ୟବସାୟୀମାନେ କପାସୂତା, ରେଶମ, ପାଟଲୁଗା, ଅଦା, ଚାଉଳ, ଲୁଣ, ସୋରା ପ୍ରଭୃତି ରପ୍ତାନି କରୁଥିଲାବେଳେ କଉଡି, ତମ୍ବା, ଗନ୍ଧକ, ଧୂଆଁପତ୍ର, ସିନ୍ଦୂର, ଗୁଆ, ଶଙ୍ଖ, ହାତୀ, ହାତୀଦାନ୍ତ ପ୍ରଭୃତି ଆମଦାନୀ କରୁଥିଲେ । ପର୍ତ୍ତୁଗୀଜମାନଙ୍କ ବ୍ୟବସାୟ ଫଳରେ ପିପ୍‌ଲି ଭଳି ବନ୍ଦର ସହର ବାଲେଶ୍ୱର ମଧ୍ୟ ପୂର୍ବ ଭାରତରେ ଦାସ ବ୍ୟବସାୟର ମୁଖ୍ୟ କେନ୍ଦ୍ର ପାଲଟିଥିଲା । ୧୬୮୦ ଖ୍ରୀଷ୍ଟାବ୍ଦରେ ବିଶିଷ୍ଟ ବ୍ୟବସାୟୀ ଖେମ୍ ଚାନ୍ଦ ଏଠାକୁ ବିକ୍ରୟ ଉଦ୍ଦେଶ୍ୟରେ କେତେଗୁଡିଏ ହାତୀ ଆଣିଥିଲେ । ୧୭୬୨ ଖ୍ରୀଷ୍ଟାବ୍ଦରେ ସିଆମ୍‌ର ରାଜା ମଧ୍ୟ ଏଠାକୁ କେତେଗୁଡିଏ ହାତୀ ଆଣିଥିଲେ । ଏହି ବନ୍ଦରରୁ ଆଡଭାଇସ୍, ଡାଲମିଂ, ୟୁନିଟି, ଭାଗବତ ପ୍ରସାଦ, ମୁରା ହେଡ୍ଡି, କ୍ରିଷ୍ଣ ପ୍ରସାଦ ମାକମୋଡ଼ି, ହୋପ୍ ୱେଲ୍, ବିନିଟୋ, ଗ୍ରେ ହାଉଣ୍ଡ, ହାପି ଏଣ୍ଡ୍ରାନ୍‌ସେସ୍, ଜୋହାନା, ଫାଲକନ୍, ମେରି ରୋଜ୍, ହାରି, ହେନେରୀ ୱିଲିୟମ, ବେଙ୍ଗଲ ମର୍ଚାଣ୍ଟ, ଡିଫେନ୍ସ ସାମ୍ପସନ୍, ରୋଚେଷ୍ଟର, ୱେଲ୍‌ଫେୟାର, କେଶରୀ ମର୍ଚାଣ୍ଟ, ଗୁରୁ ପ୍ରସାଦ, ଡାଇମଣ୍ଡ ପ୍ରଭୃତି ଜାହାଜ ଦେଶ ବିଦେଶକୁ ଯାତ୍ରା କରୁଥିଲା ।

ପ୍ରାୟ ଦୁଇ ଶତାବ୍ଦୀ ୟୁରୋପୀୟମାନେ ବାଲେଶ୍ୱରରେ ବାଣିଜ୍ୟ କରୁଥିଲେ । ବିଭିନ୍ନ ପ୍ରକାର ଭୌଗଳିକ, ରାଜନୈତିକ, ବ୍ୟବସାୟିକ କାରଣ ପାଇଁ ଏହି ବିଦେଶୀ ବଣିକମାନେ ଧିରେ ଧିରେ ବାଲେଶ୍ୱର ପ୍ରତି ଆସ୍ଥା ହରାଇଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାଙ୍କ ଅଧୀନକୁ ବାଲେଶ୍ୱର ଯିବା ପରେ ୟୁରୋପୀୟ ବ୍ୟବସାୟୀମାନଙ୍କ ବ୍ୟବସାୟରେ ବାଧା ସୃଷ୍ଟି ହୋଇଥିଲା । ଆହୁରି ମଧ୍ୟ ସେମାନଙ୍କ ମଧ୍ୟରେ ସାମୁଦ୍ରିକ ବାଣିଜ୍ୟ ପାଇଁ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା । ସବୁ ଗୋଷ୍ଠୀକୁ ଇଂରେଜମାନେ ପଛରେ ପକାଇ ଦେଇଥିଲେ । ୧୭୯୦ ଖ୍ରୀଷ୍ଟାବ୍ଦରେ କଲିକତାର ହୁଗୁଲି ବନ୍ଦର ନିର୍ମିତ ହେବା ସହ ବୁଢ଼ାବଳଙ୍ଗ ନଦୀର ମୁହାଣ ଧୀରେ ଧୀରେ ପୋତି ହେବା ଫଳରେ ବାଲେଶ୍ୱର ବନ୍ଦରର ଗୁରୁତ୍ୱ ହ୍ରାସ ପାଇଥିଲା ।

ଶେଷରେ ଏତିକି କୁହାଯାଇପାରେ ଯେ, ବାଲେଶ୍ୱର ଅଞ୍ଚଳରେ ଛନୁଆ, ସାରଥା, ଲିଛନପୁର, ଚୁଡାମଣି ପ୍ରଭୃତି ବନ୍ଦର ଲୁଣ, ଧାନ ଓ ଚାଉଳ ବ୍ୟବସାୟର ମୁଖ୍ୟ କେନ୍ଦ୍ର ଥିଲା । ସାରଥା ଦୁଇ ନଦୀର ସନ୍ଧି ସ୍ଥଳରେ ଅବସ୍ଥିତ ଥିଲା । ଚୁଡାମଣି, ଲିଛନପୁର ପ୍ରଭୃତି ବନ୍ଦର କାଂସବାଂସ ନଦୀ ମୁହାଣରେ ଅବସ୍ଥିତ ଥିଲା । ଏହିସବୁ ବନ୍ଦର ଓ ବ୍ୟବସାୟିକ ଉପନିବେଶ ଅତୀତ ଉତ୍କଳ (ଓଡ଼ିଶା)ରେ ବାଲେଶ୍ୱର ଜିଲ୍ଲାର ସମୃଦ୍ଧ ନୌବାଣିଜ୍ୟ ପରମ୍ପରାକୁ ଉଜ୍ଜୀବିତ କରିଥାଏ ।

---

ଉପ ନିର୍ଦ୍ଦେଶକ, ସୂଚନା ଓ ଲୋକସମ୍ପର୍କ ବିଭାଗ
କେନ୍ଦ୍ରାଞ୍ଚଳ, କଟକ

# ପୁସ୍ତକ ହିଁ ମଣିଷର ପ୍ରକୃତ ବନ୍ଧୁ

**ଜୟଶଙ୍କର ନାୟକ**

ସଂସ୍କୃତ ଭାଷାରେ ବହିକୁ 'ପୁସ୍ତକ' ବୋଲି ଅଭିହିତ କରାଯାଏ । ପୁସ୍ତକ ହେଉଛି ଜ୍ଞାନର ଭଣ୍ଡାର । ଏହା ମଣିଷର ସର୍ବଶ୍ରେଷ୍ଠ ବନ୍ଧୁ ଓ ମାର୍ଗଦର୍ଶକ ତଥା ମଣିଷର ସାଥୀ । କେହି କେହି ବହିକୁ ଜୀବନର ସାଥୀ ମଧ୍ୟ କରିଛନ୍ତି । ଏହା ପଛରେ ଅନେକ କାରଣ ଥାଇପାରେ ମାତ୍ର ବିଶ୍ୱରେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କ ଜୀବନରେ ବହିର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଥିଲା । ଗୋଟିଏ ଗୋଟିଏ ବହି ଜଣେ ଜଣେ ମଣିଷର ଜୀବନର ଗତିପଥ ମଧ୍ୟ ବଦଳାଇ ଦେଇଥାଏ । ବିଶ୍ୱର ସର୍ବମାନ୍ୟ ପୁସ୍ତକ ଭାବେ ହିନ୍ଦୁ ଧର୍ମର 'ଶ୍ରୀମଦ ଭଗବତ ଗୀତା', ଖ୍ରୀଷ୍ଟଧର୍ମର 'ବାଇବେଲ' ଓ ଇସଲାମ୍ ଧର୍ମର 'କୋରାନ' ବେଶ୍ ଆଦୃତି ଲାଭ କରିଛି । ଆଜି ବି ବିଶ୍ୱର କୋଣ ଅନୁକୋଣରେ ଏହି ଧର୍ମଗ୍ରନ୍ଥର ଆଦର ରହିଛି । ସେହିପରି ବିଶ୍ୱ ପ୍ରସିଦ୍ଧ ଲେଖକ ଓ ଦାର୍ଶନିକମାନଙ୍କ ସାହିତ୍ୟ କେବଳ ମଣିଷର ଜୀବନକୁ ବଦଳାଇ ଦେଇଛି ତାହା ନୁହେଁ, ଏପରି କେତେକ ବହି ବିଶ୍ୱକୁ ନୂତନ ଚିନ୍ତାଧାରା, ଆନ୍ଦୋଳନ ଓ ବିପ୍ଳବ ସୃଷ୍ଟି କରିବାରେ ମଧ୍ୟ ସହାୟକ ହୋଇପାରିଛି । ରୁଷୋ, ଭଲଟେୟାର ମଣ୍ଟେସ୍କୁ ଦାର୍ଶନିକ ଫରାସୀ ରାଷ୍ଟ୍ର ବିପ୍ଳବ ସୃଷ୍ଟି କଲା ପରି ଗାନ୍ଧିଜୀଙ୍କ 'ହିନ୍ଦ୍ ସ୍ୱରାଜ' । ଭାରତରେ ଓ ବିଶ୍ୱରେ ସତ୍ୟ, ଅହିଂସାର ରାଜନୈତିକ ପ୍ରୟୋଗରେ ନୂଆ କୌଶଳର ବାଟ ଦେଖାଇଥିଲା । ସାହିତ୍ୟରେ ସେକ୍ସପିଅର, ଲିୟ ଟଲଷ୍ଟୟ, ରବୀନ୍ଦ୍ରନାଥ ଠାକୁରଙ୍କ କୃତି ଆଜି ବି ବିଶ୍ୱରେ ବହୁଳ ଭାବରେ ପ୍ରସାରିତ ଓ ପ୍ରଚାରିତ । କବିତା, କଳା, ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଆଦି ସବୁ କ୍ଷେତ୍ରରେ ସାହିତ୍ୟ ସାଧନା ବିଶ୍ୱକୁ ନୂଆ ଜୀବନ ଦେଇଛି । ବିଶ୍ୱରେ ଏହି କାରଣରୁ ସାହିତ୍ୟର ଲିଖନ, ପଠନ ଓ ପ୍ରକାଶକୁ ଉତ୍ସାହିତ କରିବା ପାଇଁ ଜାତିସଂଘ ପକ୍ଷରୁ 'ବିଶ୍ୱ ପୁସ୍ତକ ଦିବସ' ପାଳିତ ହେଉଛି ।



ୟୁନେସ୍କୋ ଅନୁମୋଦନରେ ୧୯୯୫ ମସିହାରୁ ପ୍ରତିବର୍ଷ ଏପ୍ରିଲ ୨୩ ତାରିଖ 'ବିଶ୍ୱପୁସ୍ତକ ଦିବସ' ଭାବେ ପାଳିତ ହେଉଛି । ସ୍ପେନ୍‌ର ଜଣାଶୁଣା ଲେଖକ ମିଗୁଏଲ ଡି. କରଭାଣ୍ଟ ୧୬୦୦ ଶତାବ୍ଦୀବେଳକୁ ପୁସ୍ତକ ଦିବସ ପାଳନ ନିମନ୍ତେ ଲୋକଙ୍କୁ ଉତ୍ସାହିତ କଲେ, କିନ୍ତୁ ଲୋକେ ତାଙ୍କର ଏହି କାର୍ଯ୍ୟକଳାପକୁ ପରିହାସ କରିଥିଲେ । ନିଜର ଏହି ଉଦ୍ୟମକୁ ସେ ଜୀବିତ ଥିବା ବେଳେ ପୂର୍ଣ୍ଣରୂପ ଦେଇ ପାରି ନ ଥିଲେ, ତାଙ୍କର ଏହି ଚେଷ୍ଟା କିନ୍ତୁ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଜାତିସଂଘ ଲେଖକ ମିଗୁଏଲଙ୍କ ମୃତ୍ୟୁ ପରେ ତାଙ୍କ ମୃତ୍ୟୁ ଦିବସ ଏପ୍ରିଲ ୨୩କୁ

'ବିଶ୍ୱ ପୁସ୍ତକ ଦିବସ' ଭାବେ ପାଳନ କରିବାକୁ ଘୋଷଣା କରିଥିଲେ । ପ୍ରାୟ ପଞ୍ଚଦଶ ଶତାବ୍ଦୀବେଳକୁ ମୁଦ୍ରିତ ପୁସ୍ତକ ଜନ୍ମ ନେଲା । ମୁଦ୍ରଣ ଯନ୍ତ୍ର ଉଦ୍ଭାବନ ପରେ ଲୋକେ ମୁଦ୍ରିତ ପୁସ୍ତକ ପଢିବାର ସୁଯୋଗ ପାଇଲେ । ଏହା ପୂର୍ବରୁ ଲୋକେ ତାଳପତ୍ର ଓ ବାଉଁଶରେ ଲେଖା ଅକ୍ଷରକୁ ପଢୁଥିଲେ । ହିସାବରୁ ଜଣାପଡିଛି, ବିଶ୍ୱରେ ମୁଦ୍ରିତ ପୁସ୍ତକର ସଂଖ୍ୟା ତେର କୋଟିରୁ ଅଧିକ । ହ୍ୟାରି ପୋଟର, କୋଟେସନ୍‌ସ ଫ୍ରମ ଚେୟାରମ୍ୟାନ ମାଓ ସେତୁଙ୍ଗ ବିଶ୍ୱର ସର୍ବାଧିକ ପଠିତ ପୁସ୍ତକ । ଏ ବର୍ଷ ଆମେରିକା ଇଉରୋପର ଅଧିକାଂଶ ବହି ଦୋକାନରୁ ପାଠକଙ୍କୁ ବହି କିଣିଲେ ରିହାତି ମିଳୁ ଥିବାର ଜଣାପଡିଛି । ବର୍ତ୍ତମାନ ସ୍ମାର୍ଟ ଯୁଗରେ ଲୋକେ ଆଉ ବହି କିଣି ପଢିବାକୁ ଆଗ୍ରହ କରୁନାହାନ୍ତି । ଟାବଲେଟ, ଲ୍ୟାପଟପ୍‌ରେ ବହି ଡାଉନଲୋଡ କରି ପଢୁଥିବାର ବହି ସେମାନଙ୍କ ପାଇଁ ଆଲୋଡା ପାଲଟି ଯାଇଛି । ବହି ପ୍ରତି ସମସ୍ତଙ୍କୁ ପୁଣି ଆକର୍ଷିତ କରିବାକୁ ଏହି ପୁସ୍ତକ ଦିବସ ପାଳନ କରିବାକୁ ଗୁରୁତ୍ୱ ଦିଆଯାଉଛି ।

ପୁସ୍ତକ ହେଉଛି ଜ୍ଞାନର ପରିସୀମାକୁ ବୃଦ୍ଧି କରିବାର ଏକ ବିଳିଷ୍ଟ ମାଧ୍ୟମ । ଏହା ଆମକୁ ସଂସ୍କାରବାନ୍ ଓ ଦାୟିତ୍ୱବାନ୍ କରିବା ସହିତ ଆମର ଜ୍ଞାନ, ତର୍କଶକ୍ତି ଓ ବୌଦ୍ଧିକ କ୍ଷମତାର ବିକାଶ କରାଇଥାଏ । ସ୍କୁଲ ଜୀବନରୁ ଆରମ୍ଭ ହୋଇଥିବା ପାଠପଢା ଜୀବନର ଶେଷ ସମୟ ପର୍ଯ୍ୟନ୍ତ କାମରେ ଆସିଥାଏ । ଅଜ୍ଞାନ ରୂପୀ ଅନ୍ଧକାରକୁ ନାଶ କରି ଜ୍ଞାନର ଆଲୋକରେ ଆମ ଜୀବନକୁ ପରିସ୍ଫୁଟିତ କରିଥାଏ । ସୁଖଦୁଃଖରେ ବିଚଳିତ ନ ହୋଇ ଆଗକୁ ବଢିବାର ଆଶ୍ୱାସନା ଆମ ଭିତରେ ଜାଗ୍ରତ କରାଏ । ଜୀବନରେ ଆରମ୍ଭରୁ ଶେଷ ଯାଏଁ ଆମେ ତା' ସହ କେତେ ମୁହୂର୍ତ୍ତ ଯେ ବିତେଇ ଦେଇଥାଉ, ତାହା ଆମ କଳ୍ପନାର ଊର୍ଦ୍ଧ୍ୱରେ । ସେକ୍ସପିଅର ତାଙ୍କ ଜୀବନକାଳରେ ୩୫ଟି ନାଟକ ଓ ୨୦୦ରୁ ଊର୍ଦ୍ଧ୍ୱ କବିତା ଲେଖିଥିଲେ । ସାହିତ୍ୟ ଜଗତରେ ସେକ୍ସପିଅରଙ୍କ ସମକକ୍ଷ ଲେଖକ ମିଳିବା ଦୁର୍ଲ୍ଲଭ । ସେହିପରି ପୁସ୍ତକ ଦୁନିଆଁରେ କପିରାଇଟ୍ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ବିଶ୍ୱପୁସ୍ତକ ଦିବସ ଅବସରରେ ଏହି ପ୍ରସଙ୍ଗ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଏ । ଏବେର ଇଣ୍ଟରନେଟ୍ ଦୁନିଆରେ ବି ବହିର ଆଦର କମିନି । ଅବଶ୍ୟ ଏବେ ବହିର ସ୍ଥାନ ନେଇଛି ଇ–ବୁକ୍ ବା ଇଣ୍ଟରନେଟ୍ ବୁକ । ଅତ୍ୟାଧୁନିକ ଜ୍ଞାନକୌଶଳ ବଳରେ ଡିଜିଟାଇଜେସନ୍ ଦ୍ୱାରା ବିଶାଳ ପାଠାଗାର ପ୍ରସ୍ତୁତ ହୋଇଛି । ଘରେ ବସି ଗୋଟିଏ କ୍ଲିକ୍‌ରେ ଏବେ ପୁସ୍ତକ ପଢିବାର ସୁଯୋଗ ପାଉଛନ୍ତି ପୁସ୍ତକ ପ୍ରେମୀମାନେ । ଟିଭି, ଇଣ୍ଟରନେଟ୍ ମୋବାଇଲ, ସୋସିଆଲ ନେଟୱାର୍କିଂ ସାଇଟ୍‌ର ବହୁଳ ବ୍ୟବହାର ଯୋଗୁଁ ଲୋକେ ବହି ଅପେକ୍ଷା ଏବେ ଇଣ୍ଟରନେଟ୍‌ରେ ଅଧିକ ସମୟ ବିତାଉଛନ୍ତି । ଏଥିଯୋଗୁଁ ଛୋଟ ଛୋଟ ପିଲାଠାରୁ ଆରମ୍ଭ କରି ବଡ ଲୋକ ପର୍ଯ୍ୟନ୍ତ ସମସ୍ତଙ୍କର ଭରସା ଗୁଗୁଲ ଉପରେ ବଢିଛି, ଫଳରେ ସ୍ମରଣଶକ୍ତି ହ୍ରାସ ପାଉଛି । ଏହାଦ୍ୱାରା ମାନସିକ ବିକାଶ ହୋଇପାରୁନି । କିନ୍ତୁ ଏତେ ସବୁ ମଧ୍ୟରେ ବହିର ଲୋକପ୍ରିୟତା ଏବେ ବି ବଳବତ୍ତର ରହିଛି । କାହାକୁ ଜୀବନୀ ଭଲ ଲାଗେତ କାହାକୁ ଉପନ୍ୟାସ । କିଏ କ୍ଷୁଦ୍ର ଗଳ୍ପ ପଢିବାକୁ ଭଲ ପାଏ ତ ପୁଣି କିଏ କବିତା ଆଉ ନାଟକ । ତେବେ ପୁସ୍ତକ ସମସ୍ତଙ୍କର ପସନ୍ଦ ହୋଇ ରହିଛି । ଗୋଟିଏ ଭଲ ବହି ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶ କରିବା ସହ ତା'ର ସୁନ୍ଦର ଭବିଷ୍ୟତ ଗଢିବାରେ ମଧ୍ୟ ସହାୟକ ହୋଇଥାଏ । ତେଣୁ ବହି ହିଁ ମଣିଷର ପ୍ରକୃତ ବନ୍ଧୁ ବୋଲି ବହୁ ବିଶିଷ୍ଟ ବ୍ୟକ୍ତିମାନେ ମତ ପ୍ରକାଶ କରିଛନ୍ତି । ବହିର ଲୋକପ୍ରିୟତା ପାଠକୀୟତା ଓ ସାହିତ୍ୟର ଆଭିମୁଖ୍ୟକୁ ନେଇ 'ବିଶ୍ୱ ବହି ଦିବସ'ର ମଧ୍ୟ ଗୁରୁତ୍ୱ ରହିଛି ।

ଏହାକୁ ସାଧାରଣ ଭାବରେ ଦେଖିବାକୁ ଗଲେ କେତେଗୁଡିଏ ମୁଦ୍ରିତ କାଗଜର ଏକତ୍ରିକରଣରେ ଏହା ସୃଷ୍ଟି । ବହିର ଇତିହାସ ଅତି ପୁରୁଣା । ପୂର୍ବକାଳରେ ସାଙ୍କେତିକ ଭାଷା ମାଧ୍ୟମରେ କାଗଜ ପୃଷ୍ଠାରେ ମଣିଷ ନିଜର ଭାବର ଆଦାନ ପ୍ରଦାନ ନିମନ୍ତେ ବହି ବାହାର କରିଥିଲା । କିନ୍ତୁ ସମୟ ସ୍ରୋତରେ ଆଧୁନିକତାର ସ୍ପର୍ଶରେ ମଣିଷ ବିଜ୍ଞାନ ଯୁଗର ଗ୍ରାହକ ସାଜି ରଚନା କରିଚାଲିଛି ଅନେକ ବହି ବା ପୁସ୍ତକ । ଭିନ୍ନ ଭିନ୍ନ ଭାଷାରେ ମୁଦ୍ରିତ ଭିନ୍ନ ଭିନ୍ନ ଚରିତ୍ରକୁ ନେଇ ବିଭିନ୍ନ ପ୍ରକାରର ପୁସ୍ତକ ଆମେ

ଦେଖିବାକୁ ପାଉଛେ । ଦିନେ ଯେଉଁ ପୁସ୍ତକ ମଣିଷର ଭାବର ଆଦାନ ପ୍ରଦାନ ପାଇଁ ବ୍ୟବହୃତ ହେଉଥିଲା, ଆଜି ତାହା ମଣିଷର ବନ୍ଧୁ ପାଲଟିଛି । ଖାଲି ବନ୍ଧୁ ନୁହେଁ ତ ଅନ୍ତରଙ୍ଗ ବନ୍ଧୁ ।

ଶିଶୁମାନଙ୍କଠାରୁ ଯୁବପିଢି ଓ ଯୁବ ପିଢିଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ବହିର ବ୍ୟବହାର ଦେଖିବାକୁ ମିଳୁଛି । ଏହାର ଆଦର କାଳଜୟୀ ପାଲଟିଯାଇଛି । ପ୍ରଖ୍ୟାତ ଲେଖକ ମାର୍କସ ଟୁଲିୟସ ସିସେରୋଙ୍କ ମତରେ, ବହି ବିନା କୋଠରିଟି ଆତ୍ମା ବିନା ଶରୀର ପରି । ଅର୍ଥାତ୍ ପୁସ୍ତକ ବା ବହିକୁ ବାଦ୍ ଦେଲେ ପୂର୍ଣ୍ଣାଙ୍ଗ ମନୁଷ୍ୟତ୍ୱର ପରିସ୍ଫୁଟନ ହୋଇ ନ ପାରେ । ଏକ ସୁସ୍ଥସମାଜ ଗଠନ ନିମନ୍ତେ ଲୋଡା ସୁସ୍ଥ ନାଗରିକ । ସୁସ୍ଥ ନାଗରିକ ହେବା ପାଇଁ ହେଲେ ଅଜ୍ଞାନ ରୂପକ ଅନ୍ଧକାରକୁ ଦୂରୀଭୂତ କରିବାକୁ ପଡେ । ତେଣୁ ଛାତ୍ରଛାତ୍ରୀମାନେ ପୁସ୍ତକ ପଠନ କରିବା ଦ୍ୱାରା ଅଜ୍ଞାନ ରୂପୀ ଅନ୍ଧକାର ଦୂରେଇ ଯାଇଥାଏ । ପୁସ୍ତକଟି ଏକ ବ୍ୟକ୍ତିର ଜୀବନ ଶୈଳୀରେ ପରିବର୍ତ୍ତନ ସହ ଉତ୍ତମ ଚରିତ୍ର ଗଠନ, ଦୃଷ୍ଟିକୋଣର ପରିବର୍ତ୍ତନ ଓ ମୌଳିକ ଜ୍ଞାନର ବିକାଶ, ବୌଦ୍ଧିକ ଜ୍ଞାନର ବିକାଶ ତଥା ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶରେ ସହାୟକ ହୋଇଥାଏ । ପୁସ୍ତକ ପଠନ ଦ୍ୱାରା ବ୍ୟକ୍ତିର ବ୍ୟକ୍ତିତ୍ୱ ନିଖୁଣ ଭାବେ ପରିସ୍ଫୁଟିତ ହୋଇଥାଏ । ତା' ଭିତରେ ଥିବା ବିଭିନ୍ନ ଚରିତ୍ର ସମ୍ବନ୍ଧରେ ଧାରଣା ଉଜ୍ଜୀବିତ ହୋଇଥାଏ । ଏହା ତା'ର ଜୀବନକୁ ବର୍ଷ ବର୍ଷ ଧରି ପ୍ରଭାବିତ କରିଥାଏ । କେବଳ ସେତିକି ନୁହେଁ ଶିଶୁଟିଏ ସୁନାଗରିକ ହୋଇ ସୁସ୍ଥ ସମାଜ ଗଠନ କରିବା ପାଇଁ ପୁସ୍ତକ ହେଉଛି ମାର୍ଗଦର୍ଶକ ।

ଏତଦ୍ ବ୍ୟତୀତ ଗୋଟିଏ ଗୋଟିଏ ପୁସ୍ତକ ମଧ୍ୟ ଜୀବନର ଗତିପଥ ବଦଳାଇ ଦେଇପାରେ । ପୁସ୍ତକରେ ବର୍ଣ୍ଣିତ ଭିନ୍ନ ଚରିତ୍ରକୁ ପଠନ କରିବା ଦ୍ୱାରା ଆମ ମନରେ ଆତ୍ମବିଶ୍ୱାସ ଜାଗ୍ରତ ହୁଏ । ଫଳରେ ନିଜର ଲକ୍ଷ୍ୟକୁ ହାସଲ କରିବା ସହଜ ମଧ୍ୟ ମନେ ହୁଏ । ସେହିଭଳି ଅନେକ ପୁସ୍ତକ ଜାତୀୟବାଦ ସୃଷ୍ଟି କରିବା ସହ ମଧ୍ୟ ନୂତନ ଚିନ୍ତାଧାରା ସୃଷ୍ଟି କରିଥାଏ । ରୁଷୋ, ଭଲଟେୟାର, ମଣ୍ଟେସ୍କୁ, କାର୍ଲମାର୍କ୍ସ, ଟଲଷ୍ଟୟ, ମହାତ୍ମା ଗାନ୍ଧି, ସ୍ୱାମୀ ବିବେକାନନ୍ଦ, ଶ୍ରୀ ଅରବିନ୍ଦ ପ୍ରମୁଖ ଯୋଗଜନ୍ମା ଲେଖକ ଯାହାଙ୍କର ଗୋଟିଏ ଗୋଟିଏ ପୁସ୍ତକ ଜନଜୀବନ, ରାଷ୍ଟ୍ର ଓ ଜାତିର ଗତିପଥ ବଦଳାଇ ଦେଇଛି । ଶ୍ରୀମଦ୍ ଭଗବତ ଗୀତା, କୋରାନ୍, ବାଇବେଲ ଏବେ ବି ବିଶ୍ୱବିଦିତ । କେବଳ ଧର୍ମ ଉପାଖ୍ୟାନ କାହିଁକି ଗଳ୍ପ, କବିତା, ଉପନ୍ୟାସ, ନାଟକ, ପୁରାଣ, ବେଦ ଆଦି ପୁସ୍ତକ ଆମ ଜୀବନ ଉପରେ ଅନେକ ମାତ୍ରାରେ ପ୍ରଭାବ ପକାଇଥାଏ । ବିଶେଷ କରି କୋମଳମତି ଛାତ୍ରଛାତ୍ରୀମାନେ ସେମାନଙ୍କର ପଢିବା ଅଭ୍ୟାସ କରିବା ନିହାତି ଜରୁରୀ । କାରଣ ଏହା ଶବ୍ଦକୋଷ ଏବଂ ଆତ୍ମଅଧ୍ୟୟନ କୌଶଳ ଗଠନ କରେ । ଶିଖିବା ଏବଂ ମନେ ରଖିବା ପାଇଁ ଆବଶ୍ୟକ କରୁଥିବା ସମସ୍ତ ତଥ୍ୟ ପୁସ୍ତକଗୁଡିକ ଧାରଣ କରିଥାଏ । ଭିନ୍ନ ଭିନ୍ନ ବହି ଭିନ୍ନ ଭିନ୍ନ ଜ୍ଞାନ ସୃଷ୍ଟି କରେ । ପ୍ରତ୍ୟେକ ଛାତ୍ରଛାତ୍ରୀ ଜୀବନରେ ପୁସ୍ତକଗୁଡିକ ଏକ କଳ୍ପନା ଜଗତରେ ପରିଚିତ ହେବା ବାହ୍ୟ ଜଗତ ବିଷୟରେ ଜ୍ଞାନ ପ୍ରଦାନ କରିବା ସେମାନଙ୍କର ପଢିବା ଲେଖିବା ଏବଂ କହିବା କୌଶଳର ଉନ୍ନତି କରିବା ସହ ସ୍ମୃତିଶକ୍ତି ବୃଦ୍ଧି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ପୁସ୍ତକଗୁଡିକର ମହତ୍ତ୍ୱକୁ କେବେ କ୍ଷୁଣ୍ଣ କରାଯାଇ ନ ପାରେ । କାରଣ ପୁସ୍ତକ ଛାତ୍ରଛାତ୍ରୀଙ୍କୁ ଆମ ଚାରିପାଖରେ ଥିବା ଜଗତ ସହ ଆମକୁ ସଂଯୋଗ କରିବା ପାଇଁ ଦ୍ୱାର ପଥ ରୂପେ କାର୍ଯ୍ୟ କରେ । ଆମ ଜୀବନରେ ପୁସ୍ତକର ମହତ୍ତ୍ୱକୁ ସୂଚିତ କରୁଥିବାର ଏକ ବଡ କାରଣ ହେଉଛି ପୁସ୍ତକଗୁଡିକ ଆମର ସର୍ବୋତ୍ତମ ବନ୍ଧୁ ଭାବରେ କାର୍ଯ୍ୟ କରନ୍ତି । ଭଲ ବନ୍ଧୁ ବିନା ଆମେ ଜୀବନକୁ କଳନା କରିପାରିବା ନାହିଁ । ସେହିଭଳି ପୁସ୍ତକ ହେଉଛି ଜଣେ ସର୍ବୋତ୍ତମ ବନ୍ଧୁ ପରି, ଯାହା ଆମକୁ ପ୍ରେରଣା ଦେଇଥାଏ । ପୁସ୍ତକ ଆମ ଜୀବନରେ ବିଫଳତାକୁ ଦୂର କରିବା ସହିତ ଆମ ମନକୁ ଆକୃଷ୍ଟ କରିବାରେ ସାହାଯ୍ୟ କରେ । ଆମ ଜୀବନରେ ପୁସ୍ତକର ମହତ୍ତ୍ୱକୁ ବୁଝିବା ପାଇଁ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ପୁସ୍ତକଗୁଡିକର ସୃଜନଶୀଳ କଳା ରୂପ ।

ଏହା ଆମର କଳ୍ପନା ଶକ୍ତି ବୃଦ୍ଧି କରିବା ସହ ଏକ ଫାଟକ ଭାବରେ କାର୍ଯ୍ୟ କରିଥାଏ । ଯାହା ବାସ୍ତବ ଜୀବନର କଠିନ ବାସ୍ତବତାଠାରୁ ବହୁତ ଦୂରରେ ଏକ ସ୍ୱପ୍ନ ଜଗତ ପାଇଁ ଦ୍ୱାର ଖୋଲିଥାଏ । ପୁସ୍ତକ ପଠନ ଦ୍ୱାରା ଆମର ଚିନ୍ତାଧାରା କଥାବାର୍ତ୍ତା ଏବଂ ବିଶ୍ଳେଷଣ କରିବାର ପଦ୍ଧତିରେ ଅନେକ କିଛି ପରିବର୍ତ୍ତନ ଆସିଥାଏ । କେବଳ ସେତିକି ନୁହେଁ, ଆତ୍ମବିଶ୍ୱାସ ବଢାଇବାରେ ମଧ୍ୟ ଏହା ସହାୟକ ହୋଇଥାଏ । ଯେତେବେଳେ ଆମେ ଅନେକ ପୁସ୍ତକ ପଠନ କରୁ ଆମେ ଭିନ୍ନ ଚରିତ୍ରର ସଂଘର୍ଷ ବିଷୟରେ ଅବଗତ ହୋଇଥାଉ । ଫଳସ୍ୱରୂପ ଏହା ଆମକୁ ବ୍ୟକ୍ତିଗତ ଜୀବନ ସହ ଜଡିତ କରାଇଥାଏ । ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ମାନସିକ, ଶାରୀରିକ ଅବସ୍ଥାରେ ମଧ୍ୟ ଉନ୍ନତି ଆଣିଥାଏ ପୁସ୍ତକ । ଏହାକୁ ପଠନ କରିବା ଦ୍ୱାରା ଧନ, ଜ୍ଞାନ ବୃଦ୍ଧି ପାଇବା ସହ ଆମକୁ ସହାନୁଭୂତିଶୀଳ କରାଇଥାଏ ।

ବାସ୍ତବିକ ପୁସ୍ତକ ହେଉଛି ଆମର ଆଶ୍ରୟସ୍ଥଳୀ । ଯେତେବେଳେ ଆମେ କ୍ଳାନ୍ତ, ବିରକ୍ତ କିମ୍ବା ଚାପଗ୍ରସ୍ତ ଥାଉ ସେତେବେଳେ ପୁସ୍ତକ ପଠନ କରିବା ଦ୍ୱାରା ଏସବୁ ଦୂରେଇ ଯାଇଥାଏ । ପୁସ୍ତକକୁ ବାଦ୍ ଦେଇ ଜୀବନ ଅସମ୍ଭବ । ଏହା ମାନବର ପ୍ରେରଣାଦାୟକ ଏବଂ ଏହାକୁ ଜୀବନ ସଦୃଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଣେ ବିଦ୍ୟାର୍ଥୀର ସର୍ବଶ୍ରେଷ୍ଠ ଧନ ହେଉଛି ପୁସ୍ତକ । ଯୁବପିଢି କିନ୍ତୁ ମାତ୍ରାଧିକ ସମୟ ଇଣ୍ଟରନେଟ୍‌ରେ ବସି ବିଭିନ୍ନ ସାମାଜିକ ଗଣମାଧ୍ୟମରେ ସମୟ ବିତାଉଛନ୍ତି । ଫଳରେ ସେମାନଙ୍କ ମାନସିକତାର ବିକାଶ ହୋଇପାରୁନାହିଁ । ପଠନ ଏକ କଳା, ଏହି କଳାକୁ ଆମେ ସମସ୍ତେ ଆପଣାଇବା ଦରକାର । ପାଠପଢାର କେବେ ଶେଷ ହେବ ନାହିଁ । ଏହା ଜୀବନରେ ଶେଷ ପର୍ଯ୍ୟନ୍ତ କାମରେ ଆସିଥାଏ । ଜ୍ଞାନ ଆହରଣଠାରୁ ଆରମ୍ଭ କରି ଉତ୍ତମ ଚରିତ୍ର ଗଠନ କରିବାରେ ଏହାର ମହତ୍ତ୍ୱ ଅବର୍ଣ୍ଣନୀୟ । ବାସ୍ତବିକ ପୁସ୍ତକକୁ କରାୟତ୍ତ କରିପାରୁଥିବା ବ୍ୟକ୍ତି ଜ୍ଞାନୀ, ଗୁଣୀ, ବିଜ୍ଞ ଓ ବିଦ୍ୱାନ୍ ଭାବେ ପରିଗଣିତ ହୁଏ । ଏହା ଏପରି ଏକ ଧନ, ଯାହାର ମୂଲ୍ୟ କେବେ କ୍ଷୟ ହୁଏ ହୁଏ ନାହିଁ । ଅକ୍ଷୟ ରହେ ଏହାର ମହତ୍ତ୍ୱ । ଆମର ଶିଖିବା ସାରାଜୀବନ ଜାରି ରହେ ।

ମଣିଷ ଜୀବନକୁ ଯେତେ ସରସ ସୁନ୍ଦର କରି ଗଢି ତୋଳିବା ପାଇଁ ଅତ୍ୟାଧୁନିକ ସୁବିଧା ଉପଲବ୍ଧ ହେଲେ ମଧ୍ୟ ପୁସ୍ତକର ବିକଳ୍ପ ନାହିଁ । ତେଣୁ ପୁସ୍ତକ ପଠନ କରିବା ଏବଂ ଜ୍ଞାନ ଆହରଣ କରି ଉନ୍ନତ ରାଷ୍ଟ୍ର ଗଠନରେ ନିଜକୁ ସାମିଲ କରିବା ପାଇଁ ଆଜି ହିଁ ଶପଥ ନେବା ଦରକାର । ତେଣୁ ଜୀବନର ଶେଷ ରକ୍ତବିନ୍ଦୁ ପର୍ଯ୍ୟନ୍ତ ଯଦି ଆମେ ପୁସ୍ତକ ପଠନ ଜାରି ରଖିବା, ତେବେ ନିଜସ୍ୱ ଜ୍ଞାନ ବିକଶିତ ହେବା ସହ ସୁସ୍ଥ ସମାଜ ଗଠନରେ ଏହା ସହାୟକ ହେବ ଏଥିରେ ସନ୍ଦେହ ନାହିଁ ।

ଗ୍ରାମ/ପୋ.ଅ – ଖିଚିଂ
ଭାୟା– ଶୁକ୍ରୁଳି, ଜିଲ୍ଲା–ମୟୂରଭଞ୍ଜ
ପିନ୍– ୭୫୭୦୩୯



# ଶ୍ରୀମନ୍ଦିରରେ ଶ୍ରୀହନୁମାନ

ଡକ୍ଟର ସୁଷମା ମିଶ୍ର

ଶ୍ରୀମନ୍ଦିର ବିଶ୍ୱର ପବିତ୍ର ଧାମ । ଶ୍ରୀଜଗନ୍ନାଥ ସାରା ଜଗତର ନାଥ । ପବିତ୍ର ଶ୍ରୀକ୍ଷେତ୍ର ମାନବ ଜୀବନର ପ୍ରାଣକେନ୍ଦ୍ର । ଜଗନ୍ନାଥ ସଂସ୍କୃତିର ଆଧାତ୍ମିକ ଚେତନା ବ୍ରହ୍ମ ଉପଲବ୍ଧି ଓ ଦିବ୍ୟ ଆନନ୍ଦ ଲାଭର ଚିରନ୍ତନ ଉତ୍ସ । ଶାଶ୍ୱତ, ଭେଦାଭେଦ ଶୂନ୍ୟ ଜଗନ୍ନାଥୀୟ ଭାବଧାରାରେ ସମଗ୍ର ପୃଥିବୀ ପ୍ରଭାବିତ । ମଣିଷ ସମାଜ ପାଇଁ ପୁରୀର ମାଟି ପାଣି ପବନ ବିଞ୍ଚି ଦେଉଛି ମଣିଷପଣିଆର ମହାମନ୍ତ୍ର । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉଚ୍ଚାରଣ–

''ଜଗତ ସରସେ ଭାରତ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ'' ।

ଶ୍ରୀଜଗନ୍ନାଥ ରାଷ୍ଟ୍ର ଦେବତା, ଦେଶର ରକ୍ଷକ । ଗଜପତି ହେଉଛନ୍ତି ତାଙ୍କର ସେବକ । ଉତ୍କଳ ଭୂଇଁରେ ଶ୍ରୀଜଗନ୍ନାଥଙ୍କ ଲୀଳାରେ ମାନବୀୟ ବିଧି ବିଧାନ ରହିଛି ସେହିପରି ଅପର ପକ୍ଷରେ ଭଗବାନଙ୍କ ସେବା କରୁଥିବା ମାନବ ପ୍ରାଣରେ ସଂଚରିତ ହେଉଛି ଈଶ୍ୱରୀୟ ଗୁଣ । ଜଗନ୍ନାଥ ପୀଠରେ କାଳକ୍ରମେ ଯେଉଁ ପୂଜାର୍ଚ୍ଚନା ଚଳି ଆସୁଛି ତାହାକୁ ସ୍ୱୟଂ ପ୍ରଭୁଙ୍କ ଇଚ୍ଛା ଭାବରେ ମାନ୍ୟତା ଦିଆଯାଇଥାଏ । ଯେଉଁ ପ୍ରଭୁ ପରମେଶ୍ୱର ସ୍ୱୟଂଭୂ, ତାଙ୍କରି ଆଜ୍ଞାରେ ସର୍ବବିଧ ରୀତି ନୀତିର ସୃଷ୍ଟି । ସେ ନ ଚାହିଁଲେ ଗଛର ପତ୍ରବି ହଲେନି । ନଦୀ ଯେପରି ସମୁଦ୍ର ଦିଗରେ ବହି ଆସେ ସେହିପରି ମହାସିନ୍ଧୁରୂପୀ ଜଗନ୍ନାଥଙ୍କ ପାଖକୁ ଧାବମାନ ହୋଇଛନ୍ତି ଭକ୍ତ ସନ୍ଥ ସାଧକ ରୂପୀ ସରିତ । ସୌର, ଶୈବ, ବୈଷ୍ଣବ, ଗାଣପତ୍ୟ, ଜୈନ, ବୌଦ୍ଧ, ଶାକ୍ତ ଆଦି ସର୍ବଧର୍ମ ସମନ୍ୱୟର ଗୋଟିଏ ବିଶାଳ ମୁହାଣ ପାଲଟି ଯାଇଛି ଜଗନ୍ନାଥ ପୀଠ । ବିବିଧତା ଭିତରେ ଏକତ୍ୱ 'ବସୁଧୈବ କୁଟୁମ୍ବକମ' ଏବଂ 'ନର ଦେହେ ନାରାୟଣ' ଜଗନ୍ନାଥ ଭାବର ବୈଶିଷ୍ଟ୍ୟ । ସମସ୍ତ ମାନବିକ ଗୁଣ ସାଧନର ପ୍ରୟୋଗଶାଳା ହେଉଛି ଶ୍ରୀମନ୍ଦିରର ପରିସର । ଏଠାରେ ଅଧିଷ୍ଠିତ ଭିତର, ବାହାର ଓ ବେଢ଼ାର ଦେବାଦେବୀଗଣ ମହାପ୍ରଭୁଙ୍କର ଶକ୍ତି ବିଶେଷ । କୁହାଯାଏ, ଶ୍ରୀମନ୍ଦିର ସୁରକ୍ଷାର ବ୍ୟବସ୍ଥା ସ୍ୱୟଂ ଶ୍ରୀଜଗନ୍ନାଥ ଅର୍ପି ଦେଇଛନ୍ତି ବହୁଧା କଳେବର ମଣ୍ଡିତ ଭିନ୍ନ ଭିନ୍ନ ନାମଧାରୀ ସର୍ବଶକ୍ତିମାନ ହନୁମାନଙ୍କ ଉପରେ । ଶ୍ରୀମନ୍ଦିରର ପୂର୍ବ ଦିଗ ସିଂହଦ୍ୱାରରେ ଫତେ ହନୁମାନ, ଦକ୍ଷିଣ ଦିଗ ଅଶ୍ୱ ଦ୍ୱାରରେ ବାରଭାଇ ହନୁମାନ, ପଶ୍ଚିମ ଦିଗ ବ୍ୟାଘ୍ର ଦ୍ୱାରରେ କାନପତା ହନୁମାନ, ଉତ୍ତର ଦିଗ ହସ୍ତୀ ଦ୍ୱାରରେ ତପସ୍ୱୀ ହନୁମାନ ଶ୍ରୀମନ୍ଦିର ରକ୍ଷକ ଭାବରେ ଅଧିଷ୍ଠିତ ହୋଇଛନ୍ତି । ଏହି ଚାରି ଦିଗ, ଚାରି ଯୁଗ ଓ ଚାରି ବେଦର ସୂଚନା ଦିଏ । ପୁନଶ୍ଚ ସିଂହଦ୍ୱାର, ଅଶ୍ୱଦ୍ୱାର, ବ୍ୟାଘ୍ର ଦ୍ୱାର, ହସ୍ତୀଦ୍ୱାର ଯଥାକ୍ରମେ ଧର୍ମ ଦ୍ୱାର, ଜ୍ଞାନଦ୍ୱାର, ବୈରାଗ୍ୟ ଦ୍ୱାର ଓ ଐଶ୍ୱର୍ଯ୍ୟ ଦ୍ୱାର ରୂପେ ପରିଚିତ । ଶ୍ରୀଜଗନ୍ନାଥ ହେଉଛନ୍ତି ଅଖିଳ ବ୍ରହ୍ମାଣ୍ଡର ଅଧୀଶ୍ୱର ।

ଧର୍ମ ପ୍ରତିଷ୍ଠା ନିମନ୍ତେ ସତ୍ୟ ଯୁଗରେ ନାରାୟଣ, ତ୍ରେତୟାରେ ରାମଚନ୍ଦ୍ର ଓ ଦ୍ୱାପରରେ ଶ୍ରୀକୃଷ୍ଣ ରୂପେ ଅବତାର ଗ୍ରହଣ କରିଥିଲେ ବ୍ରହ୍ମ ପୁରୁଷ । ସେହି ଅକଳ୍ପନୀୟ ଚିର ଅନ୍ୱେଷିତ ଭଗବାନ ହେଉଛନ୍ତି ସବୁ ଧର୍ମରେ ସମନ୍ୱିତ

ଦାରୁ ବିଗ୍ରହଧାରୀ ଶ୍ରୀଜଗନ୍ନାଥ । ଶ୍ରୀମନ୍ଦିରରେ ଶ୍ରୀହନୁମାନଙ୍କ ଉପାସନାରୁ ଶ୍ରୀଜଗନ୍ନାଥଙ୍କ ଶ୍ରୀରାମରୂପ ସହଜରେ ଅନୁଭବ୍ୟ । ଭକ୍ତଶ୍ରେଷ୍ଠ ହନୁମାନ ତାଙ୍କର ଅତୁଳନୀୟ ଭକ୍ତି ଯୋଗୁଁ ଅପ୍ରମିତ ଶକ୍ତିର ଅଧିକାରୀ । ତାଙ୍କର ପ୍ରତିଟି ପ୍ରଶ୍ୱାସ ଘୋଷେ, 'ରାମ ରାମ' । ପ୍ରତିଟି ଲୋମ କୂପରେ ଶ୍ରୀରାମଙ୍କୁ ଅନୁଭବ କରି ଆଧାତ୍ମିକ ଉତ୍ତରଣର ଚରମ ଶୀର୍ଷକୁ ସେ ସ୍ପର୍ଶ କରିଛନ୍ତି । ପରମାରାଧ୍ୟଙ୍କୁ ଧ୍ୟାନ କରି, ଐକାନ୍ତିକ ନିଷ୍ଠା ବଳରେ ଶ୍ରୀହନୁମାନ ଅସୀମ ଦିବ୍ୟତାର ଅନନ୍ତ ସ୍ୱରୂପ । ସେ ମାରୁତି, ମହାବୀର, ବଜରଙ୍ଗବାଲି, ଅଞ୍ଜନେୟ ପୁତ୍ର ଭାବରେ ଖ୍ୟାତ । ଜ୍ଞାନ, ଶକ୍ତି, ଭକ୍ତି, ଧୈର୍ଯ୍ୟ, ଆତ୍ମସଂଯମତା ଓ ସମର୍ପଣର ଭଗବାନ ହନୁମାନ ସଙ୍କଟମୋଚକ ତଥା ମୋକ୍ଷ ପ୍ରଦାୟକ । ଶିବଙ୍କ ବିଭୂତି ପ୍ରାପ୍ତ ହନୁମାନ, ପର୍ଶୁରାମ, ମାର୍କଣ୍ଡେୟ, କୃପା, ବିଭୀଷଣ, ଜାମ୍ବବାନ, ଅଶ୍ୱତ୍ଥମା, ବ୍ୟାସ, ମହାବଳୀଙ୍କ ପରି ଚିରଞ୍ଜୀବୀ ଅଟନ୍ତି । ସନ୍ଥ ତୁଳସୀ ଦାସଙ୍କ ଭକ୍ତିପୂର୍ଣ୍ଣ 'ହନୁମାନ ଚାଳିଶା'ରେ ଲିଖିତ–

''ପଓ୍ୱନ ତନୟ ସଙ୍କଟ ହରନ, ମଙ୍ଗଲ ମୂରତି ରୂପ ରାମ ଲଖନ ସୀତା ସହିତ, ହୃଦୟ ବସହୁ ସୁର ଭୂପ'' ।

ହୃଦୟାସୀନ ମଙ୍ଗଳମୟ ହନୁମାନଙ୍କ ଦ୍ୱାଦଶ ନାମଯୁକ୍ତ ଶ୍ଲୋକ ଅନୁସାରେ–

ହନୁମାନ ଅଞ୍ଜନା ସୂନୁଃ, ବାୟୁପୁତ୍ରୋ ମହାବଳଃ
ରାମାଂଶୁ ଫାଲଗୁନି ସଖଃ ପିଙ୍ଗାକ୍ଷୋ ମିତ ବିକ୍ରମଃ ।
ଉଦଧି କ୍ରମଣିଶ୍ଚୈବ ସୀତାଶୋକ ବିନାଶକଃ
ଲକ୍ଷ୍ମଣ ପ୍ରାଣଦାତା ଚ ଦଶଗ୍ରୀବସ୍ୟ ଦର୍ପହ
ଦ୍ୱାଦଶୈତାନି କପୀନ୍ଦ୍ରସ୍ୟ ମହାତ୍ମନଃ'' ।

ନିତ୍ୟ ଆନନ୍ଦର ମୂଳକ, ପୁରୀରେ ଅଷ୍ଟକ୍ଷେତ୍ର ରକ୍ଷକ ଭାବରେ ପୂଜା ପ୍ରାପ୍ତ ହୁଅନ୍ତି ଅଷ୍ଟସିଦ୍ଧ ମହାବୀର ।

ସେମାନେ ହେଲେ ସିଦ୍ଧ ମହାବୀର, କାନପତା ମହାବୀର, ବର୍ଗୀ ମହାବୀର, ମଶାଣି ମହାବୀର, ପଞ୍ଚମୁଖୀ ମହାବୀର, ଫତେ ମହାବୀର, ଶିରୁଳି ମହାବୀର ଏବଂ ସୁଡଙ୍ଗ ମହାବୀର । ଶ୍ରୀମନ୍ଦିରର ଚାରି ଦ୍ୱାର ରକ୍ଷକ ଭାବରେ ଚାରି ହନୁମାନ ବିଶେଷତ୍ୱ ଲାଭ କରିଛନ୍ତି ଯଥା– ଫତେ ମହାବୀର, କପି ହନୁମାନ, କାନପତା ହନୁମାନ ଏବଂ ତପୀ ହନୁମାନ । ମନ୍ଦିର ବାହାରେ ଥିବା ମଲ୍ଲ ହନୁମାନ ହେଉଛନ୍ତି ଜାଗା ଘରେ ବିଦ୍ୟାର୍ଥୀମାନଙ୍କର ଇଷ୍ଟ ପ୍ରଭୁ । ଆଷାଢ଼ ମାସ ଶୁକ୍ଳ ପକ୍ଷ ନବମୀ ତିଥିରେ ପଞ୍ଚ ରାମାନନ୍ଦୀ ଏବଂ ଦିଗମ୍ବରୀ ପଞ୍ଚାୟତର ତତ୍ତ୍ୱାବଧାନରେ ନିଶାଣ ମହୋତ୍ସବ ପାଳିତ ହୁଏ । ଏଥିରେ ନିଶାଣ ଧରି ନିର୍ବାଣ ନିର୍ମୋହି ଓ ଖାକି ଆଖେଡାର ସାଧୁବର୍ଗ ମାନେ ଗୁଣ୍ଡିଚା ଘର ଜଗମୋହନରେ ପାଠ କରୁଥିବା ସେମାନଙ୍କର ଖସଡାଟି ହେଉଛି–

''ଲକ୍ଷ୍ମଣଂ ବଳରାମଞ୍ଚ ରାଘବଂ ପୁରୁଷୋତ୍ତମଂ
ମୈଥିଳୀ ଭକ୍ତି ରୂପାଞ୍ଚ ସୁଭଦ୍ରା ଚାରୁହାସିନୀଂ
ଅଞ୍ଜନେୟଂ ମହାବୀରଂ କ୍ଷେତ୍ରସ୍ୟ ରକ୍ଷକୋତ୍ତମଂ
ରାମାନନ୍ଦ ଗୁରୁର୍ବନ୍ଦେ ଶ୍ରୀକ୍ଷେତ୍ରଧ୍ୱଜରକ୍ଷକମ୍'' ।

ଶ୍ରୀମନ୍ଦିରରେ ଶ୍ରୀହନୁମାନଙ୍କର ପ୍ରାୟ ୧୦୬ଟି ବିଗ୍ରହ ଓ ୧୧ଟି ଚିତ୍ର ପ୍ରତିମା ଦୃଶ୍ୟ ହୁଏ । ଗୁମୁଟର କାନ୍ଥ ବାଇଶି ପାହାଚ ପାର୍ଶ୍ୱ ନାଟମଣ୍ଡପ ହେଉ ଅଥବା କୋଇଲି ବୈକୁଣ୍ଠର ଭିତର ବାହାର ପଟ କାନ୍ଥ ଅବା ଆନନ୍ଦ ବଜାର ହେଉ, ଶ୍ରୀମନ୍ଦିରର ବହୁ ସ୍ଥାନରେ ଶ୍ରୀହନୁମାନ ସଂସ୍ଥାପିତ ହୋଇଛନ୍ତି । ଭିତର ବେଢ଼ାର ଦକ୍ଷିଣ ଗୃହରେ ବିଜେ ପ୍ରତିମା ଦିଅଁମାନେ ଅଛନ୍ତି । ସେଠାରେ ଥିବା ରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କର ଚଳନ୍ତି ବିଗ୍ରହ, ରାମ ନବମୀ ଲୀଳା, ମହାବୀର ଜନ୍ମ ଓ ଶିକାର ନୀତିରେ ବିଜେ ହୁଅନ୍ତି । ନୀଳାଚଳ ଉପବନରେ ଉପବିଷ୍ଟ ପଞ୍ଚମୁଖୀ ହନୁମାନ । ବାନର, ନରସିଂହ, ଗରୁଡ, ବରାହ, ଘୋଟକ (ଅଶ୍ୱ) ଏହିପରି ପଞ୍ଚମୁଖରେ ସେ ସୁଶୋଭିତ । ଭକ୍ତମାନେ ସିଦ୍ଧିଲାଭ ପାଇଁ ତାଙ୍କ ସମ୍ମୁଖରେ କିଛି ସମୟ ଧ୍ୟାନସ୍ଥ ହୁଅନ୍ତି । ଏହି ପଞ୍ଚମୁଖୀ ହନୁମାନ ନିର୍ମାଲ୍ୟ ଖଳାକୁ ସୁରକ୍ଷା ଦିଅନ୍ତି ।

ଶ୍ରୀମନ୍ଦିର ପୂଜା ପରମ୍ପରାରେ ଶ୍ରୀହନୁମାନଙ୍କର ପଞ୍ଚ ଭୂମିକା ଉଲ୍ଲେଖନୀୟ, ବଡ ଦେଉଳର କୋଣ

ଅଗ୍ନିକୋଣଠାରୁ ଆରମ୍ଭ କରି ନୀଳଚକ୍ରର ଧ୍ୱଜା ପର୍ଯ୍ୟନ୍ତ ତାଙ୍କର ପରିବ୍ୟାପ୍ତି । ପୁରୀରେ ଷୋଡଶ ଶତାବ୍ଦୀରେ ସନ୍ଥ ନାମରେ ଜଣେ ଭକ୍ତ ଥିଲେ । ଭୟଙ୍କର ତୋଫାନରେ ସେହି କାଳଖଣ୍ଡରେ ଶ୍ରୀମନ୍ଦିରର ନୀଳଚକ୍ର ବକ୍ର ହୋଇଗଲା । ସମ୍ପୃକ୍ତ ବ୍ୟକ୍ତିବିଶେଷମାନେ ଯେତେ ଚେଷ୍ଟା କଲେ ମଧ୍ୟ ନୀଳଚକ୍ରକୁ ପୂର୍ବ ଆକାର ଦେବାରେ ଅକ୍ଷମ ହେଲେ । ଜନୈକ ଭକ୍ତ ସନ୍ଥଦାସ ପରାମର୍ଶ ଦେଇଥିଲେ ଯେ ଶ୍ରୀହନୁମାନଙ୍କ କୃପା ଦୃଷ୍ଟି ବିନା ଏହାର ରକ୍ଷଣ ଅସମ୍ଭବ । ଅବଶେଷରେ ଶ୍ରୀମନ୍ଦିରର ସେବାକାରୀ ଓ ଭକ୍ତମାନଙ୍କର ପ୍ରାର୍ଥନା ଶୁଣି ପୁରୀକ୍ଷେତ୍ର ଓ ଶ୍ରୀମନ୍ଦିରର ରକ୍ଷକ ଶ୍ରୀହନୁମାନ ତଥାସ୍ତୁ ପ୍ରଦାନ କରିଥିଲେ । କଥା ଅଛି, କାହୁଁ ଏକ ବିରାଟକାୟ ବାନର ଅଚାନକ ଆସି ତତ୍‌କ୍ଷଣାତ୍ ନୀଳଚକ୍ରକୁ ସଳଖ କରିଦେଲେ । ଦେଖୁଦେଖୁ ସେ ଅନ୍ତର୍ଦ୍ଧାନ ହୋଇଗଲେ ଦକ୍ଷିଣ ଦିଗରେ । ଏହି ଦିବ୍ୟଲୀଳା ପରେ ରାଜା ପ୍ରତାପରୁଦ୍ର ଦେବ ସେହି ଦିଗରେ ଶ୍ରୀହନୁମାନଙ୍କ ଉଡନ୍ତା ରୂପ ନିର୍ମାଣ କରିଥଲେ । ମନୁଷ୍ୟର ଅଭୀଷ୍ଟ ସିଦ୍ଧ କରୁଥିବା ଶ୍ରୀହନୁମାନଙ୍କର ମହିମା ଅପାର ଓ ଅତଳସ୍ପର୍ଶୀ । 'ରାମଚରିତ ମାନସ' ରଚନା ପୂର୍ବରୁ ଶ୍ରୀରାମ, ଚନ୍ଦନ ଘୋରୁଥିବା ତୁଳସୀ ଦାସଙ୍କୁ ଚନ୍ଦନ ମାଗି ସ୍ୱହସ୍ତରେ ନିଜ ଲଲାଟରେ ପିନ୍ଧି ତାଙ୍କ କପୋଳଦେଶରେ ମଧ୍ୟ ଲେପିଦେବା ଥିଲା ଅଲୌକିକ ଆଶୀର୍ବାଦ । ଏହି ଘଟଣାର ଅବ୍ୟବହିତ ଆଗରୁ ଗୋଟିଏ ଶୁଆ ଗାଇବାକୁ ଲାଗିଲା–

''ଚିତ୍ରକୂଟେ ଘାଟ୍‌ପର୍ ଭୟ ସଂତନ କୀ ଭାର
ତୁଲ୍‌ସୀ ଦାସ୍ ଚନ୍ଦନ ଘିସେଁ ତିଲକ୍ ଦେତ ରଘୁବୀର'' ।

ତୁଳସୀ ଦାସଙ୍କୁ ଲାଗିଲା ଏହି ଦୋହାଟି ଯେମିତି ତାଙ୍କର ହୃଦୟର ସ୍ୱର । ରାମଭକ୍ତଙ୍କ ସମ୍ମୁଖରେ ଭଗବାନ ରାମଚନ୍ଦ୍ରଙ୍କ ଆଗମନର ସୂଚନା ଦେବାକୁ ଯାଇ ଭକ୍ତରାଜ ଶ୍ରୀହନୁମାନ ଶୁକ ପକ୍ଷୀର ରୂପ ଧାରଣ କରିଥିଲେ । ସ୍ଥୂଳରୁ ସୂକ୍ଷ୍ମ, ସୂକ୍ଷ୍ମରୁ ସ୍ଥୂଳ, ଅଣୁରୁ ବୃହତ୍, ବୃହତ୍‌ରୁ ଅଣୁ ତଥା ଯେ କୌଣସି ରୂପ ପରିଗ୍ରହଣ ସର୍ବୋପରି ଇଷ୍ଟଙ୍କ ପ୍ରତି ଉତ୍ସର୍ଗୀକୃତ ଶ୍ରୀହନୁମାନ, ସୁରକ୍ଷା ସିଦ୍ଧି ଓ ନିଧିର ଦେବତା । ଦ୍ୱାପର ଯୁଗରେ ଅର୍ଜୁନଙ୍କ ରଥରେ ହନୁମାନଙ୍କର ସୂକ୍ଷ୍ମ ରୂପ ଏବଂ ଶ୍ରୀଜଗନ୍ନାଥଙ୍କ ରଥ ଯାତ୍ରାରେ ରଥ ଧ୍ୱଜାରେ ହନୁମାନଙ୍କ ଅବସ୍ଥିତି ପ୍ରେମ କର୍ମ ଜ୍ଞାନ ଓ ବୀରତ୍ୱର ଯୁଗାନ୍ତରିତ ନିରନ୍ତର ଗତିଶୀଳତାକୁ ବୁଝାଏ । କୁହାଯାଇଛି–

ଚାରୌଯୁଗ ପରତାପ ତୁହ୍ମାରା
ହୈ ପରସିଦ୍ଧି ଜଗତ ଉଜିୟାରା
ସାଧୁ ସନ୍ଥକେ ତୁମ୍ ରଖୱାରା
ଅସୁର ନିକନ୍ଦନ ରାମ ଦୁଲାରେ ।''

ଶ୍ରୀମନ୍ଦିରକୁ ପ୍ରବେଶ କରିବାକ୍ଷଣି ବାମ ପାର୍ଶ୍ୱରେ ଥିବା ପିଣ୍ଡି ଉପର କାନ୍ଥରେ ଦୃଶ୍ୟମାନ ହୁଅନ୍ତି ଫତେ ମହାବୀର । ଫତେ ହେଉ ନଥିବା ଅର୍ଥାତ ଶେଷ ହୋଇ ନ ପାରି ଯେଉଁ ଅଛିଣ୍ଡା ମାଲିମକଦ୍ଦମା ହନ୍ତସନ୍ତ କରୁଥାଏ ପୁଣି ଅବିଶ୍ରାନ୍ତ ପାରିବାରିକ ଅଶାନ୍ତି, ବ୍ୟକ୍ତିଗତ ଲଗାତାର ବିଫଳତା ଇତ୍ୟାଦିର ସମାପନ ପାଇଁ ଫତେ ହନୁମାନଙ୍କ ନିକଟରେ ଗୁହାରି ଜଣାଇଲେ ଫଳପ୍ରାପ୍ତ ହୁଏ । ଫତେ ମହାବୀର ପୂର୍ବଦିଗରୁ ଶ୍ରୀମନ୍ଦିରକୁ ରକ୍ଷା କରନ୍ତି । ଦକ୍ଷିଣ ଦିଗର ସୁରକ୍ଷାକାରୀ ହେଉଛନ୍ତି ବାରଭାଇ ହନୁମାନ । ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପି ଅନୁସାରେ ସେମାନଙ୍କର ନାମ ହେଉଛି, ଜନ୍ମ ହନୁମାନ, ଗୟ, ଗବାକ୍ଷ, ସୁଷେଣ, ହନୁମାନ, ଜାମ୍ବବାନ, ଅଙ୍ଗଦ, ସୌରି, ସୁଗ୍ରୀବ, ନଳ ଓ ନୀଳ । କିମ୍ବଦନ୍ତୀ କହେ ରାଜା ବିଭୀଷଣ ପ୍ରତିଦିନ ନିଶାର୍ଦ୍ଧରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଶ୍ରୀମନ୍ଦିରକୁ ଆସନ୍ତି । ବାରଭାଇ ବାନର ସେନା ତାଙ୍କୁ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ଅପେକ୍ଷାରତ ହୁଅନ୍ତି । ପଶ୍ଚିମ ଦ୍ୱାରରେ ରକ୍ଷାକର୍ତ୍ତା ରୂପେ ବିରାଜିତ ହୋଇଛନ୍ତି କାନପତା ହନୁମାନ, ଯାହାଙ୍କର ଅନ୍ୟ ଏକ ନାମ 'ବୀର ବିକ୍ରମ ମହାବୀର' । କାନପତା ହନୁମାନ ଆର୍ତ୍ତଜନଙ୍କ ମାଗୁଣି ଶୁଣିବା ପାଇଁ କର୍ଣ୍ଣ ପାତି ଦେଇଛନ୍ତି । ତାଙ୍କ ନିକଟରେ ଗୁହାରି ବାଢ଼ିଲେ ସେ ଭକ୍ତର ମନୋବାଞ୍ଛା ଅଚିରେ ପୂର୍ଣ୍ଣ କରନ୍ତି । ଜନଶ୍ରୁତିରେ ଗଡି ଆସିଥିବା ରୋଚକ କାହାଣୀଟି ହେଉଛି ମହୋଦଧିର ଗର୍ଜନରେ ଶ୍ରୀଜଗନ୍ନାଥଙ୍କ ସୁଖନିଦ୍ରାରେ ବାଧା ଉପୁଜିଲା । ସମୁଦ୍ରରାଜ ବରୁଣ ଶ୍ରୀଜଗନ୍ନାଥଙ୍କ ଶ୍ୱଶୁର ହୋଇଥିବାରୁ ସେ ଏହାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ହନୁମାନଙ୍କର ସାହାଯ୍ୟ ଲୋଡିଲେ ।

ପଶ୍ଚିମ ଦ୍ୱାରରେ ଥାଇ ଦକ୍ଷିଣ ଦିଗକୁ କାନ ପାତି ଶ୍ରୀହନୁମାନ ସମୁଦ୍ରର ଶବ୍ଦକୁ ନିଜ ଭିତରେ ବିଲୀନ କରାଇ କାନପତା ହନୁମାନ ଭାବରେ ପରିଚୟ ଲାଭ କରିଛନ୍ତି । ଉତ୍ତର ଦିଗରୁ ଶ୍ରୀମନ୍ଦିରକୁ ରକ୍ଷା କରନ୍ତି ତପସ୍ୱୀ ହନୁମାନ, ଯାହାଙ୍କର ଅନ୍ୟନାମ ଚାରିଚକ୍ର ହନୁମାନ । ଶ୍ରୀଜଗନ୍ନାଥଙ୍କ ନିର୍ଦ୍ଦେଶ କ୍ରମେ ସେ ସୁଦର୍ଶନଙ୍କର ଗର୍ବ ଖର୍ବ କରିବାର ଏକ ଲୋକକଥା ରହିଛି । ଏହା ବ୍ୟତୀତ ସ୍ୱୟଂ ମହାପ୍ରଭୁ ଶ୍ରୀହନୁମାନଙ୍କୁ ତପସ୍ୟାରତ ହେବା ପାଇଁ ଉତ୍ତର ଦ୍ୱାର ବା ମୋକ୍ଷ ଦ୍ୱାରରେ ଉପବିଷ୍ଟ କରାଇଛନ୍ତି ।

ମହାଭକ୍ତ, ମହାବୀର, ମହାଜ୍ଞାନୀ ହନୁମାନ ତାଙ୍କ ଅଦ୍ଭୁତ ଶକ୍ତିର ଅପପ୍ରୟୋଗରୁ ସର୍ବଦା ନିବୃତ୍ତ ହୋଇଛନ୍ତି । ପଞ୍ଚମହାଭୂତର ସକଳ ନିର୍ଯାସରେ ସେ ସ୍ୱୟଂକ୍ରିୟ, ଅମର, ଅଜେୟ, ଶାଶ୍ୱତ ଓ ମଙ୍ଗଳକାରକ । ବିଷୁବ ସଂକ୍ରାନ୍ତି ବା ପଣା ସଂକ୍ରାନ୍ତି ଦିନ ପ୍ରଭୁ ହନୁମାନଙ୍କର ଜନ୍ମ ହୋଇଥିବାରୁ ଶ୍ରୀମନ୍ଦିରରେ ତାଙ୍କର ଜନ୍ମୋତ୍ସବ ବିଭିନ୍ନ ନୀତିକାନ୍ତି ସହିତ ପାଳିତ ହୁଏ । ରାମାନୁଜପନ୍ଥୀମାନେ ଶ୍ରୀଜଗନ୍ନାଥଙ୍କଠାରେ ଶ୍ରୀରାମଙ୍କର ଅଭେଦତ୍ୱ ଉପଲବ୍ଧି କରନ୍ତି । ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ପରମ୍ପରା ସହିତ ଶ୍ରୀହନୁମାନଙ୍କ ସମ୍ପର୍କ ଅତୀବ ନିବିଡ । ଶ୍ରୀଜଗନ୍ନାଥ ଓ ଶ୍ରୀହନୁମାନଙ୍କ ଅଭେଦ୍ୟ ମିଳନର ଏକ ପାଖରେ ଅଛନ୍ତି ବ୍ରହ୍ମପୁରୁଷ ପରମାତ୍ମା ଏବଂ ଅପର ପାର୍ଶ୍ୱରେ ରହିଛନ୍ତି ବ୍ରହ୍ମସ୍ୱୀ ଜୀବାତ୍ମା । ଶ୍ରୀମନ୍ଦିରରେ ଶ୍ରୀହନୁମାନଙ୍କ ବିଦ୍ୟମାନତା ମନୁଷ୍ୟ ସମାଜର ଆଧ୍ୟାତ୍ମିକ କ୍ରମବିକାଶରେ ଏକ ସର୍ବୋତ୍କୃଷ୍ଟ ମାର୍ଗଦର୍ଶନ । ଶ୍ରୀହନୁମାନଙ୍କ ପାଇଁ ଭକ୍ତର ଉଚ୍ଚାରଣ :

''ଭକ୍ତାଗ୍ରଣୀଂ ଶାନ୍ତସୁରଙ୍ଗଦେହଂ<br>
ଭୁଜଦ୍ୱୟେ ପର୍ବତବୃକ୍ଷଯୁକ୍ତମ୍<br>
ବଦ୍ଧାଞ୍ଜଳିଂ ମୁଦ୍‌ଗରଯୁକ୍ତକକ୍ଷଂ<br>
ଭଜେ କପୀନ୍ଦ୍ରଂ କୃତବୈରୀନାଶମ୍'' ।

''ସ୍ପନ୍ଦନ''<br>
ଏମ୍‌ଆଇଜି-୩୯, ଖଣ୍ଡଗିରି ଏନ୍‌କ୍ଲେଭ୍<br>
ଭୁବନେଶ୍ୱର-୩୦



# କୋରାପୁଟ ଜିଲ୍ଲାର ଦର୍ଶନୀୟ ସ୍ଥାନ

**କୃଷ୍ଣଚନ୍ଦ୍ର ସୁଆର**

କୋରାପୁଟ ଜିଲ୍ଲା ହେଉଛି ପ୍ରାକୃତିକ ସୌନ୍ଦର୍ଯ୍ୟର ଏକ ରମଣୀୟ ଅମରାବତୀ । ପାହାଡ, ପର୍ବତ, ଗିରିଗୁମ୍ଫା, ଝରଣା, ଜଳଭଣ୍ଡାର, ନଦୀବନ୍ଧ, ପ୍ରାଚୀନ କୀର୍ତ୍ତିରାଜି ମଣିଷର ମନ କିଣିନିଏ । ଏହାର କଳା, ସଂସ୍କୃତି ଓ ପରମ୍ପରା ସୁମହାନ୍ । ଜଳବାୟୁ ଯେପରି ସ୍ୱାସ୍ଥ୍ୟପ୍ରଦ ତା'ର ଭୌଗୋଳିକ ସ୍ଥିତି ମଧ୍ୟ ସେପରି ଆକର୍ଷଣୀୟ । ପରିବେଶ ପରିବେଷ୍ଟନୀ ପର୍ଯ୍ୟଟକଙ୍କୁ ବିହ୍ୱଳ କରେ ।

ଜିଲ୍ଲାର ସ୍ୱତନ୍ତ୍ରତା ପ୍ରତିପାଦନ କରେ ଶାବର ଶ୍ରୀକ୍ଷେତ୍ର । ସହରର କେନ୍ଦ୍ର ସ୍ଥଳରେ ଅବସ୍ଥିତ କୂର୍ମଶୈଳର ('ନୀଳଶୈଳ'ର ନାମାନ୍ତର) ଶିଖରରେ ଶ୍ରୀଜଗନ୍ନାଥଙ୍କ ସୁଦୃଶ୍ୟ ମନ୍ଦିର ଅନେକ ଦର୍ଶକଙ୍କୁ ଆକୃଷ୍ଟ କରେ । ନିକଟରେ ପହଂଚି ବହୁ ସୋପାନ ଅତିକ୍ରମ କରି ଉପରକୁ ଉଠୁ ଉଠୁ ଅଦ୍ଭୁତ ପୁଲକ ଆସିଯାଏ ମନରେ । ସିଂହଦ୍ୱାର ଅତିକ୍ରମ କରି ବାଇଶି ପାହାଚ ଉଠୁ ଉଠୁ ଗରୁଡସ୍ତମ୍ଭ ପାଖରୁ ଦିଶି ଯାଆନ୍ତି ଭାବ ବିନୋଦିଆ କଳାଠାକୁର । ଶ୍ରୀକ୍ଷେତ୍ର ଭଳି ଏଠାରେ ଶ୍ରୀଜୀଉଙ୍କ ସମସ୍ତ ପୂଜା ବିଧି ହୁଏ । ପୁରୀ ଗଜପତି ରଥରେ ଛେରାପହଁରା କଲା ଭଳି ଶାବର ଶ୍ରୀକ୍ଷେତ୍ରରେ କୁମ୍ଭ ଗ୍ରାମର ଦାସୀ ନାୟକ ଛେରାପହଁରା କରିଥାନ୍ତି । ତାଙ୍କୁ ରାଜାଙ୍କ ଭଳି ସମ୍ମାନ ମିଳିଥାଏ । ଏଠିକାର ରଥଯାତ୍ରାରେ ଯୋଗ ଦେବାକୁ ଜିଲ୍ଲାର ସମସ୍ତ ଆଦିବାସୀ ଗ୍ରାମଗୁଡିକୁ ମନ୍ଦିର ପରିଚାଳନା କମିଟି ତରଫରୁ ଗୁଆ ନିମନ୍ତ୍ରଣ ପଠାଯାଇଥାଏ । ସେମାନେ ନିଜ ବାଡିରେ ହୋଇଥିବା ବିଭିନ୍ନ ଫଳ ଓ ଭୋଗ ଭାର ଧରି ଏହି ରଥଯାତ୍ରା ମହୋତ୍ସବରେ ଯୋଗ ଦେବାକୁ ଆସିଥାନ୍ତି । ତାହା ପ୍ରଥମେ ଠାକୁରଙ୍କୁ ସମର୍ପଣ ପରେ ଅନ୍ୟ ଭୋଗ ପୂଜା କରାଯାଇ ଥାଏ । ୧୯୭୨ ମସିହା ଏପ୍ରିଲ ମାସରେ କୋରାପୁଟ ଡି.ଏ.ଭି. କଲେଜରେ ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ଉପରେ ସର୍ବଭାରତୀୟ ସ୍ତରରେ ଏକ ବଡ ଆଲୋଚନା ସଭା ଚାଲିଥାଏ । ଏହି ଉପଲକ୍ଷେ ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ଓ ପୁରୀର ନୀଳାଦ୍ରି ବିହାର ତରଫରୁ ଆକର୍ଷଣୀୟ ପ୍ରଦର୍ଶନୀର ଆୟୋଜନ ହୋଇଥାଏ । ପ୍ରଦର୍ଶନୀ ଦେଖିବା ପାଇଁ ପ୍ରତି ସଂଧ୍ୟାରେ କୋରାପୁଟର ଆଖପାଖ ଗାଁମାନଙ୍କରୁ ଆଦିବାସୀ ଲୋକମାନଙ୍କର ପ୍ରବଳ ଭିଡ ହୁଏ । ଏହିପରି ଗୋଟିଏ ସଂଧ୍ୟାରେ ଯେଉଁ ଅଲୌକିକ ଘଟଣା ଘଟିଲା ସେଥିରେ ଯୋଗ ଦେବାକୁ ଯାଇଥିବା ଶ୍ରୀଜଗନ୍ନାଥ ସଂସ୍କୃତି ଗବେଷକ ପଣ୍ଡିତ ସଦାଶିବ ରଥଶର୍ମା ଭାବବିହ୍ୱଳ ହୋଇଗଲେ । ପ୍ରଦର୍ଶନୀର ଗୋଟିଏ ଘରର ମଧ୍ୟସ୍ଥଳରେ ଥିବା ଜଗନ୍ନାଥଙ୍କ ପାଖରେ ଦୂର ଗାଁରୁ ଆସିଥିବା ଆଦିବାସୀ ମହିଳାମାନଙ୍କର ପ୍ରବଳ ଭିଡ । ଜଣେ ଆଦିବାସୀ ମହିଳା ନିଜ ପଣତ କାନିରେ ଗଣ୍ଠି ପକାଇ ଆଣିଥିବା ହରିଡା ଓ ବାହାଡା ଫଳ କେତୋଟି ମହାପ୍ରଭୁଙ୍କ ରଙ୍ଗ ଅଧରରେ ଘଷୁଥାଏ ଓ ନିଜେ ମଧ୍ୟ ସେ ଫଳକୁ ଚୁମା ଦେଉଥାଏ । ପ୍ରଦର୍ଶନୀ ଦାୟିତ୍ୱରେ ଥିବା ଶ୍ରୀ ଦାମୋଦର ପୁଷ୍ପାଳକଙ୍କ ମନା କରିବା ସତ୍ତ୍ୱେ ଆଦିବାସୀ ମହିଳା ଜଣକ କହୁଥାଏ "ମୋ ମହାପୁରୁକୁ, ମୁହିଁ ପୂଜା କରିବି । ତୁଇ କିଆଁ ମନା କରୁଛୁ ?" ପଣ୍ଡିତ ମହାଶୟଙ୍କ ଦୁଇ ଆଖିରୁ ଦୁଇଧାର

ଆନନ୍ଦାଶ୍ରୁ ଗଡି ଆସିଲା । କେଉଁ ଅନନ୍ତ କାଳରୁ ଆଦିବାସୀଙ୍କ ସହିତ ମହାପ୍ରଭୁଙ୍କର ଘନିଷ୍ଠ ସଂପର୍କ । ଏମାନେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରଥମ ପୂଜକ ଓ ସାହସୀ । ଶବରମାନଙ୍କ ମଧ୍ୟରେ ବିଭିନ୍ନ ଶ୍ରେଣୀର ଶବର ଦେଖାଯାନ୍ତି । ପ୍ରଭୁ ରାମଚନ୍ଦ୍ରଙ୍କ ସହ ଗୁହକ ଶବର ବନ୍ଧୁତା କରିବା ଆମେ ରାମାୟଣରୁ ଜାଣିଥାଉ । ଶବର ରାଜା ବିଶ୍ୱାବସୁ ପୂଜିତ ନୀଳମାଧବଙ୍କୁ କୌଶଳକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ଲୁଚାଇ ନେଇଥିଲେ । ଭାବର ଦେବତା ପ୍ରଭୁ ଜଗନ୍ନାଥ । ସତେ ଯେପରି ସେ ଫେରି ଆସିବାକୁ ଚାହୁଁଛନ୍ତି ତାଙ୍କର ଅତି ପ୍ରିୟ ଆଦିବାସୀମାନଙ୍କ ପାଖକୁ । ରଥଯାତ୍ରା ଥାଏ ମାତ୍ର ବାଇଶି ଦିନ । ସମସ୍ତଙ୍କ ସହଯୋଗରେ ଆବାଳ ବୃଦ୍ଧବନିତାଙ୍କ କି ଅପୂର୍ବ ଉନ୍ମାଦନା । ପିଚୁ ଟିଣରେ ପ୍ରଥମେ ମନ୍ଦିର ଗଢ଼ା ହେଲା । ସହରର କେନ୍ଦ୍ର ସ୍ଥଳରେ ସମୁଦ୍ର ପତନଠାରୁ ତିନି ହଜାର ଫୁଟ ଏକ ଅତ୍ୟୁଚ୍ଚ ପାହାଡ ଉପରେ ଠାକୁର ପ୍ରତିଷ୍ଠା ପରଠାରୁ ଏଠାରେ ଶାବର ଶ୍ରୀକ୍ଷେତ୍ରର ଭିତ୍ତିଭୂମି ପଡିଥିଲା । ୧୯୬୯ ମସିହାରେ ପୁରୀରେ ହୋଇଥିବା ନବକଳେବରର ବଳକା ଦାରୁରେ ନିର୍ମିତ ହୋଇଥିଲେ ଦାରୁବିଗ୍ରହ । ପ୍ରଭୁଙ୍କୁ ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥଶର୍ମା ୧୯୭୨ରେ ଏଠାରେ ପ୍ରତିଷ୍ଠା କରାଇ ଶାବର ଶ୍ରୀକ୍ଷେତ୍ର ଭାବେ କୋରାପୁଟର ନାମକରଣ କରିଥିଲେ । ସେବେଠାରୁ ଏ କ୍ଷେତ୍ର ଜିଲ୍ଲାର ପର୍ଯ୍ୟଟନ ଓ ସାଂସ୍କୃତିକ କ୍ଷେତ୍ରରେ ରାଜ୍ୟ ତଥା ଦେଶରେ ପ୍ରସିଦ୍ଧି ହୋଇ ପାରିଛି । ଶ୍ରୀକ୍ଷେତ୍ରରେ ପ୍ରଚଳିତ ପରମ୍ପରା ଯାନିଯାତ୍ରାକୁ ମନ୍ଦିର ପ୍ରତିଷ୍ଠାଠାରୁ ଏଠିକାର ପରିଚାଳନା କମିଟି ଗୁରୁତ୍ୱ ଦେଇ ପାଳନ କରି ଆସିଛି । ଶାବର ଶ୍ରୀକ୍ଷେତ୍ର ମୁଖ୍ୟ ମନ୍ଦିର ନିର୍ମାଣ ଲାଗି ୧୯୭୩ ଜୁଲାଇ ୧୧ ତାରିଖରେ ତତ୍‌କାଳୀନ ଜିଲ୍ଲାପାଳଙ୍କ ଦ୍ୱାରା ଭୂମି ପୂଜନ ହେବା ପରେ ସ୍ଥପତି ସତ୍ୟବାଦୀ ମହାରଣାଙ୍କ ଦ୍ୱାରା ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୯୭୮ ଜୁନ୍‌ରେ ନିର୍ମାଣ କାର୍ଯ୍ୟ ସମାପ୍ତି ହୋଇଥିଲା । ପରେ ପୁରୀ ରାଜା ଦିବ୍ୟସିଂହ ଦେବଙ୍କ ଉପସ୍ଥିତିରେ ୩ ଦିନ ଧରି ପ୍ରତିଷ୍ଠା ଉତ୍ସବ ପରେ ଚତୁର୍ଦ୍ଧାମୂର୍ତ୍ତି ନବ ନିର୍ମିତ ମନ୍ଦିରକୁ ବିଜେ କରିଥିଲେ । ତତ୍ ପରେ ପରେ ୧୯୮୨ ଏପ୍ରିଲ୍‌ରେ ବାରଣାସୀର କାଶୀରେ ଦୁଇଶହ ବର୍ଷ ଧରି ପୂଜିତ ବାଣଲିଙ୍ଗ ମହାପ୍ରଭୁଙ୍କୁ ଏହି ପବିତ୍ର କ୍ଷେତ୍ରରେ ଶ୍ରୀ ଶବରେଶ୍ୱର ମନ୍ଦିରରେ ପ୍ରତିଷ୍ଠା କରାଯାଇଥିଲା । ୧୯୮୮ରେ ମୁଖ୍ୟ ମନ୍ଦିର ଚତୁଃପାର୍ଶ୍ୱରେ ପାର୍ଶ୍ୱମନ୍ଦିର ରୂପେ ମହାବୀର ହନୁମାନ, ଶ୍ରୀଗଣେଶ, ସୂର୍ଯ୍ୟ, ଶ୍ରୀ ଲକ୍ଷ୍ମୀ ନୃସିଂହ, ମା' ବିମଳା, ମା' ସରସ୍ୱତୀ, ମାତା ଲଳିତାମ୍ବିକେ (ପର୍ଣ୍ଣ ଶବରୀ), ମହାଲକ୍ଷ୍ମୀ ଓ ନବଗ୍ରହଙ୍କ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ପ୍ରଥମେ ଶବରେଶ୍ୱର ମହାଦେବଙ୍କୁ ଦର୍ଶନ ବିଧି ରହିଛି । ସମୟକ୍ରମେ ଅମରନାଥ, କେଦାରନାଥ, ବୈଷ୍ଣୋଦେବୀ, ବଦ୍ରିନାଥ, ଦ୍ୱାରିକାନାଥ, ଗାୟତ୍ରୀ, ମହାକାଳେଶ୍ୱର, ସୋମନାଥ, ପଶୁପତିନାଥ, ରାମେଶ୍ୱର ମନ୍ଦିରରେ ସମସ୍ତ ଦେବାଦେବୀଙ୍କୁ ସ୍ଥାପନା କରାଯାଇଛି । ଏଠାକାର ମନ୍ଦିର ତିନୋଟି ବେଢ଼ାରେ ବିଭକ୍ତ । ସବା ତଳ ବେଢ଼ା 'ଉତ୍କଳ ଖଣ୍ଡ' ନାମରେ ନାମିତ । କାରଣ ଏଠାରେ ଓଡିଶାର କଟକ ଜିଲ୍ଲାର କଟକ ଚଣ୍ଡୀଙ୍କଠାରୁ ଆରମ୍ଭ କରି ଶ୍ରୀକ୍ଷେତ୍ରର ସିଦ୍ଧ ମହାବୀର ଓ ସୋନପୁରର ସୁବର୍ଣ୍ଣ ମେରୁଙ୍କ ପର୍ଯ୍ୟନ୍ତ ଓଡିଶାର ବିଭିନ୍ନ ଜିଲ୍ଲାର ପ୍ରସିଦ୍ଧ ୩୮ ଜଣ ଦେବାଦେବୀ ପ୍ରତିଷ୍ଠିତ ହୋଇଛନ୍ତି ।

ଐଶାନ୍ୟ କୋଣରୁ ପୂର୍ବ କ୍ରମରେ ଅଛନ୍ତି ପୁରୀର ସିଦ୍ଧ ମହାବୀର, କେନ୍ଦ୍ରାପଡାର ବଳଦେବ ଜୀଉ, କଣ୍ଟିଲୋର ନୀଳମାଧବ, ବ୍ରହ୍ମଗିରିର ଅଲାରନାଥ, ଓଡଗାଁର ରଘୁନାଥ, ଭୁବନେଶ୍ୱରର ଅନନ୍ତ ବାସୁଦେବ, ଯାଜପୁରର ବରାହନାଥ, ପାଇକମାଳର ମାର୍ଜାର କେଶରୀ ନୃସିଂହନାଥ, ବୁଗୁଡାର ବିରଞ୍ଚିନାରାୟଣ, ରେମୁଣାର କ୍ଷୀରାଚୋରା ଗୋପୀନାଥ, ଚଣ୍ଡୀଖୋଲର ମହାବିନାୟକ, ଶରଣକୁଳର ଲଡୁବାବା, ଭଦ୍ରକର ଆଖଣ୍ଡଳମଣି, ମହେନ୍ଦ୍ରଗିରିର ଗୋକର୍ଣ୍ଣେଶ୍ୱର, କୋରାପୁଟର ଗୁପ୍ତେଶ୍ୱର, ଚକାପାଦର ବିରୂପାକ୍ଷ, କପିଳାସର ଚନ୍ଦ୍ରଶେଖର, ଭୁବନେଶ୍ୱରର ଲିଙ୍ଗରାଜ, ହୀରାପୁରର ଚୌଷଠି ଯୋଗିନୀ, ଗଂଜାମର ତାରାତାରିଣୀ, ବଲାଙ୍ଗୀରର ପାଟଣେଶ୍ୱରୀ, ମନ୍ତ୍ରିଡୀର ସିଦ୍ଧ ଭୈରବୀ ପ୍ରଭୃତି ଅନ୍ୟତମ । ଏହି ପୀଠରେ ଏକାସ୍ଥାନରେ ବିଂଶ ସଂଖ୍ୟକ

ଶିବଲିଙ୍ଗ ଦର୍ଶନ କରିବାର ସୌଭାଗ୍ୟ ମିଳେ । ମହାଶିବରାତ୍ରି ଓ କାର୍ତ୍ତିକ ସୋମବାର ତିଥିରେ ଏଠାରେ ଭକ୍ତ ଓ ଶ୍ରଦ୍ଧାଳୁମାନଙ୍କର ପ୍ରବଳ ଭିଡ ହୁଏ । ମଝି ବେଢ଼ାରେ ଆକର୍ଷଣୀୟ ବେଶ ପରିପାଟୀରେ ସୁସଜ୍ଜିତ ଜଗନ୍ନାଥଙ୍କ ବିଭିନ୍ନ ବେଶ ଦେଖିବାକୁ ମିଳେ । ଏହି ବେଢ଼ାରେ ମଧ୍ୟ ଭାରତ ଭୂଖଣ୍ଡର କାମାକ୍ଷୀଙ୍କ ପରି ବିଭିନ୍ନ ଦେବଦେବୀଙ୍କ ବିଗ୍ରହ ବିଦ୍ୟମାନ ଅଛନ୍ତି । ମଝି ବେଢ଼ାର ଦକ୍ଷିଣ ପଶ୍ଚିମ ପଟେ ବିସ୍ତୃତ ଆନନ୍ଦବଜାର । ସେଠାରେ ପ୍ରସାଦ ସେବନ କରି ଦଣ୍ଡେ ବସି ପଡିଲେ ଆତ୍ମତୃପ୍ତି ମିଳିଥାଏ । ଦ୍ୱିତୀୟ ଓ ତୃତୀୟ ବେଢ଼ା ମଝିରେ ରହିଛି ଭାଗବତ ଘର । ଏହା ଏକ ସ୍ମରଣୀୟ ସ୍ଥଳୀ ଅଟେ । ଶ୍ରୀକ୍ଷେତ୍ର  ଭଳି ଏଠାରେ ବର୍ଷତମାମ ଭକ୍ତ ଓ ଶ୍ରଦ୍ଧାଳୁଙ୍କ ଭିଡ ଜମିଥାଏ । ବିଶେଷକରି ଶୀତ ଋତୁରେ ଲକ୍ଷାଧିକ ପର୍ଯ୍ୟଟକ ଶାବର ଶ୍ରୀକ୍ଷେତ୍ର ପରିଭ୍ରମଣ କରନ୍ତି । ସବୁଠାରୁ ବଡ କଥା ହେଉଛି ଗୋଟିଏ ସ୍ଥାନରେ ସମଗ୍ର ଭାରତବର୍ଷର ପ୍ରମୁଖ ଦେବଦେବୀଙ୍କୁ ଦର୍ଶନ କରିବାର ସୁଯୋଗ ଏଠାରେ ମିଳିଥାଏ ।

ଜିଲ୍ଲାରେ ଥିବା ବିଭିନ୍ନ ପର୍ଯ୍ୟଟନ, ଦର୍ଶନୀୟ ଓ ଆଧ୍ୟାତ୍ମିକ ସ୍ଥଳୀଗୁଡିକ ମଧ୍ୟରେ ଶାବର ଶ୍ରୀକ୍ଷେତ୍ର, ଗୁପ୍ତେଶ୍ୱର ଶୈବପୀଠ, ମାଛକୁଣ୍ଡ ଡୁଡୁମା ଜଳପ୍ରପାତ, ଅନକାଡିଲିଠାରେ ଥିବା ବଣ୍ଡା ସମ୍ପ୍ରଦାୟର ସାପ୍ତାହିକ ହାଟ, ଜଲାପୁଟ ଜଳଭଣ୍ଡାର, କଫିବୋର୍ଡ, ଆଦିବାସୀ ସଂଗ୍ରହାଳୟ, ନନ୍ଦପୁର ବତିଶ ସିଂହାସନ, ଦେଓମାଳି, ସୁବାଇ ଜୈନ କୀର୍ତ୍ତି, ଦାମନଯୋଡି ଏସିଆର ସର୍ବ ବୃହତ୍ତମ ଆଲୁମିନା କାରଖାନା ଓ ଏଠିକାର ଜଗନ୍ନାଥ ମନ୍ଦିର, ପାର୍କ, ବୃହତ୍ ହନୁମାନ ମୂର୍ତ୍ତି, ସୁନାବେଡା ମିଗ୍ ବିମାନ କାରଖାନା ଏବଂ ତା'ର ପାର୍ଶ୍ୱରେ କୋଲାବ ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ବାଗ୍ରା ଜଳପ୍ରପାତ, ହରିଣ ଉଦ୍ୟାନ, ଡୁମୁରିପୁଟଠାରେ ଓଡିଶାର ଉଚ୍ଚତମ ହନୁମାନ ସ୍ତୁପ, ଗୁପ୍ତେଶ୍ୱର ଗୁହା, ଗୁଲୁମି କେଚେଲା, ରାଜାଗୁମ୍ଫା, ବାଇଡ଼ା ଗୁମ୍ଫା, ନିଲାବାଡିଠାରେ ଦେବୀ ମୃତ୍ୟାଲୁମାଙ୍କର ନବରାତ୍ରୀ ଅଗ୍ନି ଗଙ୍ଗା ମା' ଯାତ୍ରା ଓ ଐତିହାସିକ ସ୍ଥାନ ନାରାୟଣ ପାଟଣା ଅନ୍ୟତମ ।

କିମ୍ବଦନ୍ତୀ ଅନୁଯାୟୀ ନନ୍ଦପୁର ରାଜାଙ୍କୁ ଶାସନ କାର୍ଯ୍ୟରେ ସହାୟତା କରିବା ପାଇଁ ରଣପୁରରୁ ଖରାନାୟକ ନାମକ ଜଣେ ବ୍ୟକ୍ତି ଆସିଥିଲେ । ସେ ଏଠାରେ ବସତି ସ୍ଥାପନ କରି ସ୍ଥାୟୀ ଭାବରେ ରହିବାପାଇଁ ମନସ୍ଥ କଲେ । ତାଙ୍କ ନାମ ଅନୁସାରେ ସ୍ଥାନର ନାମ ଖରାପୁଟ ହୋଇଥିଲା । ପରବର୍ତ୍ତୀ ସମୟରେ ଏହା ପରିବର୍ତ୍ତିତ ହୋଇ କୋରାପୁଟ ହୋଇଛି । ଅନ୍ୟ ମତରେ- ଏଠାରେ ପୂର୍ବରୁ ବହୁତ କରକାପାତ (କୁଆ ପଥର) ବୃଷ୍ଟି ହେଉଥିଲା । ତେଣୁ ଏହାର ନାମ ପ୍ରଥମେ କରାପୁଟ ହୋଇ ପରେ 'କୋରାପୁଟ' ହୋଇଛି । ଅନ୍ୟ ଏକ ମତ ଅନୁଯାୟୀ ଏଠି କରା ନାମକ ଏକ ବୁଦା ଗଛ ବହୁ ପରିମାଣରେ ଦେଖାଯାଏ । ତେଣୁ ଏହାର ନାମ କରାପୁଟ ହୋଇ ପରେ କୋରାପୁଟ ହୋଇଛି । ପ୍ରଶାସନର ସୁବିଧା ନିମନ୍ତେ ଏହି ବୃହତ୍ ଜିଲ୍ଲାକୁ ୧୯୯୨ ମସିହା ଅକ୍ଟୋବର ମାସ ୨ ତାରିଖରେ ୪ ଜିଲ୍ଲାରେ ବିଭକ୍ତ କରାଗଲା । ସେଗୁଡିକ ହେଲା- (୧) କୋରାପୁଟ, (୨) ରାୟଗଡା, (୩) ନବରଙ୍ଗପୁର ଓ (୪) ମାଲକାନଗିରି । କୋରାପୁଟର ଶତକଡା ୮୫ ଭାଗ ଲୋକ ଆଦିବାସୀ । କିଏ ଶବର କିଏ ବଣ୍ଡା ଅବା କୋୟା, ସୌରା, ଗଦବା, ଭୂୟାଁ, ପରଜା ନହେଲେ କନ୍ଧ । ଶ୍ରୀଜୀଉଙ୍କ ସାଦୃଶ୍ୟ ଥିବା କାଷ୍ଠ ନିର୍ମିତ ଦେବତା ବିଗ୍ରହକୁ ଏଠାକାର ଅନେକ, ଆଦିବାସୀ ପୂଜା କରନ୍ତି । ସେମାନେ ବସ୍ତୁତଃ ଜଗନ୍ନାଥ ତତ୍ତ୍ୱକୁ ମୌଳିକ ଉପାଦାନ ଯୋଗାଇ ଥିଲେ । ଆଜି ମଧ୍ୟ ଆଦିବାସୀର ଛଳନା ହୀନ ସରଳ ବ୍ୟବହାର ପୃଥିବୀର ତଥା କଥିତ ଶିକ୍ଷିତ ମଣିଷ ପକ୍ଷରେ ଏକ ଦୁର୍ମୂଲ୍ୟ ବସ୍ତୁ । ତେଣୁ କୋରାପୁଟ ବାସ୍ତବରେ ଶାବର ଶ୍ରୀକ୍ଷେତ୍ର ।

### ଦେଓମାଳି

ଓଡିଶାର ସର୍ବୋଚ୍ଚ ଗିରିଶୃଙ୍ଗ ହେଉଛି ଦେଓମାଳି । ସମୁଦ୍ର ପତନଠାରୁ ୧୭୧୫ ମିଟର ଉଚ୍ଚରେ ଅବସ୍ଥିତ । ଯାହାକି କୋରାପୁଟ ଜିଲ୍ଲାର ପଟାଙ୍ଗୀ ବ୍ଲକରେ । ଏହାର ପର୍ବତ ଶିଖର ଘଞ୍ଚ ଜଙ୍ଗଲକୁ ଘେରି ରହିଛି ।

କୋରାପୁଟଠାରୁ ପଟାଙ୍ଗୀ ଗଲାବେଳେ କୁନ୍ଦୁରି ଛକଠୁ ଦେଓମାଳି ଯିବାକୁ ହୋଇଥାଏ । କୋରାପୁଟଠୁ ୫୫ କି.ମି. ଦୂରରେ ବା କୁନ୍ଦୁରି ଛକରୁ ୨୨ କି.ମି. ଦୂରରେ



ଦେଓମାଳି ଶିଖର । ସ୍ଥାନୀୟ ଆଦିବାସୀଙ୍କ ଭାଷାରେ ଦେବତାମାନେ ଏଠାର ଅବସ୍ଥାନ କରୁଥିବାରୁ ଏହା ଦେଓମାଳି ପର୍ବତ ନାମରେ ନାମିତ ହୋଇଛି । ବର୍ଷତମାମ ଏଠାକୁ ପର୍ଯ୍ୟଟକଙ୍କ ଭିଡ ଲାଗି ରହିଥାଏ । ବହୁ ପର୍ଯ୍ୟଟକ ଏଠାରେ ବଣଭୋଜି କରିବା ସହ ରାତି ଯାପନ କରି ମଜା ନିଅନ୍ତି । ଏଠାରେ ବହୁ ଔଷଧୀୟ ଗଛ ଓ ଜୀବଜନ୍ତୁ ରହିଥିବାର ଜଣାଯାଏ । ଏତଦ୍‌ବ୍ୟତୀତ ପାହାଡ ପରିସର ବକ୍ସାଇଟ୍, ଚୂନପଥର ଓ ଅନ୍ୟାନ୍ୟ ଖଣିଜ ସମ୍ପଦରେ ଭରପୂର । ତେଣୁ ପଡୋଶୀ ରାଜ୍ୟମାନେ ଏହା ଉପରେ ଲୋଲୁପ ଦୃଷ୍ଟି ପକାନ୍ତି । ଏହି ଉପତ୍ୟକାରେ କନ୍ଧ, ଭୂମିଆ, ପରଜା, ମାଳି ଓ ଭୂତିଆ ସମ୍ପ୍ରଦାୟ ବସବାସ କରି ରହନ୍ତି । ପ୍ରଚଣ୍ଡ ଗ୍ରୀଷ୍ମରେ ଲୋକେ ଆଉଟୁ ପାଉଟୁ ହେଲାବେଳେ ଏହାରି ଶିଖରରେ ଥଣ୍ଡା ଅନୁଭୂତ ହୁଏ । ତେଣୁ ଖରା, ବର୍ଷା, ଶୀତ, କାକର ସବୁ ସମୟରେ ଏଠାକୁ ରାଜ୍ୟ ଓ ରାଜ୍ୟ ବାହାରୁ ବହୁ ପର୍ଯ୍ୟଟକ ଆସନ୍ତି । ପର୍ବତାରୋହୀ, କ୍ରୀଡାପ୍ରେମୀଙ୍କ ପାଇଁ ଏହା ଆକର୍ଷଣୀୟ ହୋଇଥିବା ବେଳେ ଏଠାରେ ହୋଇଥିବା ସଂପ୍ରତି ପାରା ଗ୍ଲାଇଡିଂ ଓ ଇକୋ-ରିଟ୍ରିଟ ପୁଟସିଲ ସମସ୍ତଙ୍କୁ ବେଶ୍ ଆନନ୍ଦ ଦିଏ । ଦେଓମାଳିର ଉଚ୍ଚତା ହେଉଛି ୫୪୭୦ ଫୁଟ ।

## ଡୁମୁରିପୁଟ

ଜାତୀୟ ରାଜପଥ ୪୩ ନମ୍ବର କଡରେ ରାମ ମନ୍ଦିର ଓ ବିରାଟ ହନୁମାନ ମୂର୍ତ୍ତି ଏଠିକାର ବଡ ଆକର୍ଷଣୀୟ । ଏହି ମନ୍ଦିରଟି କୋରାପୁଟ ଓ ସୁନାବେଡା ମଧ୍ୟରେ ଅବସ୍ଥିତ । କୋରାପୁଟଠାରୁ ଏହା ମାତ୍ର ୧୬ କି.ମି. ହେବ । ରାମ ନବମୀ ଦିନ ଏଠାରେ ବହୁ ଲୋକ ସମାଗମ ହୁଅନ୍ତି । ଏଠିକାର ପରିବେଶ ବଡ ମନଲୋଭା । ବଣ ପାହାଡଘେରା ଅଞ୍ଚଳ ମଧ୍ୟରେ ହନୁମାନଙ୍କ ବିଗ୍ରହ ପୂଜା ପାଆନ୍ତି । ପଶୁପକ୍ଷୀଙ୍କ କିଚିରି ମିଚିର ଶବ୍ଦ ସାଙ୍ଗକୁ ସୂର୍ଯ୍ୟାଲୋକର ଲୁଚକାଳି ଖେଳ ମଧ୍ୟରେ ମନ ହୁଏ ଭାରି ମତୁଆଲା । ଏଠାକୁ ଆସିଲେ ଥରେ ଫେରି ଯିବାକୁ ମନ ବଳେନି ।

## ଗୁପ୍ତେଶ୍ୱର

କୋରାପୁଟର ପ୍ରସିଦ୍ଧ ଶୈବପୀଠ ଓ ଦର୍ଶନୀୟ ସ୍ଥାନ ହେଉଛି ଗୁପ୍ତେଶ୍ୱର । କେବଳ ଓଡିଶା କାହିଁକି ଓଡିଶା ବାହାରୁ ମଧ୍ୟ ବହୁ ପର୍ଯ୍ୟଟକ ଆସି ଏଠାରେ ବାବାଙ୍କୁ ଦର୍ଶନ କରି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଲବ୍ଧ କରିଥାନ୍ତି । କୋରାପୁଟରୁ



ଏହାର ଦୂରତା ୭୦ କି.ମି. ଓ ଜୟପୁରରୁ ଏହାର ଦୂରତା ପ୍ରାୟ ୫୮ କି.ମି. ହେବ । ଏଠାରେ ଏକ ଗୁମ୍ଫା ମଧ୍ୟରେ ଶିବ ଲିଙ୍ଗ ପୂଜା ପାଉଥିବାରୁ ଏହାର ନାମ ଗୁପ୍ତେଶ୍ୱର । ବର୍ଷସାରା ଏଠାରେ ଭକ୍ତ ଓ ଶ୍ରଦ୍ଧାଳୁମାନଙ୍କ ପ୍ରବଳ ଜନସମାଗମ ଲାଗି ରହିଥାଏ । ପଡୋଶୀ ଛତିଶଗଡ ଓ ଆନ୍ଧ୍ରପ୍ରଦେଶରୁ ଶହ ଶହ ପର୍ଯ୍ୟଟକ ଏଠାକୁ ଦର୍ଶନ ନିମନ୍ତେ ଆସିଥାନ୍ତି । ଏଠାକୁ ଯିବା ରାସ୍ତାର ଉଭୟ ପାର୍ଶ୍ୱରେ ଶାଳ, ପିଆଶାଳର ସୁଶୋଭିତ ଜଙ୍ଗଲ ସାଙ୍ଗକୁ କୁଳୁକୁଳୁ ନାଦିନୀ

ଝରଣା ସବୁ ପଥଚାରୀଙ୍କୁ ମନ୍ତ୍ରମୁଗ୍ଧ କରେ । ବାବାଙ୍କ ପୀଠସ୍ଥଳୀର ୪ କି.ମି. ପୂର୍ବରୁ ଡକିରି ଘାଟୀ ପଡେ । ଏଠିକାର ଆଦିବାସୀମାନେ ବୁଢ଼ୀମାନଙ୍କୁ 'ଡକିରି' ବୋଲି ସମ୍ବୋଧନ କରିଥାଆନ୍ତି । ପ୍ରବାଦ ଅଛି– ରାମଗିରିର ବାଗଦୂରିଆ ବଂଶର ଜନୈକ ବୁଢ଼ୀ ଏହି ଘାଟୀ ତଳେ



ଜୀବନ ବିସର୍ଜନ କରିଥିଲେ । ସେହିଦିନଠାରୁ ଏ ସ୍ଥାନକୁ ଡାଳଖାଇ ଦେବୀ ଭାବେ ପୂଜା କରାଯାଉଛି । ବାଟୋଇମାନେ ଗୁପ୍ତେଶ୍ୱର ଯିବା ପୂର୍ବରୁ ଜଙ୍ଗଲରୁ ଡାଳ ଖଣ୍ଡେ ଖଣ୍ଡେ ଭାଙ୍ଗି ଏହି ସ୍ଥାନରେ ପକାଇ ଗୁପ୍ତେଶ୍ୱର ଅଭିମୁଖେ ଯାଆନ୍ତି । ବନ୍ଧୁର ଘାଟୀଗୁଡିକ ଅତିକ୍ରମ କଲାପରେ ଉତ୍ତୁଙ୍ଗ ପର୍ବତ ଗୁହା ଭିତରେ ଗୁପ୍ତେଶ୍ୱର ପୂଜା ପାଉଛନ୍ତି । ଏହି ଗୁମ୍ଫାଟି ଦାମୋଦର ଖୋଲ ସଂରକ୍ଷିତ ଜଙ୍ଗଲରେ ଅବସ୍ଥିତ । ଜନଶ୍ରୁତି କହେ– ନନ୍ଦପୁର ରାଜବଂଶର ଜନୈକ ପାତ୍ର ରାମଗିରିରେ ଅବସ୍ଥାନ କରୁଥିଲେ । ସେ ଅତି ମାତ୍ରାରେ ମାଂସ ଖାଉଥିଲେ । ଅଧୀନସ୍ଥ ଶିକାରୀମାନଙ୍କ ଦ୍ୱାରା ପ୍ରତିଦିନ ଶିକାର କରାଉଥିଲେ । ଦିନେ ଜଣେ ଶିକାରୀ ଗୋଟିଏ ମୃଗକୁ ଶର ସନ୍ଧାନ କରୁଥିବା ବେଳେ ମୃଗଟି ଅଦୃଶ୍ୟ ହୋଇଗଲା । ମୃଗ ଖୋଜିବାରେ ଶିକାରୀଟି ବୁଲି ବୁଲି ଏହି ଗିରି କନ୍ଦରରେ ଗୁପ୍ତେଶ୍ୱରଙ୍କର ସନ୍ଧାନ ପାଇଥିଲା । ଏହି କଥା ପ୍ରକାଶ ନ କରିବାକୁ ଶିକାରୀକୁ ସ୍ୱପ୍ନ ନିର୍ଦ୍ଦେଶ ହୋଇଥିଲା । ପରିସ୍ଥିତି ଚାପରେ ଏହି କଥା ଉକ୍ତ ପାତ୍ରଙ୍କ ଆଗରେ ଶିକାରୀଟି ପ୍ରକାଶ କରିଦେଇଥିଲା । ପାତ୍ରଙ୍କ ଆଦେଶକ୍ରମେ ସେହିଦିନଠାରୁ ଗୁପ୍ତେଶ୍ୱରଙ୍କ ପୂଜାର୍ଚ୍ଚନା କରାଗଲା । ଏହା ପ୍ରାୟ ଶପ୍ତଦଶ ଶତାବ୍ଦୀର ମଧ୍ୟଭାଗର ଘଟଣା । ତତ୍‌ପରେ ଜୟପୁର ମହାରାଜା ବୀର ବିକ୍ରମ ଦେବଙ୍କ ଦ୍ୱାରା ବିଧିବଦ୍ଧ ଭାବେ ପୂଜକ ନିଯୁକ୍ତି କରାଗଲା । ଠାକୁରଙ୍କ ପୂଜାସ୍ଥଳୀ ପଛପଟରେ ଏକ ବିରାଟ ଗୁମ୍ଫା, ଏହିଠାରୁ ଅନେକ ଦୂରକୁ ସୁଡଙ୍ଗମାନ ଲମ୍ବି ଯାଇଛି । ସେସମୟରେ ଗୁମ୍ଫାର ପଥର ଚଟାଣରୁ ଅସ୍ୱଷ୍ଟ ଜଳ ବିନ୍ଦୁ ନିର୍ଗତ ହେଉଥିଲା । ଏହାକୁ କପିଳା ଗାଈର କ୍ଷୀର ବୋଲି କେତେକ କହୁଥିଲେ । ଏହି ପାଣି ହାତରେ ପଡିଲେ ମାନସିକ ଅଭିଳାଷ ସିଦ୍ଧ ହେବ ବୋଲି କୁହାଯାଏ । ଠାକୁରଙ୍କର ଅନତି ଦୂରରେ କଳକଳ ନାଦିନୀ କୋଲାବ ନଦୀ ବହି ଯାଉଛି ଓଡିଶା ଓ ମଧ୍ୟପ୍ରଦେଶର ସୀମାରେଖା ଭାବେ । ମହାଶିବରାତ୍ରି, କାର୍ତ୍ତିକ ମାସ ପ୍ରତ୍ୟେକ ସୋମବାର ଓ କାର୍ତ୍ତିକ ପୂର୍ଣ୍ଣିମା ଦିନ ପୀଠଟି ଲୋକାରଣ୍ୟ ହୋଇଥାଏ ।

### ମାଛକୁଣ୍ଡ, ଡୁଡୁମା ଓ ରାଣୀ ଡୁଡୁମା ଜଳପ୍ରପାତ

ଏହା ଏକ ଆକର୍ଷଣୀୟ ଦର୍ଶନୀୟ ସ୍ଥାନ । ଡୁଡୁମା ଜଳପ୍ରପାତ ୧୫୫.୫ ମିଟର ଉଚ୍ଚରୁ ଖସିପଡି ବଡ ଶୋଭନୀୟ ଦେଖାଯାଏ । ଏଠାରେ ଜଳ ବିଦ୍ୟୁତ କେନ୍ଦ୍ର ଅବସ୍ଥିତ । ଲମତାପୁଟରେ ଡୁଡୁମା ଓ ନନ୍ଦପୁରରେ ରାଣୀ ଡୁଡୁମା ଜଳପ୍ରପାତ ଅବସ୍ଥିତ । କୋରାପୁଟରୁ ମାଛକୁଣ୍ଡ ପ୍ରାୟ ୮୫ କି.ମି. । ସେହିପରି ନନ୍ଦପୁର ବ୍ଲକ୍‌ର ରାଣୀ ଡୁଡୁମା କୋରାପୁଟରୁ ୪୫ କି.ମି. ଦର୍ଶକଙ୍କୁ ଯିବାକୁ ହୁଏ ।

### ନାରାୟଣ ପାଟଣା

ଏହା ଏକ ଐତିହାସିକ ସ୍ଥାନ । ଜଗନ୍ନାଥ ମନ୍ଦିର ସମେତ ଏଠାରେ କେତେକ ପ୍ରାଚୀନ ମନ୍ଦିର ଦେଖାଯାଏ ।

**ନନ୍ଦପୁର**

ଜୟପୁର ରାଜ୍ୟର ପ୍ରଥମ ରାଜଧାନୀ ଭାବେ ନନ୍ଦପୁର ପରିଚିତ । ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ ପରି ଏଠାରେ ବତ୍ରିଶ ସିଂହାସନ ଅଛି । ୧.୮ ମିଟରର ଗଣେଶ ମୂର୍ତ୍ତି ଏଠାରେ ଦେଖିବାକୁ ଭାରି ମନଲୋଭା । ପ୍ରାଚୀନ ସର୍ବେଶ୍ୱର ମନ୍ଦିର, ପାତାଳ ଭୈରବ, ମଠ ଭୈରବ, ନିଦ୍ରା ଦେବୀ, ଦୁର୍ଗା ଆଦି ଦେବ ଦେବୀଙ୍କର ଆସ୍ଥାନ ଏଠାରେ ଅଛି । ଏଠିକାର ଜଗନ୍ନାଥ ମନ୍ଦିର ଅତ୍ୟନ୍ତ ଚିତ୍ତାକର୍ଷକ । ଆମେ ବୁଲିବାକୁ ଯିବା ସମୟରେ ଏଠାରେ ପ୍ରବଳ ବର୍ଷା ହୋଇଥିଲା । ଆମେ ବର୍ଷାରେ ଭିଜି ମନ୍ଦିରରେ ଆଶ୍ରୟ ନେବାକୁ ଗଲାବେଳେ ପ୍ରାୟ ସାଢ଼େ ଗୋଟାଏ ହେବ, ସେଠାରେ ଠାକୁରଙ୍କ ଭୋଗ ଅନ୍ନପ୍ରସାଦ ଖାଇଥିଲୁ ।

ମାଛକୁଣ୍ଡ ଜଳ ବିଦ୍ୟୁତ କେନ୍ଦ୍ର ପାଇଁ ଜଲାପୁଟଠାରେ ଜଳଭଣ୍ଡାର ନିର୍ମିତ ହୋଇଛି । ଏହା ପିକ୍‌ନିକ୍ ପାଇଁ ସୁନ୍ଦର ସ୍ଥାନ ଅଟେ । ସୁବାଇର ଜୈନ ମନ୍ଦିର ଖ୍ୟାତି ସୁଦୂରପ୍ରସାରୀ । କୋଲାବର ଜଳଭଣ୍ଡାର ଓ ଏହାର ନିମ୍ନ ଦେଶରେ ଥିବା ପାର୍କ ସମସ୍ତଙ୍କୁ ଆକର୍ଷିତ କରିବା ସଙ୍ଗେ ସଙ୍ଗେ ଏଠାରେ ଅନେକ ବଣଭୋଜି କରି ମଜା ନିଅନ୍ତି । ମାଳିଗୁଡାର ରେଳ ସୁଡଙ୍ଗ ଏସିଆ ମହାଦେଶର ଦୀର୍ଘତମ ସୁଡଙ୍ଗ । ପାହାଡ କଟାଯାଇ ଏହା ଯେପରି ନିର୍ମିତ ହୋଇଛି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ରାମଗିରିର ପ୍ରାକୃତିକ ପରିବେଶ ଓ ପର୍ବତଶ୍ରେଣୀ ଅତ୍ୟନ୍ତ ମନୋଲୋଭା । ବନବାସ କାଳରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଏଠାରେ କିଛିଦିନ ରହିଥିଲେ ବୋଲି ପାହାଡର ନାମ ରାମଗିରି ହୋଇଛି ବୋଲି କିମ୍ବଦନ୍ତୀ ଅଛି । ଏଠାରେ ମହାକବି କାଳିଦାସ ଅବସ୍ଥାନ କରି ତାଙ୍କ 'ମେଘଦୂତ' କାବ୍ୟ ରଚନା କରିଥିବା ଜଣାଯାଏ । ଜୟପୁର ହେଉଛି ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର । ଏଠାରେ ପ୍ରାଚୀନ ମନ୍ଦିର, ଆକାଶବାଣୀ କେନ୍ଦ୍ର ଓ ବିଭିନ୍ନ ସରକାରୀ ଅଫିସ ଅଛି । ଏଠିକାର ପ୍ରାଚୀନ ରାଜପ୍ରାସାଦରେ ଅଷ୍ଟଧାତୁର କନକ ଦୁର୍ଗାମୂର୍ତ୍ତି ରହିଛି । ସୁନାବେଡାଠାରେ କେନ୍ଦ୍ର ସରକାରଙ୍କ କେନ୍ଦ୍ରୀୟ ଗୋପାଳନ ପ୍ରଜନନ ଫାର୍ମ, ଭାରତୀୟ ବାୟୁସେନାର ଗୋଳାବାରୁଦ ଡିପୋ, କେନ୍ଦ୍ରୀୟ କୃଷି ଗବେଷଣା କେନ୍ଦ୍ର ତଥା ଓ.ୟୁ.ଏ.ଟି.ର ଫାର୍ମ ମଧ୍ୟ ଅଛି । ଦାମନଯୋଡି ଶିଳ୍ପାଞ୍ଚଳରେ ହନୁମାନ ବାଟିକା, କଣ୍ଢାବାଉଁଶୁଣୀ ମନ୍ଦିର, ପାର୍କ, ଜଗନ୍ନାଥ ମନ୍ଦିର, ସାଇ ମନ୍ଦିର ପ୍ରଭୃତି ଆକର୍ଷଣୀୟ । ରାୟଗଡାର ମଝି ଘରିଆଣୀ ଠାକୁରାଣୀ ମନ୍ଦିର, ଜଗନ୍ନାଥ ମନ୍ଦିର, ଦୁର୍ଗାଜଳ ପ୍ରପାତ ଦେଖିବା ସଙ୍ଗେ ଆମେ ଏଠି ବାବା ଧବଳେଶ୍ୱରଙ୍କ ପାଖକୁ ଗଲାବେଳେ ଝୁଲା ପୋଲ ପାରିହେବା ଭଳି ନାଗାବଳୀ ନଦୀରେ ଝୁଲାପୋଲ ବଡ ଆକର୍ଷଣୀୟ ମନେ ହେଲା ।

**ପରବ**

କୋରାପୁଟ ଜିଲ୍ଲାର ଆଦିବାସୀ ଉତ୍ସବ ନାମରେ ନାମିତ 'ଚଇତ ପରବ' ରାଜ୍ୟସ୍ତରୀୟ ବାର୍ଷିକ ଉତ୍ସବ । ଋତୁରାଜ ବସନ୍ତର ଆଗମନରେ ତନୁରେ କୁହୁକ ଲାଗେ, ମନ ଓ ଆତ୍ମାରେ ଖେଳିଯାଏ ଅପୂର୍ବ ପୁଲକ, ମହୁଲ ସଲପ ଗଛରୁ ଟପ ଟପ ଖସିପଡେ ଅସୁମାରି ମୋତି, ସରଗି ଗଛରେ ଚୁନା ଚୁନା ଫୁଲର ମହକ ମତୁଆଲା ହୋଇ ନାଚି ଉଠେ ପାହାଡି ଲଳନା । ଫୁଲ ଫଗୁଣର ନିମନ୍ତ୍ରଣ ନେଇ ଆସେ ଚଇତ ପରବ । ନାଚ ଗୀତରେ ବନ ଭୂମି ମୁଖରିତ ହୁଏ ।

ଏହି ପର୍ବ ଜିଲ୍ଲା ସଂସ୍କୃତି ପରିଷଦ ଓ ଜିଲ୍ଲା ପ୍ରଶାସନ ତରଫରୁ ୧୯୯୬ ମସିହାରୁ ନିୟମିତ ପାଳନ କରାଯାଉଛି । ଏହା ପ୍ରତିବର୍ଷ ନଭେମ୍ବର ମାସରେ ସମଗ୍ର ଜିଲ୍ଲାରେ ମହାସମାରୋହରେ ପାଳନ କରାଯାଇଥାଏ ଏବଂ ଆଦିବାସୀ ସଂସ୍କୃତିର ନୃତ୍ୟ ସଂଗୀତ ସହ ବିଭିନ୍ନ ରାଜ୍ୟରୁ ଆଦିବାସୀ ସଂସ୍କୃତିର କଳାକାରମାନଙ୍କୁ ନିମନ୍ତ୍ରିତ କରାଯାଇ ସେମାନଙ୍କ ସେଇ ରାଜ୍ୟର ଆଦିବାସୀ ନୃତ୍ୟ ସଂଗୀତ ପରିବେଷଣ କରାଯାଇଥାଏ । 'ପରବ' ସମୟରେ ଜିଲ୍ଲାରେ ଥିବା ଲୁକ୍କାୟିତ ଯୁବ ପ୍ରତିଭାର ଅନ୍ୱେଷଣ ନିମନ୍ତେ ବିଭିନ୍ନ ପ୍ରତିଯୋଗିତାର ଆୟୋଜନ କରାଯାଇଥାଏ । ଯଥା– ହସ୍ତତନ୍ତ ମେଳା, ପର୍ବତ ଆରୋହଣ, ନୌଚାଳନା, ଅଭିନୟ ପ୍ରତିଯୋଗିତା ଇତ୍ୟାଦି ।

କୋରାପୁଟ ଅଭିମୁଖେ ଆମ ପରିବାର ଗତ ତା.୨୯.୧୦.୨୦୨୧ରେ ଭୁବନେଶ୍ୱର ଜଗଦଲପୁର, ଛତିଶଗଡ ଟ୍ରେନ୍‌ରେ ଯାଇଥିଲୁ । ଟିକିରି ଷ୍ଟେସନରେ ଓହ୍ଲାଇଲୁ । ସେଠାରୁ ପ୍ରାୟ ୨୫କି.ମି. ହେବ ଗାଡିରେ ଲକ୍ଷ୍ମୀପୁର ଗଲୁ । ସେଠାରେ ଅତିଥି ଭବନରେ ରହିଲୁ । ଏହି ବ୍ୟବସ୍ଥା ସେଠାରେ ରହୁଥିବା ପୁଅର ସାଙ୍ଗ କରିଥିଲେ । ଗାଡି ନେଇ ଏ ସମସ୍ତ ବୁଲି ଦର୍ଶନ କରାଇବାରେ ସେ ଆମ ସହ ଥିଲେ । ଆମେ କଫି ଗଛ ପ୍ରଥମକରି କୋରାପୁଟ ଭ୍ରମଣରେ ଦେଖିଲୁ ଏବଂ ସେଠାକାର ସରକାରୀ ବିକ୍ରୟ କେନ୍ଦ୍ରରୁ କଫି କିଣି ଆଣିଲୁ ।

ପ୍ରାଚୀନ କାଳରେ ପର୍ଯ୍ୟଟନ କେବଳ ଧାର୍ମିକ ତଥା ଆରାଧନା ନିମିତ୍ତ ଉଦ୍ଦିଷ୍ଟ ଥିବା ବେଳେ ଆଧୁନିକ ସମୟରେ ତାହା ଉଭୟ ଆଧ୍ୟାତ୍ମିକ, ଅବସର ବିନୋଦନ ତଥା ମନୋରଞ୍ଜନର ଏକ ବଳିଷ୍ଠ ମାଧ୍ୟମ ସାଜିଛି । ଆମ ରାଜ୍ୟରେ ଶୀତଋତୁ ହିଁ ପର୍ଯ୍ୟଟନର ପ୍ରକୃଷ୍ଟ ସମୟ । ନଭେମ୍ବର ମାସରୁ ଫେବୃୟାରୀ ମଧ୍ୟରେ ପର୍ଯ୍ୟଟନସ୍ଥଳୀଗୁଡିକ ଉତ୍ସବ ମୁଖରହୋଇ ଉଠନ୍ତି । ତେବେ ପର୍ଯ୍ୟଟକମାନେ କେତେକ ବିଷୟ ପ୍ରତି ଧ୍ୟାନ ଦେବା ନିତାନ୍ତ ଜରୁରୀ ମନେହୁଏ । ଅନ୍ୟ ଅଞ୍ଚଳର ପର୍ବତ, ନଦୀ, ସମୁଦ୍ର, ଜଳପ୍ରପାତରେ ସ୍ନାନ ବେଳେ ବା ପର୍ବତ ଶିଖରରୁ ସେଲ୍‌ଫି ଉଠାଇବା ବେଳେ ସତର୍କ ରହିବାକୁ ହେବ । ଜଳଯାତ୍ରା ପାଇଁ ଉପଯୁକ୍ତ ନୌକା ଚୟନକରି ନୌକାର କ୍ଷମତା ଅନୁଯାୟୀ ଯାତ୍ରୀ ପରିବହନକୁ ସୁନିଶ୍ଚିତ କରିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଗାଡି ଚାଳକମାନେ ରାତ୍ରି ଉଜାଗର ସହ ମଦ୍ୟପାନ ଓ ଦ୍ରୁତଗତିରେ ଗାଡି ନ ଚଳାଇବାକୁ ଧ୍ୟାନ ଦେବା ସହ ପର୍ଯ୍ୟଟନ ସ୍ଥଳୀର ପରିଷ୍କାର ପରିଚ୍ଛନ୍ନତା ପ୍ରତି ବିଶେଷ ଦୃଷ୍ଟିଦେବା ଏକାନ୍ତ ବାଞ୍ଛନୀୟ । ଯାହାଦ୍ୱାରା ପର୍ଯ୍ୟଟନ ସର୍ବଦା ସୁଖମୟ ହୋଇଥାଏ ।

ଏମ୍.ଆଇ.ଜି. ୧-୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର – ୭୫୧୦୧୬



# ଓଡ଼ିଶା ମାନଚିତ୍ରରେ ବାଲେଶ୍ୱର ଜିଲ୍ଲାର ପର୍ଯ୍ୟଟନ ସ୍ଥଳ

**କମଳ କୁମାର ରାଉତ**

ଆମ ରାଜ୍ୟ ଓଡ଼ିଶାର ଉତ୍ତର ଭାଗରେ ବାଲେଶ୍ୱର ଜିଲ୍ଲା ଅବସ୍ଥିତ । ଐତିହାସିକମାନଙ୍କ ମତରେ 'ବାଲା–ଏ–ସୋର' ଏକ ପାର୍ସୀ ଶବ୍ଦ । ଯାହାର ଅର୍ଥ ସମୁଦ୍ର ତଟସ୍ଥ ସହର । ମୋଗଲ ରାଜତ୍ୱ ସମୟରୁ ଏହି ନାମ ପ୍ରଚଳିତ ହୋଇଆସୁଅଛି । ଆହୁରି ମଧ୍ୟ ଶୁଣାଯାଏ ବାଣାସୁର ଏହି ଅଞ୍ଚଳକୁ ଶାସନ କରୁଥିବାରୁ ତାହାରି ନାମ ଅପଭ୍ରଂଶ ହୋଇ ବାଲେଶ୍ୱର ହୋଇଛି । ଏହି କଥାକୁ ପ୍ରମାଣିତ କରେ ବଙ୍ଗୋପ ସାଗରର ବାଣାସୁରଘାଟ । ଏହାଛଡ଼ା ପୁରୁଣା ବାଲେଶ୍ୱରରେ ମଧ୍ୟ ଏକ ବାଣେଶ୍ୱର ଶିବ ମନ୍ଦିର ଅଛି । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ମାନ୍ୟତା ପାଇବା ପରେ ଗଠିତ ୬ଟି ଜିଲ୍ଲା ମଧ୍ୟରୁ ବାଲେଶ୍ୱର ଜିଲ୍ଲା ଅନ୍ୟତମ ଅଟେ । ଏହାର ପୂର୍ବରେ – ବଙ୍ଗୋପ ସାଗର, ପଶ୍ଚିମରେ – କେନ୍ଦୁଝର ଜିଲ୍ଲା, ଉତ୍ତରରେ – ପଶ୍ଚିମବଙ୍ଗର ମେଦିନାପୁର ଜିଲ୍ଲା, ଦକ୍ଷିଣରେ – ଭଦ୍ରକ ଓ ମୟୂରଭଞ୍ଜ ଜିଲ୍ଲା ଅବସ୍ଥିତ । ଏହି ଜିଲ୍ଲାରେ କୃଷି, ଶିଳ୍ପ, ମତ୍ସ୍ୟ ଓ ପର୍ଯ୍ୟଟନ ମୁଖ୍ୟ ରୋଜଗାର ପନ୍ଥା ଅଟେ । ଏହି ସହରଟି ଭୁବନେଶ୍ୱର ବିମାନ ବନ୍ଦରରୁ ୨୧୦କି.ମି. ଏବଂ ଯାତ୍ରୀବାହୀ ବସ୍ ଷ୍ଟାଣ୍ଡରୁ ୨୦୦ କି.ମି. ଦୂରରେ ଅବସ୍ଥିତ ଓ ଓଡ଼ିଶାର ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳ ହିସାବରେ ପ୍ରସିଦ୍ଧିଲାଭ କରିଛି । ପ୍ରାକୃତିକ ପରିବେଶ, ବଣଜଙ୍ଗଲ ଘେରା ପାହାଡ଼, ପର୍ବତ ଓ ସମୁଦ୍ରର ବେଳାଭୂମି ବହୁ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଛି । ଏଠାରେ କିଛି ପ୍ରମୁଖ ପର୍ଯ୍ୟଟନସ୍ଥଳୀର ବିବରଣୀ ପ୍ରଦାନ କରାଗଲା ।

୧) **ରାଇବଣିଆ ଦୁର୍ଗ** : ଏହାକୁ ଉତ୍କଳର ପ୍ରବେଶ ଦ୍ୱାର ବୋଲି କୁହାଯାଏ । ମାଙ୍କଡ଼ା ପଥର ନିର୍ମିତ ଏହି ଗଡ଼ ମଧ୍ୟରେ ନନ୍ଦିକା, ଶୀର୍ଷା ଓ କୌଶଲ୍ୟା ନାମରେ ତିନୋଟି ପୁଷ୍କରିଣୀ ଅଛି । ଗଡ଼ ମଧ୍ୟରେ ଜୟଚଣ୍ଡୀ ଠାକୁରାଣୀ ପୂଜା ପାଉଛନ୍ତି । ବାଲେଶ୍ୱର ଜିଲ୍ଲାର ଜଳେଶ୍ୱରଠାରୁ ଉତ୍ତରକୁ ପ୍ରାୟ ତିନି କି.ମି. ଦୂର ସୁବର୍ଣ୍ଣରେଖା ନଦୀର ଦକ୍ଷିଣ ପାର୍ଶ୍ୱରେ ଏହି ଦୁର୍ଗ ଅବସ୍ଥିତ । ଜନ୍‌ବିମସ୍‌ଙ୍କ ମତରେ ମୁକୁନ୍ଦଦେବ ରାଇବଣିଆ ଦୁର୍ଗର ପ୍ରତିଷ୍ଠାତା ଅଟନ୍ତି । ଅଧୁନା ବହୁ କ୍ଷୟକ୍ଷତି ଅବସ୍ଥାରେ ଥିଲେ ମଧ୍ୟ ଏହା ପର୍ଯ୍ୟଟକମାନଙ୍କୁ ଭ୍ରମଣର ଆନନ୍ଦ ଦେବା ସହିତ ବହୁ ଐତିହାସିକ କଥାବସ୍ତୁକୁ ମନେ ପକାଇଦିଏ ।

୨) **ଇଞ୍ଚୁଡି** : ବାଲେଶ୍ୱରର ପବିତ୍ର ମାଟି ଇଞ୍ଚୁଡି, ଯାହା ଲବଣ ସତ୍ୟାଗ୍ରହର ପ୍ରଧାନ କେନ୍ଦ୍ର ଥିଲା । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଦାଣ୍ଡିଯାତ୍ରା ବେଳେ ୧୯୩୦ ମସିହା ଏପ୍ରିଲ୍ ମାସରେ ଶହ ଶହ ସତ୍ୟାଗ୍ରହୀଙ୍କ ଉପରକୁ ଇଂରେଜ ସୈନ୍ୟ ଗୁଳିଚାଳନା କରିବାରୁ ବହୁ ସତ୍ୟାଗ୍ରହୀ ପ୍ରାଣବଳି ଦେଇଥିଲେ । ତାଙ୍କରି ଉଦ୍ଦେଶ୍ୟରେ ସେଠାରେ ଶହୀଦ ସ୍ମୃତି ସ୍ତମ୍ଭ ପ୍ରତିଷ୍ଠା କରାଯାଇଛି, ଯାହାକି ଦେଶ ପାଇଁ ଏ ମାଟିର ମଣିଷର ବଳିଦାନ ମହାନ୍ ଅଟେ । ସେହି ବୀରଭୂମିକୁ ଦର୍ଶନ କରିବା ପାଇଁ ବର୍ଷସାରା ଏଠାରେ ପର୍ଯ୍ୟଟକମାନଙ୍କର ଭିଡ଼ ଜମେ ।

୩) **ଚାନ୍ଦିପୁର – କ୍ଷେପଣାସ୍ତ୍ର ପରୀକ୍ଷା କେନ୍ଦ୍ର** : ବାଲେଶ୍ୱର ସହରର ଅନ୍ୟ ନାମ 'ମିଶାଇଲ୍ ସହର'

ଯେଉଁଠାରେ କି ଭାରତ ସରକାରଙ୍କର କ୍ଷେପଣାସ୍ତ୍ର ପରୀକ୍ଷା କେନ୍ଦ୍ର ଭାବରେ ପରିଚିତ । ଏହି କେନ୍ଦ୍ର ଦ୍ୱାରା ଭାରତରେ ନିର୍ମାଣ କମାଣ, ଟ୍ୟାଙ୍କ୍, ରକେଟ୍ ଓ ଗୁଳିଗୋଳାର ଉପଯୁକ୍ତ ଓ ସଠିକ୍ ପରୀକ୍ଷା ପରେ ହିଁ ପ୍ରତିରକ୍ଷା ବାହିନୀ ଦ୍ୱାରା ବ୍ୟବହାର ଯୋଗ୍ୟ ହୁଏ । ଯୁଦ୍ଧ ସମୟରେ ଓ କାର୍ଗିଲ୍ ଭଳି ଯୁଦ୍ଧ ପରିସ୍ଥିତିରେ ଏହି ପରୀକ୍ଷାଗାରର ଭୂମିକା ଅବିସ୍ମରଣୀୟ । ଶତ୍ରୁ ସହ ମୁକାବିଲା ସମୟରେ ସଠିକ୍ ଗୋଳାକ୍ଷେପଣ ଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ କରିବା ସଂଗେ ସଂଗେ ଶତ୍ରୁର ମନୋବଳ ଭାଙ୍ଗିବାରେ ସହାୟକ ହୋଇପାରିଥାଏ । ଏହା ସାରା ବିଶ୍ୱରେ ପ୍ରକୃତି ପ୍ରଦତ୍ତ ଏକ ଅନନ୍ୟ ସାମୁଦ୍ରିକ ରେଞ୍ଜ ଯାହାକି ପର୍ଯ୍ୟଟକମାନଙ୍କ ମନରେ ଅପୂର୍ବ ଆନନ୍ଦ ଭରିଦିଏ ।

୪) **ଚାନ୍ଦିପୁର ବେଳାଭୂମି :** ଏହା ବାଲେଶ୍ୱରଠାରୁ ପ୍ରାୟ ୧୪ କି.ମି. ଦୂର ବଙ୍ଗୋପସାଗର କୂଳରେ ଅବସ୍ଥିତ । ଏହା ଏକ ସ୍ୱାସ୍ଥ୍ୟକର ଓ ଅତ୍ୟନ୍ତ ଆକର୍ଷଣୀୟ ସ୍ଥାନ ଅଟେ । ଏଠାରେ ସମୁଦ୍ର ଜଳ ପ୍ରତ୍ୟେକ ଦିନ ପାଞ୍ଚ କିଲୋମିଟର ଭିତରକୁ ପ୍ରବେଶ କରେ ଓ ପୁଣି ପ୍ରତ୍ୟାବର୍ତ୍ତନ କରେ । ଏହି ଜୁଆର ଭଟ୍ଟାର ଦୃଶ୍ୟ ଓ ସଂଗୀତମୟ ପରିବେଶ ବିଶ୍ୱରେ ବିରଳ । ଏହି ସମୁଦ୍ର ବେଳାଭୂମିରେ ଛୋଟ ଛୋଟ ନାଲି କଙ୍କଡା ଦେଖିବାକୁ ମିଳେ । ବହୁ ପର୍ଯ୍ୟଟକମାନେ ଏଠାରେ ଏହି ବିରଳ ଦୃଶ୍ୟକୁ ଉପଭୋଗ କରିବାକୁ ଧାଇଁ ଆସିଥାନ୍ତି । ବର୍ଷର ଆରମ୍ଭ ଓ ଶେଷ ମାସରେ (ଜାନୁଆରୀ ଓ ଡିସେମ୍ବର) ବଣଭୋଜି କରି ସମୁଦ୍ରର ବେଳାଭୂମିର ଦୃଶ୍ୟକୁ ଉପଭୋଗ କରିବାରେ ଏକ ନିଆରା ଅନୁଭୂତି ଲାଭ କରନ୍ତି ।

୫) **ତଗରା – ଚୌମୁଖ – ବେଳାଭୂମି :** ବାଲେଶ୍ୱର ଜିଲ୍ଲାର ବାଲିଆପାଳଠାରୁ ପ୍ରାୟ ୧୫ କି.ମି. ଦୂରରେ ଏହି ମନୋମୁଗ୍ଧକର ବେଳାଭୂମି ଅବସ୍ଥିତ । ପ୍ରାୟ ଲମ୍ବରେ ୧୦ କି.ମି. ବ୍ୟାପୀ ରହିଥିବା ଏହି ବେଳାଭୂମି, ବଙ୍ଗୋପ ସାଗରର ଅଶାନ୍ତ ଲହରୀ ସାଙ୍ଗକୁ ଧାଡି ଧାଡ଼ି ଝାଉଁବଣର ସାଇଁ ସାଇଁ ପବନ ପର୍ଯ୍ୟଟକ ଓ ଭାବୁକ ପ୍ରାଣକୁ ଆହ୍ଲାଦିତ କରେ । ସୂର୍ଯ୍ୟକିରଣର ପ୍ରତିଛବିରେ ତା'ର ଦେହର ଜଳରାଶି କେବେ ରକ୍ତପରି ଲାଲ୍ ଓ ଆଉ କେତେବେଳେ ସମ୍ପୂର୍ଣ୍ଣ ନୀଳ । ଧୀବରମାନଙ୍କର ମନ ଉଲ୍ଲାସ ଗୀତ ଓ ବିଭିନ୍ନ ରଙ୍ଗବେରଙ୍ଗ ପକ୍ଷୀମାନଙ୍କ କାକଳୀରେ ବାସ୍ତବିକ ସ୍ଥାନଟି ଅଭୁଲା ସ୍ମୃତି ହୋଇ ଦର୍ଶକ ମନରେ ରହିଯାଏ । ଏହି ବେଳାଭୂମିର ସୁବର୍ଣ୍ଣ ବାଲୁକା ଉପରେ ଲକ୍ଷଲକ୍ଷ ନୀଳ ଲୋହିତ କଙ୍କଡାର ସମାବେଶ ବାତାବରଣକୁ ଆହୁରି ଚମତ୍କାର କରିବା ସହିତ ପର୍ଯ୍ୟଟକମାନଙ୍କ ମନରେ ଅପୂର୍ବ ଆନନ୍ଦ ଭରିଦିଏ ।

୬) **ତାଳସାରୀ – ବେଳାଭୂମି :** ଏହା ବାଲେଶ୍ୱର ଜିଲ୍ଲା, ଭୋଗରାଇର ଚନ୍ଦନେଶ୍ୱର ମନ୍ଦିରଠାରୁ ତିନି କିଲୋମିଟର ଦୂରରେ ଅବସ୍ଥିତ । ଏହା ଏକ ପ୍ରମୁଖ ବଣଭୋଜି ସ୍ଥାନ । ପ୍ରାୟତଃ ପଶ୍ଚିମବଙ୍ଗ ସୀମାନ୍ତରେ ଅବସ୍ଥିତ ଥିବାରୁ ଏଠାର ଉଭୟ ରାଜ୍ୟର ବହୁ ପର୍ଯ୍ୟଟକମାନଙ୍କର ସମାଗମ ହୋଇଥାଏ । ସମୁଦ୍ର ଭିତରେ ବୋଟ୍ ଦ୍ୱାରା ବୁଲିବାର ମଜା ନିଆରା ଅଟେ । ଏଠାରେ ମଧ୍ୟ ନାଲି କଙ୍କଡାମାନ  ବେଳଭୂମିରେ ଦେଖାଯାଆନ୍ତି। ଏହି ବେଳାଭୂମିରେ ବିଭିନ୍ନ ପ୍ରକାର ସମୁଦ୍ର ମାଛ ଓ କଙ୍କଡ଼ାରେ ପ୍ରସ୍ତୁତ ଖାଦ୍ୟ ପର୍ଯ୍ୟଟକମାନଙ୍କୁ ଏକ ସ୍ୱତନ୍ତ୍ର ସ୍ୱାଦର ଅନୁଭୂତି ଦିଏ ।

୭) **ପଞ୍ଚଲିଙ୍ଗେଶ୍ୱର ମହାଦେବ :** ବାଲେଶ୍ୱର ସଦର ମହକୁମାରୁ ୩୦ କି.ମି. ଦୂରରେ ଥିବା ନୀଳଗିରି ଉପଖଣ୍ଡ ଦେବଗିରି ପର୍ବତମାଳାରେ ବାବା ପଞ୍ଚଲିଙ୍ଗେଶ୍ୱର ମହାଦେବଙ୍କର ବିଜେସ୍ଥଳୀ ଅଟେ । ସାରଳା ମହାଭାରତର ବନ ପର୍ବ କପିଳାବଧ ଉପାଖ୍ୟାନାରୁ ଜଣାପଡ଼େ ଯେ ଏକଦା ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ବନବାସ ସମୟରେ ପିତା ସ୍ୱର୍ଗତ ପଣ୍ଡୁଙ୍କର ଶ୍ରାଦ୍ଧ ପାଇଁ ଗଣ୍ଡାମାଂସର ଆବଶ୍ୟକତା ଭ୍ରମ ବଶତଃ ଏହି ଉପବନ ଚାରିଣୀ କପିଳା ଗାଈକୁ ବଧ କରିଥିଲେ । ସେହି ଗୋହତ୍ୟା ମହାପାପରୁ ମୁକ୍ତି ପାଇବା ପାଇଁ ଦେବ ନିର୍ଦ୍ଦେଶିତ ହୋଇ ଏହି ଗିରି ଶିଖରସ୍ଥିତ କନ୍ଦରାରେ ପଞ୍ଚ ପାଣ୍ଡବ, ପଞ୍ଚ ଲିଙ୍ଗେଶ୍ୱର ମହାଦେବଙ୍କୁ ସ୍ଥାପନ କରିଥିଲେ । ପୀଠସ୍ଥ ବିଶ୍ରାମାଗାର ସନ୍ନିକଟ ପଶ୍ଚିମ-ଉତ୍ତର ପାର୍ଶ୍ୱସ୍ଥ ପ୍ରସ୍ତର ଉପରେ ଗୋରୁ

ପାହୁଲର କେତୋଟି ସଂକେତ ଏବେ ବି ସର୍ବସାଧାରଣଙ୍କ ଦୃଷ୍ଟିଗୋଚର ହୁଏ ।

ପଞ୍ଚଲିଙ୍ଗେଶ୍ୱର ବିଜେସ୍ଥଳକୁ ଯିବାକୁ ହେଲେ ପାଦ ଦେଶରୁ ପାହାଡ଼ ଚଢିବାକୁ ହୁଏ । ପଥର ସନ୍ଧିରେ ନଇଁପଡ଼ି ପଞ୍ଚଲିଙ୍ଗଙ୍କ ଉପରେ ବୋହିଯାଉଥିବା ଝରଣା ଜଳ ମଧ୍ୟରେ ଅଣ୍ଡାଳି ଲିଙ୍ଗଙ୍କ ସତ୍ତା ଅନୁଭବ କରିହୁଏ । ସେହିଠାରେ ଭକ୍ତମାନେ ଭକ୍ତି ନୈବେଦ୍ୟ ବାଢ଼ି ପୂଜାର୍ଚ୍ଚନା କରନ୍ତି । ଅବଶ୍ୟ ଖରାଦିନେ ତାଙ୍କ ମୁଣ୍ଡ ଉପରୁ ବୋହିଆସୁଥିବା ଝରଣାର ଜଳଧାରା ଶୁଖିଲା ଥିଲାବେଳେ ଲିଙ୍ଗଗୁଡ଼ିକ ସ୍ପଷ୍ଟ ଦେଖିହୁଏ । ବଣଭୋଜି ପାଇଁ ପଞ୍ଚଲିଙ୍ଗେଶ୍ୱର ସନ୍ନିକଟ



ପାହାଡ଼ ଏକ ଉତ୍କୃଷ୍ଟ ସ୍ଥଳ ଅଟେ ଓ ଏହା ବହୁ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଥାଏ । ଏଠାରେ ରାତ୍ର ରହଣି ପାଇଁ ପାହାଡ଼ର ନିମ୍ନ ଭାଗରେ ହୋଟେଲ୍ ଓ ଲଜ୍‌ମାନଙ୍କର ସୁବିଧା ରହିଛି । ମୁଖ୍ୟ ପର୍ବପର୍ବାଣି ହିସାବରେ ମାଘ ସପ୍ତମୀ ମେଳା ଓ ଶିବରାତ୍ରି ଜାଗର ପର୍ବରେ ବହୁ ଭକ୍ତ ଭଜନ ଓ ନାମ ସଂକୀର୍ତ୍ତନ କରି ଶୈବ ପୀଠକୁ ଉତ୍ସବ ମୁଖରିତ କରିଥାଆନ୍ତି ।

୮) **କ୍ଷୀରଚୋରା ଗୋପୀନାଥ** : ବାଲେଶ୍ୱର ସହରଠାରୁ ପ୍ରାୟ ୧୦ କି.ମି. ଦୂରରେ ଓଡ଼ିଶାର ଅନ୍ୟତମ ପ୍ରାଚୀନ ପୁଣ୍ୟସ୍ଥଳୀ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିବା ରେମୁଣା କ୍ଷୀରଚୋରା ଗୋପୀନାଥଙ୍କ ପୀଠ, ଯାହାକି ଅତୀତରେ ଓଡ଼ିଶା ବୈଷ୍ଣବ ଧର୍ମର କେନ୍ଦ୍ରସ୍ଥଳ ଥିଲା । ବୈଷ୍ଣବମାନେ ଗୋପୀନାଥଙ୍କୁ ପୂଜା କରି ଜୀବନକୁ ଧନ୍ୟ ମନେ କରୁଥିଲେ । ସେ ବ୍ରଜଭୂମିରେ ସିନା ଗୋପାଙ୍ଗମାନଙ୍କ ଘରୁ କ୍ଷୀର ଲବଣୀ ଚୋରି କରି ଗୋପୀନାଥ ନିଜେ



ଖାଉଥିଲେ, କିନ୍ତୁ ଏଠାରେ ତାଙ୍କୁ ଅର୍ପିତ ଅମୃତ କେଳି କ୍ଷୀର ଭୋଗକୁ ଚୋରାଇ ନେଇ ପିନ୍ଧିଥିବା ପୀତବସନର କୁଞ୍ଚକାନି ତଳେ ଲୁଚାଇ ଜଣେ ପରମ ଭକ୍ତକୁ ପ୍ରଦାନ କରିଥିବାରୁ ତାଙ୍କର ନାମ କ୍ଷୀରଚୋରା ଗୋପୀନାଥ ହୋଇଥିଲା ।

ତ୍ରେତୟା ଯୁଗରେ ରାମ, ଲକ୍ଷ୍ମଣ, ସୀତାଙ୍କର ବନବାସ ସମୟରେ ଏକ ଭକ୍ତି ଭାବାବେଗ ମୁହୂର୍ତ୍ତରେ ପତ୍ନୀ ଜାନକୀ – ରାମଚନ୍ଦ୍ରଙ୍କୁ ପଚାରିଲେ, ତୁମେ ଆଗାମୀ ଯୁଗରେ ଯେଉଁ ରୂପରେ ଅବତାର ଗ୍ରହଣ କରିବ – ସେହି ରୂପ ମୋତେ ଦେଖାଇଲେ ମୁଁ ଖୁସି ହେବି । ଜାନକୀଙ୍କ ଅନୁରୋଧକ୍ରମେ ପ୍ରଭୁ ରାମଚନ୍ଦ୍ର ହାତରେ ଧରିଥିବା ଧନୁତୀର ମୁନରେ ଏକ କଳା ମୁଗୁନି ପ୍ରସ୍ତର ଉପରେ ଦ୍ୱାପର ଯୁଗର କୃଷ୍ଣଙ୍କର ଏକ ମୂର୍ତ୍ତି ନିର୍ମାଣ କରିଥିଲେ । ମାତା ଜାନକୀ ସେ ପଥର ବିଗ୍ରହରେ ଜୀବନଶକ୍ତି ସଂଚାର କରି ପୂଜାର୍ଚ୍ଚନା କରୁଥିଲେ ଯିଏକି ପରବର୍ତ୍ତୀ ଯୁଗରେ ଗୋପୀନାଥ ନାମରେ ପୂଜିତ ହେଲେ ।

କ୍ଷୀରଚୋରା ଗୋପୀନାଥ ମନ୍ଦିରଟି ଅତ୍ୟନ୍ତ କାରୁକାର୍ଯ୍ୟପୂର୍ଣ୍ଣ । ବେଢ଼ାର ଚାରି ଦିଗରେ ଚାରୋଟି ଦ୍ୱାର ଅଛି ଓ ନବଗ୍ରହଙ୍କର ପ୍ରସ୍ତର ମୂର୍ତ୍ତି ମଧ୍ୟ ପୂଜା ପାଉଛନ୍ତି । ମୁଖ୍ୟ ପ୍ରବେଶ ପଥରେ ଯାଇ ବାମ ପାର୍ଶ୍ୱରେ ଥିବା ମନ୍ଦିରର ୬ଟି ପାହାଚ ଅତିକ୍ରମ କଲେ ଗୋପୀନାଥଙ୍କୁ ଦର୍ଶନ କରିହୁଏ । ସେହି ଛଅଟି ପାହାଚ ମଣିଷର ଲୋଭ, ମୋହ,

କାମ, କ୍ରୋଧ, ମଦ ଓ ମାତ୍ସର୍ଯ୍ୟ ଷଡ଼ରିପୁର ସୂଚନା ଦିଏ । ଭକ୍ତ ପାହାଚ ଚଢ଼ା ପୂର୍ବକ ସେଗୁଡ଼ିକ ଦମନ କରିବା ପରେ ଠାକୁରଙ୍କୁ ଦର୍ଶନ କରନ୍ତି । ତାଙ୍କର କି ମନୋଲୋଭା ମୂର୍ତ୍ତି, ହସ୍ତରେ ମୋହନ ବଂଶୀ, ବାମପାର୍ଶ୍ୱରେ ଶ୍ରୀଗୋପଳ ଜୀଉ ଓ ଦକ୍ଷିଣ ପାର୍ଶ୍ୱରେ ଶ୍ରୀ ମଦନମୋହନ ଜୀଉ ଦଣ୍ଡାୟମାନ । ଏହି ପୀଠରେ ଯେଉଁ କ୍ଷୀରା ପ୍ରସାଦ ଭାବରେ ଅର୍ପଣ କରାଯାଏ, ତାହା ଅନ୍ୟତ୍ର କେଉଁଠି ଦେଖିବାକୁ ମିଳେନାହିଁ । ଶ୍ରୀମନ୍ଦିର ଭଳି ଏଠାରେ ପ୍ରଭୁଙ୍କର ବାରମାସରେ ତେର ପର୍ବ ପାଳନ ସହିତ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ମନୋମୁଗ୍ଧକର କୀର୍ତ୍ତନ ଆସର ଅନୁଷ୍ଠିତ ହୁଏ, ଯାହାକି ଏକ ଅନନ୍ୟ ପରମ୍ପରା ଅଟେ । ଏହି ମନ୍ଦିରର କାରୁକାର୍ଯ୍ୟ, କ୍ଷୀରା ପ୍ରସାଦ ଏବଂ ଅପୂର୍ବ ସୌନ୍ଦର୍ଯ୍ୟରେ ଭରା ମନୋହର ବିଗ୍ରହ ପର୍ଯ୍ୟଟକମାନଙ୍କ ମନପ୍ରାଣରେ ଭକ୍ତି ଭରିଦିଏ ।

୯) **ଚନ୍ଦନେଶ୍ୱର ମହାଦେବ :** ବାଲେଶ୍ୱର ସଦର ମହକୁମାଠାରୁ ୯୦ କି.ମି. ଦୂର ଭୋଗରାଇ ବ୍ଲକ ହୁଗୁଳି ଗ୍ରାମରେ ବାବା ଚନ୍ଦନେଶ୍ୱରଙ୍କର ମନ୍ଦିର, ବଙ୍ଗୋପସାଗର କୂଳ ତଥା ପଶ୍ଚିମବଙ୍ଗର ମେଦିନାପୁର ଜିଲ୍ଲା ଦୀଘାର ଅତି ନିକଟତମ ଅଟେ । ପୂର୍ବେ ଏହି ସ୍ଥାନରେ ଚନ୍ଦନଝର ସହ ଏକ ହୁଗୁଳା ବଣ ଥିଲା । ପ୍ରତିଦିନ ହୁଗୁଳା ବଣକୁ ଗାଈଟିଏ ଯାଉଥିଲା ଓ କ୍ଷୀରଶୂନ୍ୟ ହୋଇ ଫେରିଆସୁଥିଲା । ଏଥିପାଇଁ ଜଗୁଆଳୀ ଲକ୍ଷ୍ମୀ ପ୍ରତିଦିନ ଛାଟ ମାଡ ଓ ଗଞ୍ଜଣା ଶୁଣୁଥିଲା । ଦିନେ ସେ ଗାଈକୁ ଅନୁସରଣ କଲା । ହଠାତ୍ ଗାଈଟି ଜଙ୍ଗଲର ମଧ୍ୟଭାଗରେ ଛିଡା ହୋଇଗଲା । ଗାଈର ଚିରରୁ ଛାଏଁ ଛାଏଁ କ୍ଷୀର ଅନର୍ଗଳ ଝରିଚାଲିଲା ଓ ସ୍ଥାନଟି ଚନ୍ଦନ ବାସ୍ନାରେ ମହକି ଉଠୁଥିଲା । ଏହି ଅଲୌକିକ ଘଟଣା ପ୍ରଚାରିତ ହେବା ପରେ ହୁଗୁଳା ବଣକୁ ସଫା କରି ମନ୍ଦିର ନିର୍ମାଣ କରାଯାଇ ବାବାଙ୍କୁ ଚନ୍ଦନେଶ୍ୱର ନାମରେ ନାମିତ କରାଗଲା । ମହାଦେବଙ୍କ ପୀଠରେ ଯେଉଁ ଲିଙ୍ଗର ପରିକଳ୍ପନା ସଚରାଚର ଦେଖାଯାଏ, ଏଠାରେ ସେଭଳି କିଛି ନାହିଁ, କେବଳ ଫାଟଟିଏ । ଫାଟ ମଧ୍ୟରେ ଏକ ଗହ୍ୱର । ଗଭୀରତାକୁ ଏଯାବତ୍ କଳନା କରାଯାଇପାରିନି । ଭକ୍ତମାନେ ସେହି ସ୍ଥାନରେ ଭକ୍ତିପୂର୍ଣ୍ଣ ଅର୍ଘ୍ୟ ଡୋଳି ଦେଇଥାଆନ୍ତି ।

ଚୈତ୍ରର ମଧୁଚୈତାଳୀ ଗଛ ପତ୍ରର ମର୍ମର ଭିତରେ ମଣିଷ ମନକୁ ଯେତେବେଳେ ଉତ୍‌ଫୁଲ୍ଲିତ କରେ, ଠିକ୍ ଚୈତ୍ରର ୧୭ ଦିନଠାରୁ ମାସ ଶେଷ ପର୍ଯ୍ୟନ୍ତ ଏକ ଚଡ଼କ ମେଳା ଅନୁଷ୍ଠିତ ହୁଏ । ସଂକ୍ରାନ୍ତିର ଦୁଇଦିନ ପୂର୍ବରୁ ପାଳନ ହୁଏ 'ନୀଳଦିନ' । ମନ୍ଦିର ନିକଟସ୍ଥ ନୀଳ ପୋଖରୀରେ ହଜାର ହଜାର ଭକ୍ତ ବୁଡ ପକାନ୍ତି । ପୋଖରୀର ଜଳାସ୍ତରଣ ସେତେ ଗଭୀର ନଥାଏ । ଅଚାନକ ପବିତ୍ର ଦାରୁଖଣ୍ଡ 'ଥମ୍ଭୀ କାଠ' ରୂପେ ପୋଖରୀରେ ଭାସି ଉଠେ । ପବିତ୍ର ଦାରୁ ଦେବତାକୁ ଭକ୍ତମାନେ ମନ୍ଦିର ବେଢାକୁ ଆଣି ତହିଁରେ ଫୁଲମାଳ, ଚନ୍ଦନ, ସିନ୍ଦୂର ଦେଇ ପୂଜାର୍ଚ୍ଚନା କରନ୍ତି । ଏହାହିଁ ପ୍ରଭୁଙ୍କ ଭକ୍ତର ମନକାମନା ପୂର୍ଣ୍ଣପାଇଁ ଏକ ଅଭୟ କରୁଣାର ଅଲୌକିକ ଲୀଳା । ଅନୁସନ୍ଧାନରୁ ଜଣାଯାଏ, ଚନ୍ଦନେଶ୍ୱରଙ୍କ ଆଜ୍ଞାମାଳ ନେଇ ରାଇବଣିଆ ବନ୍ୟାଞ୍ଚଳରୁ ଆସୁଥିବା ୨୦ ଫୁଟ୍ ଲମ୍ବ ଓ ୩ଫୁଟ୍ ଗୋଲେଇ ବେଲକାଠ ୧୦୦ ବର୍ଷରେ ଥରେ ପରିବର୍ତ୍ତନ କରାଯାଇ ନୂତନ 'ଥମ୍ଭୀ କାଠ' ରୂପେ ନୀଳ ପୋଖରୀରେ ସ୍ଥାପନ କରାଯାଏ । ବହୁ ଦୁରାରୋଗ୍ୟ ରୋଗୀ, ଅପୁତ୍ରିକ ନାରୀ, ନିଃସହାୟ ଓ ବ୍ୟକ୍ତିମାନେ ପ୍ରଭୁଙ୍କ ବେଢାରେ ଅଧିଆ ପଡ଼ି ନିଜର ମାନସିକ ପୂରଣ ପାଇଁ ସ୍ୱପ୍ନାଦେଶକୁ ମଧ୍ୟ ଅପେକ୍ଷା କରିଥାଆନ୍ତି । ଏ ମେଳାରେ ଏକ ବିରଳ ତାଣ୍ଡବ ନୃତ୍ୟ ଅନୁଷ୍ଠିତ ହୁଏ । ଏହା ଏକ ବିଚିତ୍ର କଥା ଯେ, ଚନ୍ଦନେଶ୍ୱରଙ୍କୁ ଲାଲ୍ ଚନ୍ଦନରେ ଭୂଷିତ କରାଯାଏ ଓ ଅନ୍ନଭୋଗ କରା ନ ଯାଇ କେବଳ ଚିନି ମିଠାଇ, ଫେଣି, କ୍ଷୀର, ନବାତ, ଲହୁଣୀ ଓ ପଇଡ଼ ଭୋଗ ଲାଗେ । ଦୈନିକ ପ୍ରାୟ ହଜାର ହଜାର କଳସ ଜଳ ଲାଗିହୁଏ । ସେହି ଜଳ ଗହ୍ୱର ମଧ୍ୟରୁ କେଉଁଆଡ଼େ ଯାଏ, କେହି କହିପାରିବେ ନାହିଁ । ଏହା ଏପରି ଏକ ସ୍ଥାନ ଯେଉଁଠାରେ କି ବର୍ଷସାରା ବହୁ ପର୍ଯ୍ୟଟକମାନେ ବାବାଙ୍କର ଦର୍ଶନ କରି କୃପାଲାଭ କରିବା ସହିତ ନିକଟସ୍ଥ ବେଳାଭୂମିରେ ପ୍ରକୃତିର ଶୋଭା ଉପଭୋଗ କରିଥାଆନ୍ତି ।

୧୦) **ଭୁଷଣ୍ଡେଶ୍ୱର ଶୈବ ପୀଠ :** ବାଲେଶ୍ୱରଠାରୁ ୯୫ କି.ମି. ଦୂର ଭୋଗରାଇ ବ୍ଲକ କୁମ୍ଭୀରଗଡି ଗାଁରେ ବିଶ୍ୱର ସର୍ବବୃହତ୍ ଶିବଲିଙ୍ଗ ପୂଜା ପାଉଛନ୍ତି । କଳା ମୁଗୁନି ପଥରରେ ଗଢା ଶିବଲିଙ୍ଗ, ଯାହାଙ୍କର ଉଚ୍ଚତା ୧୨ ଫୁଟ୍ ଓ ଗୋଲେଇ ହାରାହାରି ୧୭ ଫୁଟ୍ ଓ ଓଜନ ୧୬୮୦ କ୍ୱିଣ୍ଟାଲ୍ । ଏହିଠାରୁ ୨୦ କି.ମି. ଦୂରରେ ଅବସ୍ଥିତ ଦୀଘା ସମୁଦ୍ରକୂଳର ଶୋଭା ଅତି ମନୋହର ଅଟେ । ଏହି ସର୍ବବୃହତ୍ ଶିବଲିଙ୍ଗଙ୍କୁ ଦର୍ଶନ କରିବା ପାଇଁ ଓଡ଼ିଶା ବ୍ୟତୀତ ଅନ୍ୟ ପଡ଼ୋଶୀ ରାଜ୍ୟର ବହୁ ପର୍ଯ୍ୟଟକମାନଙ୍କ ସମାଗମ ହୋଇଥାଏ ।

୧୧) **ଜଗନ୍ନାଥ ମନ୍ଦିର – ନୀଳଗିରି :** ବାଲେଶ୍ୱର ଜିଲ୍ଲାର ସବ୍‌ଡିଭିଜନ୍ ନୀଳଗିରିରେ ଏକ ପ୍ରାଚୀନ ଜଗନ୍ନାଥ ମନ୍ଦିର ଅଛି । ଏହି ମନ୍ଦିର ରାଜା ହରିଚନ୍ଦନଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ପୁରୀ ଶ୍ରୀମନ୍ଦିର ଭଳି ଏଠାରେ ବାର ମାସରେ ୧୩ ପର୍ବ ପାଳନ କରାଯାଏ ଓ ମଧ୍ୟାହ୍ନ ଧୂପରେ ଅବଢା ଅନ୍ନ ଲାଗି ହୁଏ, ଯାହାକି ଅତ୍ୟନ୍ତ ସ୍ୱାଦଯୁକ୍ତ । ଏହି ସ୍ଥାନଟି ଓଡ଼ିଶାର ତୃତୀୟ ଶ୍ରୀକ୍ଷେତ୍ର ରୂପେ ସର୍ବବିଦିତ । ଖରାଦିନେ ମନ୍ଦିରର ବେଢା ଭିତରେ ଶୀତଦିନ ଭଳି ଥଣ୍ଡା ଅନୁଭବ କରିବା ପର୍ଯ୍ୟଟକମାନଙ୍କ ପାଇଁ ଏଠାରେ ଏକ ନିଆରା ଅନୁଭୂତି ଆଣିଥାଏ ।

୧୨) **ଜଗନ୍ନାଥ ମନ୍ଦିର – ବାଳଗୋପାଳପୁର :** ବାଲେଶ୍ୱରରୁ ୧୩ କି.ମି. ଦୂର ବାଳଗୋପାଳପୁରଠାରେ ଇମାମୀ ପେପର ମିଲ୍ ଦ୍ୱାରା ନିର୍ମିତ ଜଗନ୍ନାଥ ମନ୍ଦିର ଆଧୁନିକ ପ୍ରସ୍ତର ଶିଳ୍ପର ପରିଚୟ ଦିଏ । ମନ୍ଦିରଟି ସମ୍ପୂର୍ଣ୍ଣ ଭାବରେ ପଥରରେ ନିର୍ମିତ ହେବା ସହିତ ସମ୍ମୁଖରେ ଚାରୋଟି ଘୋଡା ଓ ଷୋହଳଟି ଚକ ବିଶିଷ୍ଟ ହୋଇଥିବାରୁ ଏକ ରଥ ସଦୃଶ୍ୟ ଦୃଶ୍ୟମାନ ହୁଏ । ଇମାମୀ ପେପର ମିଲ୍‌ର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ଏହି ମନ୍ଦିର ଖ୍ୟାତନାମା ପଥର ଶିଳ୍ପୀ ସ୍ୱର୍ଗତ ରଘୁନାଥ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ନିର୍ମିତ ହୋଇଥିଲା । ଏଠାରେ ପ୍ରସାଦ ଓ ଟଙ୍କତୋରାଣି ମିଳେ । ବେଢା ଭିତରେ ବିମଳା, ଲକ୍ଷ୍ମୀ ଓ ମହାଦେବଙ୍କ ମନ୍ଦିର ମଧ୍ୟ ରହିଛି । ପ୍ରସ୍ତର କାରୁକାର୍ଯ୍ୟପୂର୍ଣ୍ଣ କୋଣାର୍କ ମନ୍ଦିର ଶୈଳୀରେ ନିର୍ମିତ ଏହି ମନ୍ଦିରକୁ ଦେଖିବାକୁ ବହୁ ପର୍ଯ୍ୟଟକମାନଙ୍କର ବର୍ଷସାରା ପ୍ରବଳ ଭିଡ଼ ହୁଏ ।

ବାଲେଶ୍ୱର ମାଟିରେ ଜନ୍ମିତ ବ୍ୟାସକବି ଫକୀର ମୋହନ ସେନାପତି ଏକାଧାରରେ ଜଣେ ଲେଖକ, କବି, ଦାର୍ଶନିକ, ଔପନ୍ୟାସିକ ଓ ସାମାଜିକ ସଂସ୍କାରକ ଥିଲେ । ତାଙ୍କଦ୍ୱାରା ଲିଖିତ କ୍ଷୁଦ୍ରଗଳ୍ପ 'ରେବତୀ' ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କର ଜନ୍ମସ୍ଥାନରେ ନିର୍ମିତ ଫକୀର ମୋହନ ବିଶ୍ୱବିଦ୍ୟାଳୟ ସାରା ରାଜ୍ୟରେ ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ ରୂପେ ପରିଚିତ । ସେହିପରି ବାଲେଶ୍ୱର ଜିଲ୍ଲା ସୋରର କେଦାରପୁରଠାରେ ଜନ୍ମିତ କବିବର ରାଧାନାଥ ରାୟ ଓଡ଼ିଆ ସାହିତ୍ୟର ସ୍ରଷ୍ଟା ଭାବେ ପରିଚିତ । 'ଚିଲିକା' କାବ୍ୟରେ ପ୍ରକୃତିର ଅପୂର୍ବ ଶୋଭାକୁ ଅତି ଜୀବନ୍ତ ଭାବରେ ବର୍ଣ୍ଣନା କରିବା ଓ କାବ୍ୟର ନାୟିକାର ଅପୂର୍ବ ରୂପସମ୍ଭାର ବର୍ଣ୍ଣନା କରି ସେ ପ୍ରତ୍ୟେକଟି ମନୁଷ୍ୟ ହୃଦୟରେ ସ୍ମରଣୀୟ ହୋଇ ରହିଛନ୍ତି । ଇଂରେଜ କବଳରୁ ଦେଶ ମାତୃକାକୁ ସ୍ୱାଧୀନ କରିବାର ମନ୍ତ୍ର ଓଡ଼ିଆ ମନରେ ପ୍ରଥମ କରି ଭରିଦେଇଥିବା ବୀର ପୁରୁଷ 'ବାଘାଯତୀନ' ଗୋରା ସାହେବଙ୍କ ବିରୁଦ୍ଧରେ ଯୁଦ୍ଧ କରି ମୃତ୍ୟୁବରଣ କରିଥିଲେ । ଓଡ଼ିଶାର ପର୍ଯ୍ୟଟନ କ୍ଷେତ୍ରରେ ବାଲେଶ୍ୱର ଜିଲ୍ଲା ଏକ ଅନନ୍ୟ ସ୍ଥାନ ଅଧିକାର କରିଛି, କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ଲଟ୍ ନଂ– ୧୨୯୧, ଦ୍ୱିତୀୟ ପର୍ଯ୍ୟାୟ
ଡୁମୁଡୁମା ହାଉସିଂବୋର୍ଡ କଲୋନୀ, ଡୁମୁଡୁମା
ଭୁବନେଶ୍ୱର– ୭୫୧୦୧୯



# ସ୍ୱାଧୀନତା ସଂଗ୍ରାମକୁ ଗୋବିନ୍ଦପୁରର ଅବଦାନ

**କାର୍ତ୍ତିକ ଚନ୍ଦ୍ର ଷଡ଼ଙ୍ଗୀ**

ମରଣ ସହିତ ମିତ୍ରତା ସ୍ଥାପନ କରି କଷଣକୁ ଜୀବନସାଥୀ ବରି ଛାତିକୁ ଶତ୍ରୁର ବନ୍ଧୁକର ଗୁଳି ଆଗରେ ପାତି ଦେଉଥିଲେ ଏ ଦେଶର ଅଗଣିତ ନିର୍ଭୀକମନା ଓ ରାଷ୍ଟ୍ରମନସ୍କ ନାଗରିକ । ସେମାନଙ୍କୁ ଦମନ କରିବା ପାଇଁ ଦୁର୍ଦ୍ଧର୍ଷ ବିଦେଶୀ ଶାସକ ନାନା ଷଡଯନ୍ତ୍ର କରୁଥିଲେ ହେଁ ମାତୃଭୂମି ପ୍ରତି ପ୍ରଗାଢ ତ୍ୟାଗକୁ ସଂଗ୍ରାମୀମାନଙ୍କର ଅନ୍ତର ଭିତରେ ସାଲ୍ୟୁଟ୍ କରୁଥିଲା । ଅନେକ ଜନନାୟକ, ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରାଣ କଷଣ ଭିତରେ ସଂଗ୍ରାମ ସାହାରାରୁ ଉତ୍ତୀର୍ଣ୍ଣ ହୋଇ ପାଲଟି ଯାଇଛନ୍ତି ସ୍ୱାଧୀନୋତ୍ତର ଭାରତବର୍ଷର ମହାର୍ଘ ବ୍ୟକ୍ତିତ୍ୱ ।

କଟକ ଜିଲ୍ଲା କଣ୍ଟାପଡା ବ୍ଲକ୍‌ର ଗୋବିନ୍ଦପୁର ଥାନା ଅନ୍ତର୍ଗତ କେତେଗୋଟି ଗ୍ରାମରେ ଯେଉଁ କେତେଜଣ ସ୍ୱାଧୀନତା ସଂଗ୍ରାମୀ ସେହି ଅଞ୍ଚଳର ଆଲୋକବର୍ତ୍ତିକା ଭଳି ଥିଲେ ସେମାନଙ୍କ ମଧ୍ୟରେ ବର୍ତ୍ତମାନ ପ୍ରାୟ ସମସ୍ତେ ଦିବଂଗତ । ଯେଉଁ କେତେଜଣ ପୁରପଲ୍ଲୀରେ ଅଛନ୍ତି ସେମାନେ ଜନମାନସରେ ସେଭଳି ପ୍ରତିଭାତ ହୋଇପାରି ନାହାନ୍ତି । ସେମାନଙ୍କର ସଂଗ୍ରାମୀ ଜୀବନ କିଭଳି ଉତ୍ସର୍ଗୀକୃତ ଥିଲା ସେ ସଂପର୍କରେ ଏକ ସଂକ୍ଷିପ୍ତ ପରିଚିତ ଦେବା ଉଦ୍ଦେଶ୍ୟରେ ଆଲେଖ୍ୟଟିର ଅବତାରଣା । କଣ୍ଟାପଡା ବ୍ଲକ୍‌ର କତିପୟ ସ୍ୱାଧୀନତା ସଂଗ୍ରାମୀଙ୍କ ସଂପର୍କରେ କିଛିଟା ଝଲକ ଉତ୍ତରପିଢ଼ିଙ୍କ ଭିତରେ ସେବା ଓ ତ୍ୟାଗର ବଳୟ ସୃଷ୍ଟି କରିବା ଏବଂ ସେଭଳି ବ୍ୟକ୍ତିତ୍ୱଙ୍କୁ ମନେରଖିବାରେ ଏହା ସହାୟକ ହେବ ।

**ମୁରଲୀଧର କାନୁନ୍‌ଗୋ :** କଣ୍ଟାପଡା ବ୍ଲକ୍ ଅନ୍ତର୍ଗତ ଉତ୍ତାରଣ ପଞ୍ଚାୟତ ଅଧୀନସ୍ଥ ଛିଣ୍ଡାକୂଳ ବାବଜା ଗ୍ରାମରେ ତାଙ୍କର ଜନ୍ମ । ଅବିଭକ୍ତ କଟକ ଜିଲ୍ଲା ଏବଂ ଏବର ଜଗତସିଂହପୁରର ବାଲିକୁଦା ମଧ୍ୟଇଂରାଜୀ ବିଦ୍ୟାଳୟରେ ଷଷ୍ଠ ଶ୍ରେଣୀର ଛାତ୍ର ଥିବା ବେଳେ ମୁରଲୀଧର ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ଇଂରେଜମାନଙ୍କର ଅଦମନୀୟ ଲୀଳାକୁ ବିରୁଦ୍ଧାଚରଣ କରିବାରୁ ବାଲିକୁଦା ଥାନାର ଭାରପ୍ରାପ୍ତ ଅଧିକାରୀ ତାଙ୍କୁ ଗିରଫ କଲେ । ସେଇ ଦୋଷରେ ମୁରଲୀଧର ବିଦ୍ୟାଳୟରୁ ବିତାଡିତ ହେଲେ ।

୧୯୨୧ ମାର୍ଚ୍ଚ ୨୩ ତାରିଖରେ ଗାନ୍ଧିଜୀ କଟକର କାଠଯୋଡି ନଦୀ ବାଲିରେ ବିରାଟ ସାଧାରଣ ସଭାରେ ଭାଷଣ ଦେଉଥିଲେ । ତାଙ୍କ ଭାଷଣକୁ ମୁରଲୀଧରଙ୍କ ଦାଦା ନୃସିଂହ ଚରଣ କାନୁନ୍‌ଗୋ (ଖ୍ୟାତନାମା ହାଇସ୍କୁଲ ପ୍ରଧାନଶିକ୍ଷକ) ଓଡିଆରେ ଅନୁବାଦ କରୁଥିଲେ । ସେଇଦିନଠାରୁ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ନିଜ ପିଉସା ଘର ଗାଁ ସୁନ୍ଦରଗ୍ରାମରେ ରହି ଆନ୍ଦୋଳନରେ ଯୋଗଦେଲେ ।

୧୯୩୭ ମସିହାରେ ନବକୃଷ୍ଣ ଚୌଧୁରୀଙ୍କ ଆହ୍ୱାନରେ କୃଷକ ଆନ୍ଦୋଳନ, ଜମିଦାରୀ ଉଚ୍ଛେଦ ଆନ୍ଦୋଳନରେ ସେ ଯୋଗ ଦେଲେ । ପ୍ରାକ୍ ସ୍ୱାଧୀନତା ସମୟରେ ସଂଗ୍ରାମୀମାନଙ୍କର ବିଭିନ୍ନ ସ୍ଥାନରେ ଗୁପ୍ତ ବୈଠକମାନ ଅନୁଷ୍ଠିତ ହେଉଥିଲା । ତତ୍କାଳୀନ ଗ୍ରାମୀଣ କେନ୍ଦ୍ରମାନଙ୍କର ପରିଚାଳନା ଦାୟିତ୍ୱରେ ରହୁଥିଲେ

ଆଗଧାଡିର ସଂଗ୍ରାମୀମାନେ । ଅଡଶପୁର ନିକଟସ୍ଥ ତଣ୍ଡିକଣାଠାରେ ଏକ ଗୁପ୍ତକେନ୍ଦ୍ର ଖୋଲାଯାଇଥିଲା । ତା'ର ପରିଚାଳନା ଦାୟିତ୍ୱରେ ଥିଲେ ଧୋୟା ଅଞ୍ଚଳର ଗାନ୍ଧୀ ଭାବେ ପରିଚିତ ନୀଳମଣି ପ୍ରଧାନ (ବାହାରଣା ଗ୍ରାମ) ଓ ମୁରଲୀଧର କାନୁନ୍‌ଗୋ । ସୁନ୍ଦରଗ୍ରାମର ଗୋବିନ୍ଦ ମହାନ୍ତି, ବ୍ରାହ୍ମଣ ସାଇଲୋର ବିଭୂତି ଭୂଷଣ ଆଚାର୍ଯ୍ୟ,ଶ୍ୟାମାନନ୍ଦ ମହାପାତ୍ର (ଝାରପଡା) ପ୍ରମୁଖଙ୍କ ମେଳରେ ଯାଇ ନିଆଳୀ ଡାକବଙ୍ଗଳା ପୋଡିରେ ସଂପୃକ୍ତ ଥିଲେ । ସେଥିପାଇଁ ମୁରଲୀ ବାବୁଙ୍କୁ ଜେଲ୍ ଯିବାକୁ ପଡିଥିଲା ।

୧୯୬୭ରେ ଜନକଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ ସେ ଗୋବିନ୍ଦପୁରର ବିଧାୟକ ହୋଇଥିଲେ । ଛିଣ୍ଡାନଈର ମୁହାଣ ବନ୍ଦ କରି ୭୨ ମୌଜାର ଅଧିବାସୀଙ୍କ ଚାଷ ପାଇଁ ଜଳସେଚନର ସୁବିଧା କରାଇବା ତାଙ୍କ ବିଧାନସଭା ସଦସ୍ୟ କାଳରେ ଏକ ଉଲ୍ଲେଖନୀୟ ଘଟଣା । ୧୯୯୦ ମସିହା ନଭେମ୍ବର ୨୧ ତାରିଖରେ ସ୍ୱାଧୀନତା ସଂଗ୍ରାମୀ ମୁରଲୀଧରଙ୍କ ତିରୋଧାନ ହୋଇଥିଲା ।

**ନୀଳମଣି ପ୍ରଧାନ :** ଗୋବିନ୍ଦପୁର ଥାନା ଓ ନିର୍ବାଚନ ମଣ୍ଡଳୀ (ଏବର ନିଆଳୀ) ଅନ୍ତର୍ଗତ ବାହାରଣା ଗ୍ରାମରେ ୧୮୯୯ ମସିହା ନଭେମ୍ବର ୨୧ ତାରିଖରେ ପିତା ଗୋପାଳ ପ୍ରଧାନ ଓ ମାତା ପଦ୍ମାବତୀ ଦେବୀଙ୍କ କୋଳମଣ୍ଡନ କରିଥିଲେ ସଂଗ୍ରାମୀ ନୀଳମଣି ପ୍ରଧାନ । ୧୯୨୦ ମସିହାରେ ନାଗପୁରଠାରେ କଂଗ୍ରେସର ସାଧାରଣ ଅଧିବେଶନରେ ଅସହଯୋଗ ଆନ୍ଦୋଳନର ପ୍ରସ୍ତାବ ଗ୍ରହଣ କରାଗଲା । ଗାନ୍ଧିଜୀଙ୍କ ଆହ୍ୱାନରେ ସ୍କୁଲ, କଲେଜ ବର୍ଜନ ଡାକରା ଥିବାରୁ ନୀଳମଣି ସତ୍ୟବାଦୀ ବନବିଦ୍ୟାଳୟରୁ ପାଠପଢ଼ା ଛାଡ଼ି 'ଅସହଯୋଗ ଆନ୍ଦୋଳନ'ରେ ଯୋଗ ଦେଲେ । ଆହୁରି 'ଲବଣ ସତ୍ୟାଗ୍ରହ' ବେଳେ ସ୍ୱେଚ୍ଛାସେବୀମାନଙ୍କୁ ସଙ୍ଗଠିତ କରିବାରେ ନୀଳମଣି ବାବୁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପୋଲିସ୍ ତାଙ୍କଠାରୁ ଚିଠିପତ୍ରମାନ ଜବତ କରି ୧୦ ମାସ କାରାଦଣ୍ଡ ଓ ୨ ଶହ ଟଙ୍କା ଜରିମାନା କରିଥିଲେ । ପ୍ରଥମେ ତାଙ୍କୁ କଟକ ଜେଲ୍ ଓ ପରେ ପାଟନା ଜେଲ୍‌କୁ ସ୍ଥାନାନ୍ତରିତ କରାଗଲା । ଜେଲ୍‌ରେ ଥିବାବେଳେ ପୋଲିସ୍ ତାଙ୍କ ଘରେ ପଶି ଗୋରୁଗାଈ ବଳଦଙ୍କୁ ନିଲାମ କରି ଜରିମାନା ବାବଦକୁ ଟଙ୍କା ନେଇଗଲେ । ଧୋୟା ଅଞ୍ଚଳର ଜନହିତକର କାର୍ଯ୍ୟ କରି ସେ ଧୋୟା ଅଞ୍ଚଳର 'ଗାନ୍ଧୀ' ଭାବେ ବେଶ୍ ପରିଚିତ ଥିଲେ । ୧୯୫୨ ଏବଂ ୧୯୫୮ ମସିହାର ତତ୍‌କାଳୀନ ଜଗତ୍‌ସିଂହପୁର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ସେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୮ ମସିହା ଡିସେମ୍ବର ମାସ ୮ ତାରିଖରେ ତାଙ୍କର ଦେହାନ୍ତ ହୋଇଥିଲା ।

**ହାରାମଣି କାନୁନ୍‌ଗୋ :** ଖୋର୍ଦ୍ଧା ଜିଲ୍ଲାର ବାଲିପାଟଣା ବ୍ଲକ୍ ଅନ୍ତର୍ଗତ ଅଠାନ୍ତର ଗ୍ରାମରେ ପିତା ଜୟକୃଷ୍ଣ ମହାନ୍ତି ଓ ମାତା ସାଧବାଣୀ ମହାନ୍ତିଙ୍କ କୋଳରେ ୧୯୨୧ ମସିହାରେ ଜନ୍ମଗ୍ରହଣ କରନ୍ତି ହାରାମଣି ଦେବୀ । ୧୯୩୯ ମସିହା ଫେବୃଆରୀ ୫ ତାରିଖରେ ସ୍ୱାଧୀନତା ସଂଗ୍ରାମୀ ମୁରଲୀଧର କାନୁନ୍‌ଗୋଙ୍କ ସହିତ ବିବାହ ବନ୍ଧନରେ ବାନ୍ଧି ହୁଅନ୍ତି ହାରାମଣି । ସ୍ୱାମୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରନ୍ତି । ଆଭୂଷଣବିହୀନା ହାରାମଣି କେବଳ ଶଙ୍ଖା, ସିନ୍ଦୂର ଓ ଓସାରିଆ ଧଡ଼ିଥିବା ଧଳା କପ୍ତା ଶାଢ଼ି ଖଣ୍ଡିଏ ପିନ୍ଧି ଦେଶସେବା ପାଇଁ ଆଗେଇ ଆସିଥିଲେ । ପ୍ରାକ୍ ସ୍ୱାଧୀନତା କାଳରେ ଦେଶର ପାଣ୍ଠି ପାଇଁ ଗାଁ ଗାଁ ଚାଲିଚାଲି ମୁଷ୍ଟିଭିକ୍ଷା କରୁଥିଲେ । ୧୯୪୨ ମସିହା 'ଭାରତଛାଡ ଆନ୍ଦୋଳନ'ରେ ଯୋଗଦାନ କରି କାରବରଣ କଲେ । ଜେଲ୍‌ରେ ଥିବାବେଳେ ମାଳତୀ ଦେବୀ ଓ ରମାଦେବୀଙ୍କ ସହ ଘନିଷ୍ଠତା ବଢିଗଲା । ଜେଲ୍‌ରୁ ଫେରି ସାକ୍ଷୀଗୋପାଳ ଆଶ୍ରମରେ ଦୁଇବର୍ଷ ରହି ପିଲାମାନଙ୍କୁ ପଢାଇବା, ଅରଟରେ ସୂତା କାଟିବା, ରୋଗୀସେବା କରିବା ଆଦି କର୍ମରେ ଲିପ୍ତ ରହିଲେ । ପରେ ଅନୁଗୁଳର ବାଜିରାଉତ ଛାତ୍ରାବାସରେ ଅବସ୍ଥାନ କରି ନିକଟବର୍ତ୍ତୀ ଗାଁମାନଙ୍କରେ ଥିବା ଗରିବ ପରିବାରର ଖାଇବା ବ୍ୟବସ୍ଥା କରେଇଥିଲେ । ତତ୍‌କାଳୀନ ସମାଜର ରକ୍ଷଣଶୀଳତାର ପାଚେରି ଭାଙ୍ଗି ଦଶମାସର ଝିଅକୁ ଛାଡି ହାରାମଣି ସମାଜସେବା ଓ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ ।

ସ୍ୱାଧୀନତା ସଂଗ୍ରାମୀ ଭାବେ ଇନ୍ଦିରା ଗାନ୍ଧୀଙ୍କଠାରୁ ତାମ୍ରଫଳକ ପ୍ରାପ୍ତ ହୋଇଛନ୍ତି ହାରାମଣି । ସଂଗ୍ରାମୀ ଜୀବନ ସହ ଆଞ୍ଚଳିକ ଲୋକହିତକର କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରୁଥିଲେ । ଉତ୍ତାରଣ ସ୍ୱାସ୍ଥ୍ୟକେନ୍ଦ୍ର, କସର୍ଦା ମଧ୍ୟଇଂରାଜୀ ଓ ସୁନ୍ଦରଗ୍ରାମ ମଧ୍ୟଇଂରାଜୀ ବିଦ୍ୟାଳୟ ଆଦିର ପରିଚାଳନାରେ ସେ ଅଂଶ ଗ୍ରହଣ କରୁଥିଲେ ।

୨୦୦୩ ମସିହା ସ୍ୱାଧୀନତା ଦିବସରେ ରାଷ୍ଟ୍ରପତିଙ୍କ ଦ୍ୱାରା ଦିଲ୍ଲୀରେ ସମ୍ବର୍ଦ୍ଧିତ ହେବାକୁ ଯାଇଥିଲେ ହାରାମଣି । ହେଲେ ସମ୍ବର୍ଦ୍ଧିତ ହେବା ପୂର୍ବରୁ ଗାନ୍ଧିଜୀଙ୍କ ସମାଧୀପୀଠ ପରିଦର୍ଶନ କରିବା ପରେ ଛାତିରେ ଯନ୍ତ୍ରଣା ଅନୁଭବ କରିବାରୁ ଓଡିଶା ଭବନରେ ସେ ବିଶ୍ରାମ କରି ରାମ ମନୋହର ଲୋହିଆ ହସ୍‌ପିଟାଲରେ ଭର୍ତ୍ତି ହେଲେ । ୨୦୦୩ ଅଗଷ୍ଟ ୮ ତାରିଖରେ ତାଙ୍କର ଦେହାନ୍ତ ହେଲା । ମୃତ ଶରୀର ଭିଟାମାଟିକୁ ଅଣାଯାଇ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ଅନ୍ତିମ ସଂସ୍କାର କରାଗଲା ।

**ରାମକୃଷ୍ଣ ନନ୍ଦ** : ମହାଶୟଙ୍କୁ ସମସ୍ତେ ଜାଣନ୍ତି ଶିଶୁ ସାହିତ୍ୟିକ, ପ୍ରଧାନଶିକ୍ଷକ, ପତ୍ରିକା ସଂପାଦକ ଏବଂ ଓଡ଼ିଶାର ଘରେ ଘରେ ଲୋକପ୍ରିୟ 'ଆହେ ଦୟାମୟ ବିଶ୍ୱବିହାରୀ...' ପ୍ରାର୍ଥନାର ସ୍ରଷ୍ଟା ଭାବେ । ହେଲେ ସେ ଯେ ଅସହଯୋଗ ଆନ୍ଦୋଳନରେ ଯୋଗାଦାନ କରିଛନ୍ତି, ଏକଥା ଅନେକ ହୁଏତ ଜାଣି ନଥିବେ । ୧୯୦୬ ମସିହାରେ ବାଇରୋଇ ଗ୍ରାମରେ ପିତା ବୃନ୍ଦାବନ ନନ୍ଦ ଓ ମାତା ଲକ୍ଷ୍ମୀ ଦେବୀଙ୍କ କୋଳମଣ୍ଡନ କରିଥିଲେ ରାମକୃଷ୍ଣ ।

୧୯୨୧ ମସିହା 'ଅସହଯୋଗ ଆନ୍ଦୋଳନ'ର ସମୟ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ କଟକ ତିନିକୋଣିଆ ବଗିଚାରେ ଭାଷଣ ଦେଉଥାନ୍ତି, ତାଙ୍କ ଭାଷଣ ଶୁଣି ରାମକୃଷ୍ଣ ଏଭଳି ପ୍ରଭାବିତ ହେଲେ ଯେ, ପରଦିନ ବିଦ୍ୟାଳୟ ଛାଡ଼ି ଭକ୍ତମଧୁ ବିଦ୍ୟାପୀଠ, ସୟେଦ ସେମିନାରି, ପ୍ୟାରିମୋହନ ଏକାଡେମୀ ଆଦି ବିଦ୍ୟାଳୟକୁ ଯାଇ ସହପାଠୀମାନଙ୍କ ସହିତ ଅସହେଯୋଗ ଆନ୍ଦୋଳନରେ ଯୋଗଦେବା ପାଇଁ ଆହ୍ୱାନ ଦେଲେ । ତା'ପରେ ପହଞ୍ଚିଲେ ସ୍ୱାଧୀନତା ସଂଗ୍ରାମର ପୀଠ ସ୍ୱରାଜ ଆଶ୍ରମରେ । ତାଙ୍କର ମତ ଥିଲା ଜାତୀୟ ବିଦ୍ୟାଳୟରେ ପଢିବୁ କିନ୍ତୁ ଆଉ ଇଂରେଜ ସରକାରଙ୍କ ସ୍କୁଲରେ ପଢିବୁ ନାହିଁ ।

ପଢାଘରେ ବସିଥିବା ବେଳେ କାଠଯୋଡି ନଦୀକୂଳରୁ ଶୁଭିଲା 'ଭାରତ ଜନନୀ ତେରି ଜୟ, ତେରି ଜୟ ହୋ' । ଜଣେ ସ୍ୱେଚ୍ଛାସେବୀର ଶବଧରି ଶବବାହକମାନେ ଏହି ନାରା ଦେଉଥାନ୍ତି । ଭାରତ ଜନନୀର ଜୟ ଜୟକାର ଶୁଣି ରାମକୃଷ୍ଣଙ୍କର ଆଉ ପାଠପଢାରେ ମନ ଲାଗିଲା ନାହିଁ । ସ୍ୱରାଜ ଆଶ୍ରମରେ ଅନ୍ୟ ଛାତ୍ରମାନଙ୍କ ସହ ଯାଇ ଭିଡ ଜମେଇଲେ । ସେଠାରେ ଉପସ୍ଥିତ ଥିବା ଜଣେ ସେଚ୍ଛାସେବୀ ତାଙ୍କୁ ଗୋଟିଏ ମଫସଲ ଗାଁକୁ ପଠାଇଲେ । ଧାନମଣ୍ଡଳ (ଏବର ଯାଜପୁର ଜିଲ୍ଲା) ଷ୍ଟେସନରୁ ବଡଚଣା ପାଖ ବଡଘୁମୁଲି ଗାଁ । ସେଠାରେ ଥାଏ ଏକ ଆଶ୍ରମ । କଂଗ୍ରେସ କର୍ମୀଙ୍କର ବାସସ୍ଥାନ ଓ କର୍ମସ୍ଥଳ । ରାମକୃଷ୍ଣ ସେଠାରେ ରହି କପାଚାଷ, ଅସହଯୋଗ ବାର୍ତ୍ତା, ଅରଟରେ ସୂତାକଟା, ବିଲାତି ଲୁଗା ବର୍ଜନ, ନିଶାବର୍ଜନ ଆଦି କାର୍ଯ୍ୟକ୍ରମକୁ ଜୋରଦାର କଲେ । ତିଳକ ସ୍ୱରାଜ ପାଣ୍ଠି ସଂଗ୍ରହ କାମରେ ମଧ୍ୟ ମାତିଗଲେ । ଖଦଡପିନ୍ଧା ଆରମ୍ଭ କଲେ ଓ ଗାଁ ଲୋକେ 'ଗାନ୍ଧୀ ମହାପୁରୁଷଙ୍କ ଲୋକ' ଆଖ୍ୟା ଦେଇ ସମ୍ମାନ କଲେ ।

୧୯୨୨ରେ ପ୍ରତ୍ୟାବର୍ତ୍ତନ କଲେ ସ୍ୱରାଜ ଆଶ୍ରମକୁ । ତାଙ୍କର କାମ ଥିଲା 'ସମାଜ' ବିକିବା ଓ ମୁଷ୍ଟିଭିକ୍ଷା କରିବା । କେହି ଚାହିଁଲେ ଘରେ ନେଇ ଖଦିବସ୍ତ୍ର ଦେଇ ଆସନ୍ତି । ପ୍ରାକ୍ ସ୍ୱାଧୀନତା ସମୟରେ ଶୋଭାଯାତ୍ରା ଓ ସଭାରେ ଯୋଗଦାନ କରିବା ସହ ମଦ ଦୋକାନ ଆଗରେ ପିକେଟିଂ କରୁଥିଲେ । ୧୯୨୨–୨୩ରେ ସ୍ୱରାଜ ଆଶ୍ରମ ଛାଡି ଜଗତସିଂହପୁରର ଅଳକା ଆଶ୍ରମର ଅନ୍ତେବାସୀ ହେଲେ । ସେଠାରେ ଖଦିଲୁଗା ବୁଣିବା କାମ ଶିଖିଲେ ।

ସେ କଂଗ୍ରେସରେ ୨ ବର୍ଷ କାମ କରିଛନ୍ତି । କଂଗ୍ରେସ କହିଲେ ସେତେବେଳେ ଥିଲା ଏକମାତ୍ର ସେବାଦଳ । ମୁଢି ଖାଇ ଓ ପାଣି ପିଇ ବହୁ ସମୟ ଜୀବନ ବିତାଇଛନ୍ତି । ବିଦେଶୀ କପଡାରେ ପ୍ରସ୍ତୁତ ଛତା ନ ଧରି ବର୍ଷାରେ ଭିଜିଛନ୍ତି ।

**ସର୍ବାଣୀ ସେନଗୁପ୍ତ :** ପିତା ସୂର୍ଯ୍ୟନାରାୟଣ ସେନଗୁପ୍ତ ଓ ମାତା ପଦ୍ମାବତୀ ସେନଗୁପ୍ତଙ୍କର ପୁତ୍ର ସର୍ବାଣୀ ନାରାୟଣ ସେନଗୁପ୍ତଙ୍କ ଜନ୍ମ ୦୮/୦୧/୧୯୧୧ ମସିହାରେ । ସମସ୍ତେ ତାଙ୍କୁ ଜାଣନ୍ତି ସର୍ବାଣୀ ସେନଗୁପ୍ତ ଭାବରେ । ଜନ୍ମ କଲିକତାରେ । ୧୯୩୦ ମସିହାରେ କଟକ ଆସିଥିଲେ ବନ୍ୟା କ୍ଷତିଗ୍ରସ୍ତ ଲୋକଙ୍କୁ ରିଲିଫ୍ ଓ ଚିକିତ୍ସା ଯୋଗାଇ ଦେବା ଉଦ୍ଦେଶ୍ୟରେ । ଏହି କାର୍ଯ୍ୟ ନିର୍ବାହ କରିବା ଭିତରେ ଗୋବିନ୍ଦପୁର ଥାନା ଅଧୀନସ୍ଥ ଝାରପଡାର ଦେବୀ ନଦୀ କୂଳରେ ବସତି ସ୍ଥାପନ କରି ସ୍ଥାୟୀ ବାସିନ୍ଦା ପାଲଟିଗଲେ । ବଡବାପା ଦୁର୍ଗାନାରାୟଣ ସେନଗୁପ୍ତଙ୍କ ପୁତ୍ର ଓ କନ୍ୟା, ପୁତ୍ରବଧୂ ଯଥା–ଭୂପେନ୍ ନାରାୟଣ, ନିପେନ୍ ନାରାୟଣ, ମଙ୍ଗଳା ସେନଗୁପ୍ତ ଓ ଅନ୍ନପୂର୍ଣ୍ଣା ସେନଗୁପ୍ତ ଅନେକେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି ଏଗାର ଥର କାରାବରଣ କରିଛନ୍ତି । ସୁତରାଂ ଗୋଟିଏ ସଂଗ୍ରାମୀ ପରିବାରର ସନ୍ତାନଭାବେ ସର୍ବାଣୀ ମଧ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ୪ ବର୍ଷ ୮ ମାସ କାରାବରଣ କରିଥିଲେ । କଲିକତାର ହିଜିଲି ଦମ୍‌ଦମ୍ ଜେଲ୍‌ରେ ରାଜବନ୍ଦୀ ଥିଲେ । ୧୯୪୪ରେ ବ୍ରହ୍ମପୁର ଜେଲ୍‌ରେ ଥିବା ସମୟରେ ମୁରଲୀଧର କାନୁନ୍‌ଗୋ ଓ ହାରାମଣି କାନୁନ୍‌ଗୋଙ୍କ ସହ ତାଙ୍କର ଘନିଷ୍ଠତା ବଢିଯାଇଥିଲା । ନିଆଳୀ ଡାକବଙ୍ଗଳା ପୋଡି ଘଟଣାରେ ସଂଗ୍ରାମୀ ଗୌରାଙ୍ଗ ଚରଣ ଦାସଙ୍କୁ ସହଯୋଗ କରି ସର୍ବାଣୀ ଜେଲ୍ ଦଣ୍ଡ ଭୋଗିଲେ ।

**ଗୌରାଙ୍ଗ ଚରଣ ଦାସ :** (ଗ୍ରାମ–ବାଗଲପୁର, ଜିଲ୍ଲା–ଜଗତସିଂହପୁର)– ଗୌରାଙ୍ଗ ବାବୁ କଟକ ଜିଲ୍ଲା ବୋର୍ଡର ଚେୟାରମ୍ୟାନ୍ ଥିବା ସମୟରେ ସେହି ସର୍ବାଣୀ ସେନଗୁପ୍ତ ବୋର୍ଡର ସଦସ୍ୟ ଥିଲେ । ଝାରପଡ଼ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ସେ ବହୁ ପ୍ରାଥମିକ ବିଦ୍ୟାଳୟମାନ ସ୍ଥାପନ କରି ସେ ଶିକ୍ଷାର ପ୍ରସାର କରିଯାଇଛନ୍ତି । ୧୯୫୬ ମସିହାରେ ସ୍ଥାନୀୟ ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ ସହାୟତା ନେଇ ସେ ଝାରପଡା ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଅଞ୍ଚଳର ଶିକ୍ଷିତ ପିଲାମାନଙ୍କୁ ଶିକ୍ଷକ ଭାବେ ନିଯୁକ୍ତି ଦେଇଥିଲେ । ୧୯୭୨ ମସିହାରେ କଟକ ବାରବାଟୀ ଷ୍ଟାଡିୟମ୍ ପରିସରରେ ଭାରତ ସରକାରଙ୍କ ସ୍ୱାଧୀନତା ସଂଗ୍ରାମୀ ସ୍ୱୀକୃତି ସ୍ୱରୂପ ତାମ୍ରଫଳକ ପ୍ରାପ୍ତ ହୋଇଥିଲେ । ୨୯/୦୪/୧୯୮୪ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା । ଝାରପଡା ହାଇସ୍କୁଲ ପରିସରରେ ପ୍ରାଣ ପ୍ରତିଷ୍ଠାତା ଭାବେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଛି । ଗୌରାଙ୍ଗ ଚରଣ ଦାସଙ୍କର ଭିଟାମାଟି ବାଗଲପୁରଠାରେ ରହିଛି ଏକ ସ୍ୱାଧୀନତା ସଂଗ୍ରାମୀ ପାର୍କ, ଯାହା ତାଙ୍କର ତ୍ୟାଗକୁ ସ୍ମରଣ କରାଇଦିଏ ।

**କସ୍ତୁରି ଚରଣ ମଳିକ :** ଉତ୍ତାରଣ ଗ୍ରାମପଞ୍ଚାୟତ ଅଧୀନସ୍ଥ ଅଲିଙ୍ଗି ଗ୍ରାମରେ କସ୍ତୁରି ଚରଣ ମଳିକ ଜନ୍ମଗ୍ରହଣ କରିଥିଲେ । ୧୯୪୨ ଭାରତଛାଡ ଆନ୍ଦୋଳନ ସମୟରେ ସ୍କୁଲ ପାଠପଢା ଛାଡି ଯୋଗଦେଇଥିଲେ । ଅଡଶପୁର ନିକଟସ୍ଥ ତଣ୍ଡିକଣା ଓ ଜଗତସିଂହପୁର ତରିକୁନ୍ଦଠାରେ ଗୁପ୍ତକେନ୍ଦ୍ର ସ୍ଥାପନ କରାଯାଇଥିଲା । ତା'ର ତଦାରଖ ଦାୟିତ୍ୱରେ ଥିଲେ କସ୍ତୁରି ଚରଣ । ତାଙ୍କୁ ସହଯୋଗ କରୁଥିଲେ ବିଭୂତି ଭୂଷଣ ଆଚାର୍ଯ୍ୟ, ଶ୍ୟାମାନନ୍ଦ ମହାପାତ୍ର ଓ ସର୍ବାଣୀ ସେନଗୁପ୍ତ ପ୍ରମୁଖ ସଂଗ୍ରାମୀଗଣ । ୧୯୩୨–୪୬ ଭିତରେ ସେ ପ୍ରାୟ ୬ ଥର ଜେଲ୍ ଯାଇଛନ୍ତି । ୧୯୪୮ରେ ପ୍ରିୟନାଥ ଦେଙ୍କ ସହ ସୋସିଆଲିଷ୍ଟ ଦଳରେ ଯୋଗଦାନ କଲେ । ଜଗତସିଂହପୁର ଓ ଗୋବିନ୍ଦପୁର ନିର୍ବାଚନ ମଣ୍ଡଳୀରୁ ଚାରିଥର ବିଧାୟକ ରୂପେ ସେ ନିର୍ବାଚିତ ହୋଇଛନ୍ତି । ସେ ଥିଲେ ଦଳିତ ସମାଜର ନେତା । ଢେଙ୍କାନାଳର ପ୍ରଜା ଆନ୍ଦୋଳନରେ ସେ ପ୍ରମୁଖ ଭୂମିକା ଗ୍ରହଣ କରି ଅନେକ କାମ କରିଛନ୍ତି । ଅଳକା ଆଶ୍ରମ ଥିଲା ତାଙ୍କର କର୍ମଭୂମି । ଜଗତସିଂହପୁରର ଚାଟରା ଛକରେ ତାଙ୍କର ପ୍ରତିମର୍ତ୍ତି ସ୍ଥାପନ ହୋଇଛି ।

**ଶ୍ୟାମାନନ୍ଦ ମହାପାତ୍ର:** ଗୋବିନ୍ଦପୁର ଥାନା ଅଧୀନସ୍ଥ ଝାରପଡା ଗ୍ରାମରେ ୧୯୧୪ ମସିହାରେ ଶ୍ୟାମାନନ୍ଦଙ୍କ ଜନ୍ମ । ପିତା ଜମିଦାର ନରସିଂହ ଚରଣ ମହାପାତ୍ର ଓ ମାତା କୁମୁଦ ଦେବୀଙ୍କ ଜ୍ୟେଷ୍ଠପୁତ୍ର ଶ୍ୟାମାନନ୍ଦ । ରେଭେନ୍ସା କଲେଜିଏଟ୍ ସ୍କୁଲରେ ପାଠ

ପଢୁଥିବା ସମୟରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଆହ୍ୱାନରେ ୧୯୩୦ ମସିହାରେ କଂଗ୍ରେସରେ ଯୋଗ ଦେଇଥିଲେ । ବହିପତ୍ର କୂଅ ଭିତରେ ଫିଙ୍ଗି ଦେଇ ସ୍କୁଲ ପାଠପଢା ଛାଡିଦେଲେ । ସେତେବେଳେ ସେ ଥିଲେ ଦଶମ ଶ୍ରେଣୀର ଛାତ୍ର । ସେ ଭାରତଛାଡ ଆନ୍ଦୋଳନରେ ଯୋଗ ଦେଇଥିଲେ । ତତ୍‌କାଳୀନ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ୍ ଲକ୍ଷ୍ମଣ ମିଶ୍ର ଆନ୍ଦୋଳନକାରୀ ଶ୍ୟାମାନନ୍ଦଙ୍କ ବାମ କାନକୁ ମାଡମାରି ରକ୍ତାକ୍ତ କରିଦେଇଥିଲେ । ଫଳରେ ଶ୍ୟାମାନନ୍ଦ ଶ୍ରବଣଶକ୍ତି ହରାଇଥିଲେ । ତା'ପରେ ତାଙ୍କୁ ୩ ମାସ ଜେଲ୍‌ଦଣ୍ଡ ହୋଇଥିଲା । ଜେଲ୍‌ରୁ ମୁକ୍ତ ହେବା ପରେ ପୁନଶ୍ଚ ଫାଟକ ପାଖରୁ ଧରିନେଇ କାରାଗାରରେ ରଖିଲେ । ୧୯୩୨ ମସିହାରେ ବିଲାତି ଲୁଗାଦୋକାନ ଆଗରେ ପେକେଟିଂ କରି ୯ ମାସ କାରାଦଣ୍ଡ ଭୋଗିଲେ । ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ବୈଠକ ତାଙ୍କର ଝାରପଡାସ୍ଥ ବାସଭବନରେ ଅନୁଷ୍ଠିତ ହେଉଥିଲା । ସେ ଥିଲେ କଟକ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ କାର୍ଯ୍ୟକାରୀ ସମିତିର ସଭ୍ୟ । ସ୍ୱାଧୀନତା ପରେ ସମାଜ ସଂସ୍କାର, ଛୁଆଁ ଅଛୁଆଁ ଭେଦଭାବ ଦୂର, ଶିକ୍ଷାର ପ୍ରସାର, ସାମ୍ବାଦିକତା ଆଦି କାର୍ଯ୍ୟରେ ମନୋନିବେଶ କଲେ । ନିଜ ଗ୍ରାମରେ ବାଳିକା ମଧ୍ୟଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ରଜକ ଘରେ ଖାଦ୍ୟ ଗ୍ରହଣ କରୁଥିଲେ ଛୁଆଁ ଅଛୁଆଁ ଭେଦଭାବ ଦୂର କରିବା ପାଇଁ । ସେ ଥିଲେ 'ସମାଜ' ଖବରକାଗଜର ସ୍ଥାନୀୟ ପ୍ରତିନିଧି । ସାଇକେଲ୍‌ଟିଏ ତାଙ୍କର ସାଥୀ । ଅଞ୍ଚଳର ସମସ୍ତ ଖବର ସଂଗ୍ରହ କରନ୍ତି ଗାଁ ଗାଁ ବୁଲି । କୃଷି, ଶିଳ୍ପ ଓ ଗୋ-ପ୍ରଦର୍ଶନୀ ନିଜ ଗ୍ରାମରେ ଆୟୋଜନ କରି ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କୁ ଅତିଥି ଭାବେ ପାଇଥିଲେ । ତାଙ୍କର ତିରୋଧାନ ହୋଇଥିଲା ତା. ୨୫.୦୫.୧୯୯୫ ରିଖରେ ।

**ଇନ୍ଦ୍ରମଣି ଖଟୁଆ:** ବାଗଲପୁର ପଞ୍ଚାୟତ ଅଧୀନସ୍ଥ ବଡଖାଲ ଗ୍ରାମରେ ତା୦୭.୦୫.୧୯୨୧ରିଖରେ ପିତା ସ୍ୱର୍ଗତ ଲୋକନାଥ ଖଟୁଆ ଓ ମାତା କୁନ୍ତଳା ଦେବୀଙ୍କ କୋଳମଣ୍ଡନ କରିଥିଲେ ଇନ୍ଦ୍ରମଣି । ୧୦୨ ବର୍ଷରେ ପଦାର୍ପଣ କରିଥିବା ଇନ୍ଦ୍ରମଣି ଏବେ ଜୀବିତ । ପନ୍ଦରବର୍ଷ ବୟସ ବେଳେ ଏକଦା ସନ୍ନିକଟ ଗ୍ରାମ ବ୍ରାହ୍ମଣସାଇଲୋ ଯାଇଥିବା ସମୟରେ ତାଙ୍କର ସାକ୍ଷାତ୍ ହୁଏ ସ୍ୱାଧୀନତା ସଂଗ୍ରାମୀ ବିଭୂତି ଭୂଷଣ ଆଚାର୍ଯ୍ୟଙ୍କ ସହ । ଆଚାର୍ଯ୍ୟ ମହାଶୟ ଇନ୍ଦ୍ରମଣିଙ୍କୁ ପ୍ରବର୍ତ୍ତାଇଲେ ସ୍ୱାଧୀନତା ସଂଗ୍ରାମରେ ସାମିଲ ହେବାକୁ । ସେତେବେଳର ଚାହାଳି ପାଠ ଛାଡି ଇନ୍ଦ୍ରମଣି ୧୯୪୨ରେ ଭାରତଛାଡ ଆନ୍ଦୋଳନରେ ଯୋଗଦେଲେ । ଇନ୍ଦ୍ରମଣିଙ୍କ ପ୍ରମୁଖ କାର୍ଯ୍ୟ ଥିଲା ସେ ପତ୍ରବାହକ ଭାବରେ ସଂଗ୍ରାମୀଙ୍କ ଗୁପ୍ତକେନ୍ଦ୍ରରେ ଓ ତତ୍‌କାଳୀନ ଆଗଧାଡିର ସଂଗ୍ରାମୀଙ୍କ ଘରେ ଚିଠିଗୁଡ଼ିକ ପହଞ୍ଚାଇବା । ଲୁଚିଛପି ଆନ୍ଦୋଳନ, ଗୋପନରେ ତଥ୍ୟ ସଂଗହ ଓ ପିକେଟିଂମାନ କରି ନିଜର ନିର୍ଭୀକତାର ପରିଚୟ ଦେଇଥିଲେ ସେ । କଟକର ଶଙ୍କରପୁର ମଠଠାରେ ଏକ ଗୁପ୍ତ ବୈଠକ ବସିଥାଏ । ପୋଲିସ ଠାବ କରି ଇନ୍ଦ୍ରମଣିଙ୍କୁ ଧରିବାକୁ ଯିବାବେଳକୁ ସେ ଗୋଟିଏ ନାଗରୀବଣରେ ଲୁଚିଗଲେ । ଝାରପଡା ସନ୍ନିକଟ ଓ୍ୱାଉବରେଇ ଗ୍ରାମରେ ଥିବା ଏକ ପକ୍କା ପୋଲକୁ ସଂଗ୍ରାମୀମାନେ ଭାଙ୍ଗି ରାସ୍ତା ବିଚ୍ଛିନ୍ନ କଲେ । ଯେଉଁଭଳି ଇଂରେଜ କିମ୍ବା ପୋଲିସ ଗାଁକୁ ପ୍ରବେଶ କରିପାରିବେ ନାହିଁ । ପୋଲଭଙ୍ଗା କାମରେ ଇନ୍ଦ୍ରମଣି ଅଂଶଗ୍ରହଣ କରିଥିଲେ । ସେସମୟରେ ପୋଲିସଙ୍କଠାରୁ କାନ୍ଧରେ ଲାଠିମାଡ ଖାଇଥିଲେ ଇନ୍ଦ୍ରମଣି । କଣ୍ଟାପଡା ଡାକବଙ୍ଗଳା ପୋଡିରେ ମଧ୍ୟ ଇନ୍ଦ୍ରମଣି ଯୋଗ ଦେଇଥିଲେ । ପୋଲିସଙ୍କ ନଜରରୁ ରକ୍ଷାପାଇବା ପାଇଁ ଓଡିଶାର ଅନ୍ୟ ଜିଲ୍ଲାମାନଙ୍କରେ ଆତ୍ମଗୋପନ କରୁଥିଲେ । ସ୍ୱାଧୀନତା ପ୍ରାପ୍ତିର ୩ ବର୍ଷ ପରେ ଗାଁକୁ ଫେରିଲେ ଇନ୍ଦ୍ରମଣି । ୨୦୧୬ରେ ସ୍ୱରାଜ ଆଶ୍ରମ, କଟକଠାରେ ରାଜ୍ୟସ୍ତରୀୟ 'ଗାନ୍ଧୀ ଜୟନ୍ତୀ' ସମାରୋହରେ ମଧ୍ୟ ସେ ସମ୍ବର୍ଦ୍ଧିତ ଓ ସମ୍ମାନିତ । ଏତଦ୍‌ବ୍ୟତୀତ ୧୦୨ ବର୍ଷୀୟ ବୟୋବୃଦ୍ଧ ଇନ୍ଦ୍ରମଣିଙ୍କୁ ୨୦୧୭ ମସିହା 'ଗାନ୍ଧୀ ଜୟନ୍ତୀ' ଅବସରରେ କେନ୍ଦ୍ରାଞ୍ଚଳ ରାଜସ୍ୱ ପ୍ରଶାସନ ତରଫରୁ ମଧ୍ୟ 'ସ୍ୱତନ୍ତ୍ର ସୈନିକ ସମ୍ମାନ'ରେ ସମ୍ମାନିତ ଓ ସମ୍ବର୍ଦ୍ଧିତ କରାଯାଇଥିଲା ।

ବଲରା, ବିଲାସୁଣୀ, ନିଆଳୀ
ଜିଲ୍ଲା-କଟକ-୭୫୪୦୦୪

# ଓଡ଼ିଶାର ଶିମିଳିପାଳ ଜୈବମଣ୍ଡଳ ଓ ଅନଳ କାଳ

କର୍ଣ୍ଣେଲ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି

**ନିଆଁ କଅଣ ?**

ନିଆଁ ସହିତ ଆମେମାନେ ଅତି ପରିଚିତ । ଏହାର ପ୍ରତିଶବ୍ଦଗୁଡ଼ିକ ହେଉଛି ଅଗ୍ନି, ଅନଳ, ଧନଞ୍ଜୟ ଓ ଭାଲିଆ । ଏହା ଏକ ବିଶେଷ୍ୟ ଶବ୍ଦ । ପରିଚିତ ହେଲେ ମଧ୍ୟ ଏହାର ସଂଜ୍ଞା ଆମ ପାଇଁ କଷ୍ଟ ହୋଇପାରେ । ନିଆଁ ହେଉଛି ଦହନ ବା ଜଳିବାର କୌଣସି ଏକ ଅବସ୍ଥା ବା ପ୍ରକ୍ରିୟା ବା ଉଦାହରଣ, ଯେଉଁଥିରେ ଜାଳେଣି ବା କୌଣସି ଜିନିଷ ଜଳି ଅମ୍ଳଜାନ୍ ସହ ମିଶି ଆଲୋକ, ଉତ୍ତାପ ଓ ଶିଖା ଉତ୍ପନ୍ନ କରିଥାଏ । ଇଂରାଜୀରେ ନିଆଁକୁ ଫାୟାର କୁହାଯାଏ । ଯାହାକି ଆଙ୍ଗ୍‌ଲୋ–ସାକ୍ସନ ଶବ୍ଦ ଫିର୍‌ରୁ ଉଦ୍ଭୂତ । ନିଆଁର ତିନୋଟି ମୌଳିକ ଜିନିଷ ରହିଥାଏ, ଯାହାକୁ କୁହାଯାଏ ‘‘ଅଗ୍ନି ତ୍ରିକୋଣ’ । ଏ ତିନୋଟି ହେଉଛି (୧) ଅମ୍ଳଜାନ୍ (୨) ତାପ ଓ (୩) ଜାଳେଣି । ଏହା ସହ ଚତୁର୍ଥ ଜିନିଷଟି ମଧ୍ୟ ରହିଛି, ଯାହା ହେଉଛି ରାସାୟନିକ ପ୍ରକ୍ରିୟା । ତେବେ ଏ ଚାରିଟି ଜିନିଷ ମିଶିବାଟି ହେଉଛି ଅଗ୍ନି ଚତୁଃକୋଣ । ଏ କଥାଟିର ସାରମର୍ମ ହେଉଛି ଏ ଚାରିଟିରୁ ଯେକୌଣସି ଉପାଦାନଟିକୁ ବାଦ୍ ଦେଲେ ଆମେ ନିଆଁ ପାଇପାରିବା ନାହିଁ । ନିଆଁ ଚାରି ପ୍ରକାର ।

୧) କ–ଶ୍ରେଣୀ – କଠିନ ପଦାର୍ଥ ଅର୍ଥାତ୍ କାଠ, କାଗଜ ଓ କପଡ଼ା ଆଦିକୁ ନେଇ ନିଆଁ ।

୨) ଖ– ଶ୍ରେଣୀ– ପେଟ୍ରୋଲ, ଡିଜେଲ ବା ତୈଳ ପରି ତରଳ ଦହନୀୟକୁ ନେଇ ନିଆଁ ।

୩) ଗ– ଶ୍ରେଣୀ – ବାଷ୍ପ ଜାତୀୟ ପଦାର୍ଥକୁ ନେଇ ନିଆଁ ।

୪) ଘ–ଶ୍ରେଣୀ– ଧାତୁ ଜାତୀୟ ପଦାର୍ଥକୁ ନେଇ ନିଆଁ ।

**ନିଆଁର ସୃଷ୍ଟି ଓ ବ୍ୟବହାର**

ପ୍ରସ୍ତର ଯୁଗରୁ ମଣିଷ ନିଆଁର ସନ୍ଧାନ ପାଇପାରିଥିଲା ବୋଲି ଜଣାଯାଏ । କୁହାଯାଏ ଯେ, ଜଙ୍ଗଲରେ ରହୁଥିବା ମଣିଷ ପଥରକୁ ପଥର ଘଷି ନିଆଁ ପାଇଥିଲା । କାଳକ୍ରମେ ଏ ନିଆଁକୁ ସେ ବିଭିନ୍ନ କାର୍ଯ୍ୟରେ ଲଗାଇବାରେ ସକ୍ଷମ ମଧ୍ୟ ହୋଇଥିଲା । ବିଶେଷ କରି ନିଆଁକୁ ବ୍ୟବହାର କରି ଖାଦ୍ୟ ବା ପ୍ରାଣୀମାନଙ୍କୁ ପୋଡ଼ି ଖାଇବାରେ ସ୍ୱାଦକୁ ସେ ଉପଭୋଗ କରିଥିଲା । ପ୍ରଶସ୍ତ ଭାବରେ ଦେଖିଲେ ନିଆଁର ବ୍ୟବହାର ମୁଖ୍ୟତଃ ପାଞ୍ଚୋଟି ।

୧) ଧର୍ମ କର୍ମ ଆଦିରେ ଅର୍ଥାତ୍ ହୋମ ଯଜ୍ଞରେ ବ୍ୟବହାର ।

୨) ଜମି ସଫା ବା ସମତୁଲ କରିବାରେ ବ୍ୟବହାର ।

୩) ରୋଷେଇ କରି ବିଭିନ୍ନ ପ୍ରକାର ଖାଦ୍ୟ ପ୍ରସ୍ତୁତିରେ ବ୍ୟବହାର ।

୪) ସଙ୍କେତ ପ୍ରଦାନ କରିବା, ଉତ୍କ୍ଷେପଣ ପରି କାର୍ଯ୍ୟ, ତରଳାଇବା, ବର୍ଜ୍ୟବସ୍ତୁକୁ ପୋଡ଼ି ପାଉଁଶ କରିବା ଓ ଶରୀର ଦାହ ଆଦି କାର୍ଯ୍ୟରେ ବ୍ୟବହାର ।

୫) କ୍ଷେପଣାସ୍ତ୍ର ପ୍ରୟୋଗ ବା ଧ୍ୱଂସ କରିବା ଆଦିରେ ବ୍ୟବହାର ।

ଏତେଗୁଡ଼ିଏ ବ୍ୟବହାର ଆଦି ଆମେ କରିପାରିଲେ ମଧ୍ୟ ପୁରାତନ ମଣିଷ ଏ ନିଆଁକୁ ଯେଉଁଥିପାଇଁ ଲଗାଇ ପାରିଥିଲା ସେଗୁଡ଼ିକ ଏପରି ।

୧) କଞ୍ଚା ଜିନିଷକୁ ପୋଡ଼ି ଖାଇବା ଦ୍ରବ୍ୟ ପ୍ରସ୍ତୁତି ।

୨) ଆଲୋକ ପାଇବା ।

୩) ଉତ୍ତାପ ପାଇବା ।

୪) ବନ୍ୟ ଜୀବମାନଙ୍କୁ ନିଆଁ ଦେଖାଇ ଡରାଇବା ।

ନିଆଁର ଉପରୋକ୍ତ ଦିଗଗୁଡ଼ିକ ଆମ ପାଇଁ ବାସ୍ତବିକ ବେଶ୍ ଉପକାରୀ ଓ ଦରକାରୀ ମଧ୍ୟ । କିନ୍ତୁ, ଏହାର ଅସୁବିଧାଗୁଡ଼ିକ ଏବେ ଆଲୋଚନା କରିବା ।

୧) ଘରଦ୍ୱାର ଜାଳି ପାଉଁଶ କରିଦିଏ ।

୨) ପରିସଂସ୍ଥାଗୁଡ଼ିକୁ ଧ୍ୱଂସ କରିଦିଏ ।

୩) ବନ୍ୟ ଜୀବନଗୁଡ଼ିକୁ ମାରିଦିଏ ।

୪) ଦହନ ଫଳରେ ବାୟୁମଣ୍ଡଳକୁ ଦୂଷିତ କରିପକାଏ ।

୫) ଅଙ୍ଗାରକାମ୍ଳ ବାଷ୍ପ ପରି ସବୁଜ ଗୃହ ବାଷ୍ପ ନିର୍ଗମନ ଫଳରେ ବାୟୁମଣ୍ଡଳ ଦୂଷିତ ସହ ପରିବେଶ ଉଷ୍ଣତା ବୃଦ୍ଧି କରେ ।

**ଶିମିଳିପାଳ ଜୈବମଣ୍ଡଳ ଓ ବନାଗ୍ନି**

ଓଡ଼ିଶାର ସର୍ବବୃହତ୍ ଅଭୟାରଣ୍ୟ ହେଉଛି ମୟୂରଭଞ୍ଜ ଜିଲ୍ଲାର ମଧ୍ୟଭାଗରେ ଅବସ୍ଥିତ ଶିମିଳିପାଳ ଜୈବମଣ୍ଡଳ । ଏହାକୁ ଓଡ଼ିଶାର ଢାଲ ବା ଫୁସ୍‌ଫୁସ୍ ବୋଲି କୁହାଯାଏ । ଏହାର ସମଗ୍ର ଓଡ଼ିଶା, ଦେଶ ଓ ବିଶ୍ୱରେ ମାନ୍ୟତା ଅନନ୍ୟ, ଅନବଦ୍ୟ ଓ ଅସାଧାରଣ । ନିମ୍ନୋକ୍ତ ସ୍ୱାତନ୍ତ୍ର୍ୟ ହେଉଛି ଏହାର ପରିଚୟ, ଯାହାକି ୨୭୫୦ ବର୍ଗ କି.ମି. କ୍ଷେତ୍ରଫଳ ବିଶିଷ୍ଟ ଜୈବମଣ୍ଡଳ ।

୧) ଜୈବମଣ୍ଡଳ ୟୁନେସ୍କୋ ବିଶ୍ୱ ଐତିହ୍ୟର ଏକ ଅଂଶ । ଏହା ୨୦୦୯ ମସିହାରୁ ମାନ୍ୟତାପ୍ରାପ୍ତ ।

୨) ଏପରି ସଂରକ୍ଷିତ ସ୍ଥାନଟି ଲାଲ୍ ରେଶମ ସୂତା ଗଛରେ ଆଚ୍ଛାଦିତ, ଯାହା ପାଇଁ ଏ ସ୍ଥାନର ନାମ ଶିମିଳିପାଳ ହୋଇଛି ।

୩) ଅନେକ ପ୍ରକାର ଜୈବବିବିଧତା ସହ ଏହାର ଗର୍ବ ଓ ଗୌରବ ହେଉଛନ୍ତି ବାଘ, ହାତୀ ଓ ପାର୍ବତୀୟ ମଇନା ପରି ସୁନ୍ଦର ଜୀବମାନେ । ପ୍ରାଣୀମାନଙ୍କର ଏହା ଭଣ୍ଡାର ।

୪) ଏହା ଓଡ଼ିଶାର ସର୍ବାଧିକ ବାଘମାନଙ୍କୁ ସ୍ଥାନିତ କରିଥାଏ ।

୫) ଭାରତର ବୃହତ୍ତମ ଶାଳ ଜଙ୍ଗଲ ଏହି ଜୈବ ମଣ୍ଡଳରେ ଦେଖାଯାଏ ।

୬) କ୍ରାନ୍ତି ମଣ୍ଡଳୀୟ ମୌସୁମୀ ଜଳବାୟୁ ବିଭିନ୍ନ କିସମର ଉଦ୍ଭିଦ ସହ ପ୍ରାଣୀମାନଙ୍କୁ ବଞ୍ଚିବାର ଦକ୍ଷତା ଓ କ୍ଷମତାହିଁ ଏହିଠାରୁ ମିଳିଥାଏ ।

୭) ଶିମିଳିପାଳ ମୟୂରଭଞ୍ଜରହିଁ ଓଡ଼ିଶାର ପ୍ରଥମ ଜୈବମଣ୍ଡଳ ଭାବରେ ପରିଗଣିତ ଓ ମାନ୍ୟତାପ୍ରାପ୍ତ (ଘୋଷିତ ୧୯୯୪ ମସିହାର ଜୁନ୍ ମାସରେ) ।

୮) ଏଠାରେ ଥିବା ବରେହିପାଣି ଜଳପ୍ରପାତହିଁ ଭାରତରେ ଥିବା କେତେକ ଉଚ୍ଚ ଜଳପ୍ରପାତ ମଧ୍ୟରୁ ଗୋଟିଏ ଉଚ୍ଚତମ ଜଳପ୍ରପାତ ।

୯) ୧୯୫୬ ମସିହାରେ ଏହାକୁ ବ୍ୟାଘ୍ର ସଂରକ୍ଷିତ ସ୍ଥାନ ଭାବରେ ଘୋଷଣା କରାଯାଇଥିଲା । ଏଥିସହ ୧୯୭୩ ମସିହାରେ ବ୍ୟାଘ୍ର ପ୍ରକଳ୍ପ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଥିଲା ।

୧୦) ୨୦୦୧ ମସିହାରେ ମୟୂରଭଞ୍ଜ ହସ୍ତୀ ସଂରକ୍ଷିତ ସ୍ଥାନ (ଶିମିଳିପାଳ-କୁଳଡିହା-ହଦଗଡ଼) ଭାବରେ ରାଜ୍ୟ ସରକାର ମାନ୍ୟତା ଦେଲେ । ଏହା ମୟୂରଭଞ୍ଜ ହସ୍ତୀ ସଂରକ୍ଷିତ ଅଞ୍ଚଳ ଭାବରେ ପରିଚିତ । ଏହା ତିନୋଟି

ସଂରକ୍ଷିତ ସ୍ଥାନକୁ ନେଇ ଗଠିତ, ଯେଉଁଗୁଡ଼ିକ ହେଉଛି (କ) ଶିମିଳିପାଳ ବ୍ୟାଘ୍ର ସଂରକ୍ଷିତ ସ୍ଥାନ (ଖ) ହଦଗଡ଼ ବନ୍ୟପ୍ରାଣୀ ଅଭୟାରଣ୍ୟ ଓ (ଗ) କୁଳଡିହା ବନ୍ୟପ୍ରାଣୀ ଅଭୟାରଣ୍ୟ ।

ଜାତୀୟ ଓ ବିଶ୍ୱସ୍ତରରେ ସୁନାମ ଅର୍ଜନ କରିଥିବା ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ଅଭୟାରଣ୍ୟ ଏବେ ଅନଳର କରାଳଗ୍ରସ୍ତ । ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ନିଆଁ ଲାଗି କେନ୍ଦ୍ରାଞ୍ଚଳକୁ ବ୍ୟାପିବାର ଆଶଙ୍କା ଦେଖାଦେଇଥିବା ବେଳେ ଫେବୃଆରୀ ମାସ ୨୦୨୩ ମସିହାରୁ ମାର୍ଚ୍ଚ ମାସ ମଧ୍ୟଭାଗ ପର୍ଯ୍ୟନ୍ତ ବାରିପଦା ବନାଞ୍ଚଳର ବିଭିନ୍ନ ସ୍ଥାନରେ ନିଆଁ ଗ୍ରାସିବା ବେଶ୍ ପରିତାପ ଓ ମନସ୍ତାପର ଖବର । ବନ ବିଭାଗର ବିବରଣୀ ଅନୁଯାୟୀ ଶିମିଳିପାଳର ଅଭ୍ୟନ୍ତରୀଣ ଏବଂ ଉତ୍ତର ଓ ଦକ୍ଷିଣ ଭାଗର ଅନେକ ଅଞ୍ଚଳର ନିଆଁ ବ୍ୟାପୀ ଯାଇଥିବା ବେଳେ ଏହି ନିଆଁକୁ ନିୟନ୍ତ୍ରଣକୁ ଆଣିବା ବା ଲିଭାଇବା ହୋଇପଡ଼ିଛି କାଠିକର ପାଠ ବନ ବିଭାଗ ପାଇଁ । ଶିମିଳିପାଳର କେନ୍ଦ୍ରାଞ୍ଚଳ ଓ ମଝି ଅଞ୍ଚଳର ତାଳବନ୍ଧ, ଗୁରୁଗୁଡ଼ିଆ, କେନ୍ଦୁମୁଣ୍ଡି ଓ ବରେହିପାଣି ଅଞ୍ଚଳର ୬୦ଟି ସ୍ଥାନରେ ନିଆଁ ଲାଗିଥିବାର ଖବର ବେଳେ ପୂର୍ବରୁ ଶିମିଳିପାଳ ପାଦ ତଳି ଅଞ୍ଚଳ(ପୋଡ଼ାଡିହା) ବନାଞ୍ଚଳର ଅନନ୍ତପୁର ବିଟ୍‌ର ଉପର ବାରହାକାମୁଡ଼ା, ସାରବସା, ଭୁଣ୍ଡାସାହି, ମାଣିକପୁର, ପଥରଖେଣ୍ଡି, ଖଣ୍ଡାଚୁରା ଓ ଅନନ୍ତପୁର ଅଞ୍ଚଳରେ ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ନିଆଁ ଲଗାଯାଇଥିବା ଖବର ପରିବେଶ ପ୍ରେମୀ ତଥା ସାଧାରଣ ଜନତାଙ୍କୁ କରିଛି ହତବାକ୍ ।

ଏକଥା ଦେଖିଲେ ମନେପଡ଼ିଯାଏ ୨୦୨୧ ମସିହାରେ ଅନେକ ଦିନ ଯାଏଁ ଶିମିଳିପାଳ ଭୟାବହ ଅଗ୍ନି ପ୍ରକୋପରେ ହୋଇଥିଲା ଦଗ୍ଧୀଭୂତ । ଏହି ବର୍ଷ ବଫର ଅଞ୍ଚଳରେ ନିଆଁର ବ୍ୟାପକତା ଓ ଭୟାବହତା ହୋଇଥିଲା ସାଙ୍ଘାତିକ । ୪,୫୪୪ଟି ସ୍ଥାନରେ ନିଆଁର ବ୍ୟାପକତା ଓ ଭୟାବହତା ହୋଇଥିଲା ସାଙ୍ଘାତିକ । ୪,୫୪୪ଟି ନିଆଁ ଲାଗିଥିବାର ବିବରଣୀ ମିଳିଥିବା ବେଳେ ସେଥିମଧ୍ୟରୁ ବାରିପଦା ବନଖଣ୍ଡର ୫୨୭, ଅଣଜଙ୍ଗଲ ଅଞ୍ଚଳରେ ୪୯୦, କରଞ୍ଜିଆ ବନଖଣ୍ଡ ଜଙ୍ଗଲ ଅଞ୍ଚଳରେ ୩୯୪, ଅଣଜଙ୍ଗଲ ଅଞ୍ଚଳରେ ୧୫୦, ରାଇରଙ୍ଗପୁର ବନଖଣ୍ଡ ଜଙ୍ଗଲ ଅଞ୍ଚଳରେ ୪୦୭, ଅଣଜଙ୍ଗଲ ଅଞ୍ଚଳରେ ୧୮୭,ଶିମିଳିପାଳ ଉତ୍ତର ବନ୍ୟପ୍ରାଣୀ ବନଖଣ୍ଡର ଜଙ୍ଗଲ ଅଞ୍ଚଳରେ ୭୦୧, ଅଣଜଙ୍ଗଲ ଅଞ୍ଚଳରେ ୬୨୦, ଦକ୍ଷିଣ ବନ୍ୟପ୍ରାଣୀ ବନଖଣ୍ଡ ଅଞ୍ଚଳରେ ୪୫୯, ଅଣଜଙ୍ଗଲ ଅଞ୍ଚଳରେ ୬୦୯ଟି ସ୍ଥାନରେ ନିଆଁ ଲାଗିଥିବାର ଉପଗ୍ରହ ଚିତ୍ର(Satellite Image ବା Picture)ରୁ ଜଣାପଡ଼ିଥିଲା ।




***(ନିଆଁର ଚାରିଟି ମୌଳିକ ଜିନିଷ)***

***ସାରଣୀ ୧ : ଜଙ୍ଗଲ ଓ ଅଣଜଙ୍ଗଲରେ ନିଆଁ ଲାଗିଥିବା ସ୍ଥାନ***

| କ୍ରମିକ ସଂଖ୍ୟା | ବନଖଣ୍ଡ ସଂଖ୍ୟା | ଅଣଜଙ୍ଗଲ ସଂଖ୍ୟା | ବନଖଣ୍ଡ ନାମ |
|---|---|---|---|
| ୧ | ୫୨୭ | ୪୯୦ | ବାରିପଦା |
| ୨ | ୩୯୪ | ୧୫୦ | କରଞ୍ଜିଆ |
| ୩ | ୪୦୭ | ୧୮୭ | ରାଇରଙ୍ଗପୁର |
| ୪ | ୭୦୧ | ୬୨୦ | ଶିମିଳିପାଳ ଉତ୍ତର |
| ୫ | ୪୫୯ | ୬୦୯ | ଶିମିଳିପାଳ ଦକ୍ଷିଣ |

୨୦୨୧ ମସିହାରେ ଏ ଶିମିଳିପାଳରେ ଦୀର୍ଘଦିନ ଯାଏଁ ବନାଗ୍ନି ଲାଗି ରହିଥିବା ଯୋଗୁଁ ୨୦୨୨ ମସିହାରେ ବ୍ୟାପକ ଭାବରେ ପ୍ରତିରୋଧକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଅରଣ୍ୟ ପାଦତଳ ଅଞ୍ଚଳର ଲୋକଙ୍କୁ ସଚେତନ କରାଇବାକୁ ମହିଳା ସ୍ୱୟଂ ସହାୟକ

ଗୋଷ୍ଠୀମାନଙ୍କୁ ନିୟୋଜିତ କରାଯାଇଥିଲା । ଫଳରେ ୨୦୨୨ ମସିହାରେ ମାତ୍ର ୧୪୯ଟି ସ୍ଥାନରେ ନିଆଁ ଲାଗିବାକୁ କମିଯାଇଥିଲା । କିନ୍ତୁ ୨୦୨୩ ମସିହାର ବନାଗ୍ନି ଆମ ସମସ୍ତଙ୍କ ପାଇଁ ବିବ୍ରତ, ବିଚଳିତ, ମର୍ମାହତ, ଦୁଃଖିତ ଓ ବିସ୍ମିତ କରିବାର ସମୟ ଓ ବିଷୟ ।

**ବନାଗ୍ନିର କାରଣ**

ଶିମିଳିପାଳରେ ୧୯୬୪, ୧୯୯୬ ଓ ୨୦୨୧ ମସିହାରେ ବ୍ୟାପକ ଅଗ୍ନିକାଣ୍ଡ ଘଟି ଅନେକ ପରିମାଣର ଜଙ୍ଗଲ ସମ୍ପଦ ନଷ୍ଟ ହୋଇଯିବା ସହ ପ୍ରାଣୀମାନେ ମଧ୍ୟ ମୃତ୍ୟୁବରଣ କରିଥିଲେ । ସେଥିରୁ ୧୯୬୪ ଓ ୧୯୯୬ରେ ପ୍ରାକୃତିକ ଉପାୟରେ ନିଆଁ ଲାଗିବା ସହ ସେସମୟରେ ବର୍ଷା ନ ହେବା ହେତୁ ବ୍ୟାପକ ଜଙ୍ଗଲ ନଷ୍ଟ ହୋଇଥିଲା । କିନ୍ତୁ ୨୦୨୧ରେ କେତେକ ଦୁର୍ବୃର୍ତ୍ତ ସଙ୍ଗଠିତ ଭାବରେ ଶିମିଳିପାଳର ବିଭିନ୍ନ ସ୍ଥାନରେ ନିଆଁ ଲଗାଇବା ଓ ବର୍ଷା ନ ହେବା ଫଳରେ ନିଆଁ ସାଙ୍ଘାତିକ ଉଗ୍ର ରୂପ ଧାରଣ କରିଥିଲା । ଏବେ ଦେଖିବା ନିଆଁ ଲାଗିବା ବା ମଣିଷ ନିଆଁ ଲଗେଇବାର ଉଦ୍ଦେଶ୍ୟଗୁଡ଼ିକ କ'ଣ ।

୧ – ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ

୨ – ଲୁହା ସାମଗ୍ରୀ ତିଆରି ପାଇଁ ନିଆଁ

୩ – କାଠ ସଂଗ୍ରହ ବେଳେ ବିନା କାରଣରେ ନିଆଁ ଲଗା

୪ – ଖଣ୍ଡିଆ ବିଡ଼ି ଓ ପିକାର ନିଆଁ

୫ – ପ୍ରାଣୀ ଶିକାର ପାଇଁ ଗଛ କଟା ଲୁଚାଇବା ପାଇଁ ଓ ମଦ ପ୍ରସ୍ତୁତି ପାଇଁ

(୧) ଖରାଦିନେ ପ୍ରାକୃତିକ ଭାବରେ କାଁ ଭାଁ ଜଙ୍ଗଲରେ ନିଆଁ ଲାଗି ଯିବାର ଦେଖାଯାଏ, ଯାହାକି ଖୁବ୍ କ୍ୱଚିତ୍ ।

(୨) ବର୍ତ୍ତମାନ ନିଆଁ ଲାଗିବାର କାରଣ ଏ ମଣିଷ ଅର୍ଥାତ୍ ଏହା ମାନବକୃତ । ଶିମିଳିପାଳରେ ଅନେକ ମହୁଲ ଗଛ ଦେଖାଯାଏ । ମହୁଲ ଫୁଲକୁ ସଂଗ୍ରହ କରିବା ଲାଗି ସେଠାକାର ଅଧିବାସୀମାନେ ଗଛ ମୂଳରେ ଥିବା ଶୁଖିଲା କାଠପତ୍ର ଓ ଅନାବନା ଛୋଟ ଛୋଟ ଗଛ ବା ବୁଦାକୁ ନିଆଁ ଲଗାଇ ସେ ସ୍ଥାନକୁ ସଫା କରିଦିଅନ୍ତି । ମହୁଲ ଛଡ଼ା ତେନ୍ତୁଳି, କେନ୍ଦୁ, ଚାରକୋଳି ଆଦି ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ ନିମିତ୍ତ ଗଛମୂଳେ ନିଆଁ ଲଗାଇ ଗଛମୂଳକୁ ସଫା କରିଦିଅନ୍ତି । ସେ ନିଆଁକୁ ଥରେ ଲଗାଇଦେଲା ପରେ ଆଉ ଲିଭାଇ ନ ଥାଆନ୍ତି । ଫଳତଃ ସେ ନିଆଁ ଚତୁଃଦିଗକୁ ବ୍ୟାପୀ ଯାଇଥାଏ ।

(୩) ଶିମିଳିପାଳ ଆଖପାଖ ଅଞ୍ଚଳରେ କିଛି କିଛି ଲୋକ ଲୁହାରେ ବିଭିନ୍ନ ପ୍ରକାର ଘରୋଇ ସାମଗ୍ରୀ ଅର୍ଥାତ୍ ପନିକି, କଟୁରି, ଦାଆ, କାତି ଆଦି ତିଆରି କରି ବିକ୍ରୟ ମାଧ୍ୟମରେ ରୋଜଗାର କରିଥା'ନ୍ତି ଓ ପରିବାର ପ୍ରତିପୋଷଣ କରିଥା'ନ୍ତି । ସେମାନେ ଜଙ୍ଗଲ ଯାଇ ଶୁଖିଲା କାଠକୁ ଜଙ୍ଗଲରେହିଁ ଜାଳି ତାର ଦରପୋଡ଼ା ଅଙ୍ଗାରକୁ ଆଣି ତାକୁ ଲୁହା ସାମଗ୍ରୀ ତିଆରିରେ ବ୍ୟବହାର କରିଥାଆନ୍ତି । ତା'ପରେ ସେ ଲଗାଇଥିବା ନିଆଁକୁ ନ ଲିଭାଇ ପଳାଇ ଆସିବା ଫଳରେ ନିଆଁ ଧୀରେ ଧୀରେ ଅନ୍ୟ ସ୍ଥାନକୁ ବ୍ୟାପୀ ଯାଇଥାଏ ।

(୪) ଜାଳେଣି କାଠ ସଂଗ୍ରହ ପାଇଁ ଯାଉଥିବା କିଛି ଅଧିବାସୀ ବା ଅସାମାଜିକ ବ୍ୟକ୍ତି ବିନା କାରଣରେ ଜଙ୍ଗଲରେ ନିଆଁ ଲଗାଇ ଦେଇଥା'ନ୍ତି ।

(୫) ଜଙ୍ଗଲ ପାଖାପାଖି ରହୁଥିବା କେତେକ ଅଧିବାସୀ ବିଡ଼ି ପିକା ଆଦି ଖାଇବାର ଅଭ୍ୟାସ ଦେଖାଯାଏ । ତେଣୁ ଜଙ୍ଗଲକୁ ଯାଇଥିବା ସମୟରେ ବିଡ଼ି ବା ପିକାପରି ନିଆଁ ଲାଗିଯାଇଥିବା ଦ୍ରବ୍ୟ ଫୋପାଡ଼ିବା ଫଳରେ ( ଅର୍ଥାତ୍ ଖଣ୍ଡିଆ ବିଡ଼ି ବା ପିକା) ପାଖାପାଖି ଥିବା ଶୁଖିଲା ପତ୍ର, କାଠି ଓ ଘାସ ଆଦିରେ ଲାଗି ନିଆଁ ବ୍ୟାପକ ଆକାର ଧାରଣ କରିଥାଏ ।

(୬) ସବୁଠାରୁ ସ୍ପର୍ଶକାତର ଖବର ହେଉଛି ଶିକାରୀଙ୍କ କାରନାମା । ଶିକାରୀଗଣ ଶିକାର ପାଇଁ ଶିମିଳିପାଳର ନିର୍ଦ୍ଦିଷ୍ଟ ଅଞ୍ଚଳକୁ ନିଆଁ ଲଗାଇ ଦେଇଥାଆନ୍ତି । ନିଆଁ ଦାଉରୁ ରକ୍ଷା କରିବା ପାଇଁ ହରିଣ, ସମ୍ବର, କୁଟୁରା

ପରି ବନ୍ୟପ୍ରାଣୀମାନେ ଏଣେତେଣେ ଦଉଡ଼ିବାକୁ ଲାଗନ୍ତି । ଶିକାରୀଗଣ ଗୋଟିଏ ପାର୍ଶ୍ୱରେ ନିଆଁ ଲଗାଇଦେଇ ବିପରୀତ ପାର୍ଶ୍ୱକୁ ଚାଲିଯାଆନ୍ତି, ଯେଉଁ ପାର୍ଶ୍ୱରେ କି ଶିକାରୀଗଣ ଜାଲ ବା ଫାସ ବସାଇ ଥାଆନ୍ତି । ବିକଳରେ ଅନ୍ୟ ପାର୍ଶ୍ୱକୁ ଦଉଡ଼ି ଯିବା ସମୟରେ ସେମାନେ ଫାସ ବା ଜାଲରେ ପଡ଼ିଯିବା ପରେ ଶିକାରୀଗଣ ସେ ଜନ୍ତୁଙ୍କୁ ନେଇ ଆସନ୍ତି ।

(୭) ବେଆଇନ୍ ଗଛକଟା ଲୁଚାଇବା ପାଇଁ ଓ କେତେକ ଦେଶୀ ମଦ ପ୍ରସ୍ତୁତି ପାଇଁ ମଧ୍ୟ ନିଆଁ ଲାଗିବା ଦେଖାଯାଏ ।

### ଓଡ଼ିଶାରେ ବନାଗ୍ନିର ସ୍ଥିତି ଓ ପରିସ୍ଥିତି

ଭାରତୀୟ ବନ୍ୟ ସର୍ବେକ୍ଷଣ ସଂସ୍ଥାର ଆକଳନ ଅନୁଯାୟୀ ଭାରତରେ ବନାଗ୍ନିରେ ଓଡ଼ିଶା ସର୍ବାଗ୍ରେ ରହିଛି । ସମ୍ବାଦପତ୍ର ୧୫ ମାର୍ଚ୍ଚ ୨୦୨୩ ମସିହା ବୁଧବାର Times of Indiaର ବିବରଣୀ ଅନୁସାରେ ୨୦୨୨-୨୩ ମସିହାରେ ନଭେମ୍ବର ମାସ ୧ ତାରିଖ, ୨୦୨୨ ମସିହାଠାରୁ ୨୦୨୩ ମାର୍ଚ୍ଚ ୧୫ ମଧ୍ୟରେ ଅଧିକ ନିଆଁ ଲାଗିଥିବା ବା ନିଆଁ ଲାଗି ପ୍ରଭାବିତ ହୋଇଥିବା ରାଜ୍ୟଗୁଡ଼ିକ କ୍ରମାନ୍ୱୟରେ ହେଉଛନ୍ତି (୧) ଓଡ଼ିଶା,(୨) ଆନ୍ଧ୍ର ପ୍ରଦେଶ, (୩) କର୍ଣ୍ଣାଟକ, (୪) ତେଲେଙ୍ଗାନା ଓ (୫) ଛତିଶଗଡ଼ ।




(ଓଡ଼ିଶା, ଆନ୍ଧ୍ର, ପ୍ରଦେଶ, କର୍ଣ୍ଣାଟକ, ତେଲେଙ୍ଗାନା ଓ ଛତିଶଗଡ଼)

*୨୦୨୨ ମସିହା ନଭେମ୍ବର ମାସ ୦୧ ତାରିଖରୁ ୨୦୨୩ ମସିହା ମାର୍ଚ୍ଚ ମାସ ୧୪ ତାରିଖ ମଧ୍ୟରେ (୨୦୨୨-୨୩) ବନାଗ୍ନି ଘଟିଥିବା ପାଞ୍ଚଟି ମୁଖ୍ୟ ରାଜ୍ୟ ।*

ଦ୍ୱିତୀୟତଃ ମାର୍ଚ୍ଚ ୭, ୨୦୨୩ ମସିହାଠାରୁ ସାତ ଦିନ ମଧ୍ୟରେ ବୃହତ୍ ବନାଗ୍ନି ରାଜ୍ୟଗୁଡ଼ିକ କ୍ରମାନ୍ୱୟରେ ହେଉଛନ୍ତି ଓଡ଼ିଶା, ମିଜୋରାମ, ଛତିଶଗଡ଼, ମଣିପୁର ଓ ଆନ୍ଧ୍ରପ୍ରଦେଶ ।




**(ମାର୍ଚ୍ଚ ମାସ ୭ ତାରିଖ, ୨୦୨୩ ଠାରୁ ଗତ ସାତଦିନ ମଧ୍ୟରେ ବନାଗ୍ନି ଘଟିଥିବା ମୁଖ୍ୟ ପାଞ୍ଚଟି ରାଜ୍ୟ)**

ବଡ଼ ଦୁଃଖ ଓ ପରିତାପର ବିଷୟ ଯେ, ମାର୍ଚ୍ଚ ମାସ ୧୪ ତାରିଖ ୨୦୨୩ର ଓଡ଼ିଶା ଉପରେ ଜଙ୍ଗଲ ସର୍ବେକ୍ଷଣ ସଂସ୍ଥାର ପର୍ଯ୍ୟବେକ୍ଷଣ ଅନୁଯାୟୀ ୧୪୭ଟି ବୃହତ୍ ଆକାରର ବନାଗ୍ନି ଘଟିଛି, ଯାହା ଅନ୍ୟ ରାଜ୍ୟ ତୁଳନାରେ ସର୍ବାଧିକ ଓ ବ୍ୟାପକ ମଧ୍ୟ ।

ସଂପ୍ରତି (୧୪.୦୩.୨୦୨୩) ଶିମିଳିପାଳର କପ୍ତିପଦା,ପିଠାବଟା, ବାଙ୍ଗିରିପୋଷି, ନିଗିରିଦା ଓ ଧୁଡୁରୁଚମ୍ପା ପରି ଆଭ୍ୟନ୍ତରୀଣ ଅଞ୍ଚଳରେ ହାରାହାରି ୨୪ ହେକ୍ଟର ପରିମିତ ଜଙ୍ଗଲ ନଷ୍ଟ ହୋଇଯାଇଛି । ମଙ୍ଗଳବାର ୧୪ ତାରିଖ ୨୦୨୩ ଦିନ ଶିମିଳିପାଳର ଉତ୍ତର ବନ୍ୟପ୍ରାଣୀ ବନଖଣ୍ଡର ୧୨ ଓ ଦକ୍ଷିଣ ବନ୍ୟପ୍ରାଣୀ ବନଖଣ୍ଡର ୧୧ ଏପରି ସମୁଦାୟ ୨୩ଟି ସ୍ଥାନରେ ନିଆଁ ଲାଗିଛି । କେବଳ ଦୈନିକ ବନାଗ୍ନିରେ ଓଡ଼ିଶା ପ୍ରଥମ ତା' ନୁହେଁ, ବରଂ ନଭେମ୍ବର ୧, ୨୦୨୨ରୁ ୧୦ ମାର୍ଚ୍ଚ ୨୦୨୩ ପର୍ଯ୍ୟନ୍ତ ଜଙ୍ଗଲ ନିଆଁ ମାମଲାକୁ ଦେଖିଲେ ବା ହିସାବକୁ ନେଲେ ଓଡ଼ିଶା ପ୍ରଥମ । ଓଡ଼ିଶାର ନୂଆପଡ଼ା, ମୟୂରଭଞ୍ଜ, କନ୍ଧମାଳ, ଦେବଗଡ଼, ରାୟଗଡ଼ା, ଗଞ୍ଜାମ, ଖୋର୍ଦ୍ଧା, ସମ୍ବଲପୁର, ବରଗଡ଼, ନୟାଗଡ଼, ବାଲେଶ୍ୱର, ଗଜପତି, ସୁନ୍ଦରଗଡ଼ ଓ ବୌଦ୍ଧ ଜିଲ୍ଲାର ଜଙ୍ଗଲଗୁଡ଼ିକ

ଜଳୁଥିବା ତଥ୍ୟ ସାଟେଲାଇଟ୍ ଛବି ଦ୍ୱାରା ପ୍ରତିଫଳିତ ଓ ଦୃଶ୍ୟମାନ । ୨୦୧୮ରୁ ୨୦୨୧ ପର୍ଯ୍ୟନ୍ତ ନିଆଁର ହିସାବ ସତରେ ସାଙ୍ଘାତିକ ।

**ସାରଣୀ ୨ : ବିଭିନ୍ନ ବର୍ଷରେ ନିଆଁ ଲାଗିଥିବା ସ୍ଥାନ**

| କ୍ରମିକ ସଂଖ୍ୟା | ମସିହା | ବନାଗ୍ନି ସଂଖ୍ୟା | ବନାଗ୍ନି ପରିମିତ ସ୍ଥାନ (ହେକ୍ଟରରେ) |
|---|---|---|---|
| ୧ | ୨୦୧୮ | ୩୧,୨୮୦ | ୯୭୩୦.୦୭ |
| ୨ | ୨୦୧୯ | ୧୯,୩୮୬ | ୭୧୨୪.୯୫ |
| ୩ | ୨୦୨୦ | ୧୧,୦୮୮ | ୨୦୭୦.୨୫ |
| ୪ | ୨୦୨୧ | ୫୭,୩୩୯ | ୨୮,୨୫୩.୧୭ |

### ବନାଗ୍ନିର ନିରାକରଣ ଓ ସମାଧାନ

ଜଙ୍ଗଲରେ ମାନବକୃତ ନିଆଁଲଗା ବେଶ୍ ଉଦ୍‌ବେଗଜନକ ଘଟଣା । ଏଥିପ୍ରତି ନିମ୍ନଲିଖିତ ତ୍ୱରିତ ପଦକ୍ଷେପ ଜରୁରୀ ।

(୧) ନିଆଁ ଲାଗିବାର ଜାଣିଲେ ବନ ବିଭାଗ ତତ୍‌କ୍ଷଣାତ୍ ପଦକ୍ଷେପ ନେବା ଆବଶ୍ୟକ ।

(୨) ଜଙ୍ଗଲରେ ପଡ଼ିଥିବା ଶୁଖିଲା ପତ୍ରଗୁଡ଼ିକୁ ଖରାଦିନ ଆରମ୍ଭ ପୂର୍ବରୁ ହଟାଇବା ବାଞ୍ଛନୀୟ ।

(୩) ଜଙ୍ଗଲରେ ଫାୟାର ଲାଇନ୍ ଖନନ କରିବା ସହିତ ପଡ଼ିଥିବା ଶୁଖିଲା ପତ୍ର ଓ କାଠିଘାସକୁ ଦୂର କରିବାର ବ୍ୟବସ୍ଥା କରାଯିବା ଶ୍ରେୟସ୍କର ।

(୪) ସେଠାରେ ଥିବା ବନ ସୁରକ୍ଷା ସମିତି ଓ ପରିପାର୍ଶ୍ୱ ବିକାଶ କମିଟି ସହିତ ବନ ବିଭାଗର ଉପଯୁକ୍ତ ଓ ଉତ୍ତମ ସମନ୍ୱୟ ଓ ସମ୍ପର୍କ ସହ ସହଯୋଗ କାମନା ଦ୍ୱାରା ବନାଗ୍ନିର ନିୟନ୍ତ୍ରଣ ରକ୍ଷା ସମ୍ଭବ ।

(୫) ଓଡ଼ିଶା ଜଙ୍ଗଲ ନିୟମ–୧୯୭୯ରେ (Odisha Forest (Fire Safety) Act, 1979)ଜଙ୍ଗଲରେ ନିଆଁ ଲଗାଇବା ଓ ଜଳନ୍ତା ନିଆଁକୁ ଛାଡ଼ି ଆସିବା ପରି କାର୍ଯ୍ୟ କରିବା ଜେଲ୍ ଓ ଜୋରିମାନା ପରି ଦଣ୍ଡ ବ୍ୟବସ୍ଥା ରହିଛି । ଏ ନିୟମ ଓ ଦଣ୍ଡ ବିଧାନକୁ କଡ଼ାକଡ଼ି ପାଳନ କରିବା ଉଚିତ , ଯାହା ଫଳରେ ବେନିୟମ କାର୍ଯ୍ୟଗୁଡ଼ିକୁ ନିୟନ୍ତ୍ରଣ କରିହେବ ।

(୬) ବନାଞ୍ଚଳ ଅଧିବାସୀମାନଙ୍କୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଜାନୁଆରୀ ଓ ଫେବୃଆରୀ ଦୁଇ ମାସ ଲଗାତର ସଚେତନ କରିବା ଆଶା କରାଯାଏ ।

କ) ବନ ବିଭାଗର ତୁରନ୍ତ ପଦକ୍ଷେପ

ଖ) ଶୁଖିଲା ପତ୍ର ଇତ୍ୟାଦିର ହଟାଇବା ବ୍ୟବସ୍ଥା

ଗ) ଫାୟାର ଲାଇନ୍‌ର ଖନନ

ଘ) ବନ ସୁରକ୍ଷା ସମିତି ଓ ପରିପାର୍ଶ୍ୱ ବିକାଶ ସମିତିର ସମନ୍ୱୟ

ଙ) ଉପଯୁକ୍ତ ଦଣ୍ଡ ବିଧାନ

ଚ) ସଚେତନତା କାର୍ଯ୍ୟକ୍ରମର ଦୃଢ଼ତା

### ବନାଗ୍ନି ନିୟନ୍ତ୍ରଣ ଦିଗରେ ସରକାରଙ୍କ ବଳିଷ୍ଠ ପଦକ୍ଷେପ

(୧) ଜଙ୍ଗଲର ପରିମାଣ ବେଶ୍ ଅଧିକ । ସରକାର ବନାଗ୍ନି ବିପଦରୁ ଜଙ୍ଗଲକୁ ସୁରକ୍ଷିତ କରିବା ଲାଗି ନିୟୋଜିତ କରିଛନ୍ତି ମାନବ ସମ୍ବଳ । ଆମ ରାଜ୍ୟରେ ୩ ହଜାରରୁ ଅଧିକ ବନ କର୍ମଚାରୀ, ୧୬ ହଜାରରୁ ଅଧିକ ବନ ସୁରକ୍ଷା ସମିତିଙ୍କ ସହ ୨୮୦ ସ୍ୱତନ୍ତ୍ର ଦଳ ଜଙ୍ଗଲ ନିଆଁ ରୋକିବାରେ ନିୟୋଜିତ ଓ ଉତ୍ସର୍ଗୀକୃତ । (୨) ବନାଗ୍ନି ପ୍ରଶମନ ନିମିତ୍ତ ଜଙ୍ଗଲ ସୀମାବର୍ତ୍ତୀ ଅଧିବାସୀଙ୍କ ରହଣି ସ୍ଥାନରେ ସଚେତନତା ସୃଷ୍ଟି କରିବା ଲାଗି ଏବଂ ସ୍ୱୟଂ ସହାୟିକା ଗୋଷ୍ଠୀଙ୍କୁ ଦାୟିତ୍ୱ ଦେଇଛନ୍ତି ସରକାର ।

(୩) ବନାଗ୍ନି ପାଇଁ ନିକଟସ୍ଥ ଜଙ୍ଗଲରେ ନିଆଁ ଲାଗିବା ଖବର ଦେଲେ ପାଞ୍ଚରୁ ଦଶ ହଜାର ଟଙ୍କା ପର୍ଯ୍ୟନ୍ତ ପୁରସ୍କାର ଦେବାର ବ୍ୟବସ୍ଥା କରାଯିବା ଏକ ତ୍ୱରିତ ପଦକ୍ଷେପର ବ୍ୟବସ୍ଥା ଆମ ରାଜ୍ୟ ସରକାରଙ୍କ ।

(୪) ଓଡ଼ିଶା ଜଙ୍ଗଲ ( ଅଗ୍ନି ସୁରକ୍ଷା ) ଅଧିନିୟମ ଅନୁଯାୟୀ ଜଙ୍ଗଲରେ ନିଆଁ ଲଗାଇବା ଓ ଜଳନ୍ତା ଜିନିଷକୁ ଛାଡ଼ି ଆସିବା ଦଣ୍ଡନୀୟ ଅପରାଧ । ଆଉ ଏ ଅପରାଧ

ପାଇଁ ଜେଲ୍ ଓ ଜୋରିମାନାର ପ୍ରଣୟନ ବେଶ୍ ପ୍ରଶଂସନୀୟ, ସ୍ପୃହଣୀୟ ଓ ଅଭିନନ୍ଦନୀୟ ପଦକ୍ଷେପ ।

(୫) ସ୍ଥାନୀୟ ଅଧିବାସୀ, ବନ ସୁରକ୍ଷା ସମିତି ଓ ଇକୋ ଡେଭେଲପ୍‌ମେଣ୍ଟ କମିଟି ମାଧ୍ୟମରେ ସଚେତନତା ସହ ସମନ୍ୱୟ ରଖିବାର ପଦକ୍ଷେପ ଆଉ ଏକ ନୂତନ ଓ ଅଭିନବ ପ୍ରୟାସ ଆମ ସରକାରଙ୍କର ।

(୬) ବିଶେଷକରି ଶିମିଳିପାଳ ବନାଗ୍ନି ପ୍ରତିରୋଧ ନିମିତ୍ତ ୧୯୯ ଜଣ ଫାୟାର ସ୍କ୍ୱାର୍ଡ଼ ଓ ୨୩୫ ଜଣ ସ୍ଥାନୀୟ ଲୋକଙ୍କୁ ଫାୟାର ୱାଚର ଭାବରେ ନିଯୁକ୍ତି ଦେବା ସହିତ ୩୯୫ଟି ନିଆଁ ଲିଭା ବ୍ଲୋୟର ସାହାଯ୍ୟରେ ନିଆଁଲିଭା କାର୍ଯ୍ୟ ସମ୍ପନ୍ନ କରାଯାଉଛି । ଏଥିସହ ଶିମିଳିପାଳ ସଦସ୍ୟ ଆଭ୍ୟନ୍ତର ଅଞ୍ଚଳରେ ୭ଟି ରେଞ୍ଜରେ ୨୧୦ ଜଣ ଜଙ୍ଗଲ ନିଆଁ ପରିଚାଳନା କର୍ମଚାରୀ ନିଯୁକ୍ତ ହେବା ସହ ଶିମିଳିପାଳ ଦକ୍ଷିଣ ବନ୍ୟପ୍ରାଣୀ ବନଖଣ୍ଡରେ ୧,୪୯୦ କି.ମି. ଫାୟାର ଲାଇନ୍ ପ୍ରସ୍ତୁତ ହୋଇଥିବା ବେଳେ ଉତ୍ତର ବନ୍ୟପ୍ରାଣୀ ବନଖଣ୍ଡରେ୧,୪୨୫ କି. ମି. ଫାୟାର ଲାଇନ୍ ସୃଷ୍ଟି ହୋଇଛି ବୋଲି ବିଭାଗ ତରଫରୁ ଜଣାପଡ଼େ । ପୁନଶ୍ଚ ମାନବକୃତ ନିଆଁଲିଭା କାର୍ଯ୍ୟ ସମ୍ପନ୍ନ ପାଇଁ ୪୩୪ ଜଣ ବ୍ୟକ୍ତିଙ୍କ ସହ ଜଙ୍ଗଲ ବିଭାଗର ପ୍ରାୟ ଦୁଇ ଶହ କ୍ଷେତ୍ର କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ଏହା ସତରେ ଆମ ସରକାରଙ୍କ ଉତ୍ତମ ପ୍ରୟାସ, ସାହସ ଓ ବିଶ୍ୱାସ ।

(୭) ବନାଗ୍ନି ଖବର ପାଇଁ ୨୪ ଘଣ୍ଟା ନିୟନ୍ତ୍ରଣ କକ୍ଷ କାର୍ଯ୍ୟରତ ।

**ଜଙ୍ଗଲ ଓ ଆମର ଭବିଷ୍ୟତ**

୍ଜଙ୍ଗଲ ଏପରି ଏକ ସୁନ୍ଦର ପ୍ରାକୃତିକ ସମ୍ପଦ, ଯେଉଁଠାରୁ ଆମକୁ ଆମର ସମସ୍ତ ଆବଶ୍ୟକ ଜିନିଷ ମିଳିଥାଏ ବଞ୍ଚିବା ପାଇଁ । ଆଦିମ ମଣିଷର ଜଙ୍ଗଲ ଥିଲା ଘର, ଜଙ୍ଗଲର ଚେର, ମୂଳ, ଫଳ, ଫୁଲ, କନ୍ଦ ଆଦି ଥିଲା ଆହାର, ଜଙ୍ଗଲର ପତ୍ର ଡାଳ ଥିଲା ପୋଷାକ ଆଉ ଜଙ୍ଗଲର ନଦୀ ଓ ଝରଣା ଜଳ ଥିଲା ପାନୀୟ । ଜଙ୍ଗଲ ବାସ୍ତବିକ ଅମ୍ଳଜାନର ପିଣ୍ଡ, ତାପ ନିୟନ୍ତ୍ରଣର ନିୟନ୍ତ୍ରକ, ଜଳ ଧାରଣର ଟାଙ୍କି ଓ ବୃଷ୍ଟିର ସ୍ରଷ୍ଟା । ଜଙ୍ଗଲ ଗଛ, ଘାସ, ବୁଦା, ଲତାଯୁକ୍ତ ଓ ତା' ମଧ୍ୟରେ ବିଚରଣ କରୁଥିବା ପ୍ରାଣୀହିଁ ଜୀବଜନ୍ତୁଙ୍କର ଆବାସସ୍ଥଳୀ । ଆଜି ଏ ଜଙ୍ଗଲ ହ୍ରାସ ହେତୁ ଜଙ୍ଗଲ ପରି ଜୀବଙ୍କର ବାସ ନ ଥିବାରୁ ହାତୀ, ଭାଲୁ, ମାଙ୍କଡ଼, ବାଘ ଆଦି ପ୍ରାଣୀ ମଣିଷ ବସତି ଆଡ଼କୁ ମୁହାଁଇ ମଣିଷମାନଙ୍କୁ ଆକ୍ରମଣ, କାମୁଡ଼ା ଓ ଦଳିଚକଟି ତଥା ବିଦାରି ମାରିଦେବାକୁ ପଛାଉ ନାହାନ୍ତି କି ଡରୁ ନାହାନ୍ତି । ସେମାନେ ବାସହରା ।

ସୁତରାଂ ସରକାର ଯେତେ ସଚେତନ, ସତର୍କ, ସାବଧାନ ଓ ସମନ୍ୱୟ ରଖି କାର୍ଯ୍ୟ କଲେ ମଧ୍ୟ ଆମେ ପ୍ରତ୍ୟେକ ବ୍ୟକ୍ତିଗତ ଭାବରେ ସଚେତନ ହେଲେ, ପ୍ରାକୃତିକ ଭାରସାମ୍ୟ ରକ୍ଷାକାରୀ ଓ ଆମମାନଙ୍କ ଜୀବନ ସୁରକ୍ଷାକାରୀ ଜଙ୍ଗଲକୁ ସୁରକ୍ଷିତ ରଖିଲେ ଆମେମାନେହିଁ ସୁରକ୍ଷିତ ରହିବା । ଏହାହିଁ ଜୀବନର ମନ୍ତ୍ର ଓ ସୂତ୍ର । ଜଙ୍ଗଲ ଥିଲେହିଁ ଆମେ ରହିପାରିବା । ସତରେ ଜଙ୍ଗଲ ହିଁ ମଙ୍ଗଲ ।

କୁଳପତି
ଖଲ୍ଲିକୋଟ ଏକକ ବିଶ୍ୱବିଦ୍ୟାଳୟ
ବ୍ରହ୍ମ ବିହାର, ବ୍ରହ୍ମପୁର, ଗଞ୍ଜାମ–୭୬୦୦୦୧



# ଭାରତୀୟ ପ୍ରାଚୀନ ଚିକିତ୍ସା ପଦ୍ଧତି : ଆୟୁର୍ବେଦ

ଡାକ୍ତର ମିନତି ମହାରଣା

ଭଗବାନ ଧନ୍ୱନ୍ତରୀଙ୍କ ପ୍ରବର୍ତ୍ତିତ ଆୟୁର୍ବେଦର ପ୍ରଚାର ଓ ପ୍ରସାର ନିମନ୍ତେ ଏବେ ସମଗ୍ର ବିଶ୍ୱରେ ଆୟୁର୍ବେଦ ଦିବସ ପାଳନ କରାଯାଉଛି । ଆମ ଦେଶ ଉଦ୍ୟମରେ ଆୟୁର୍ବେଦର ଲୋକପ୍ରିୟତା ଓ ଗ୍ରହଣୀୟତା ବିଶ୍ୱର ଶତାଧିକ ଦେଶରେ ବୃଦ୍ଧି ପାଇଛି । ଭଗବାନ ଧନ୍ୱନ୍ତରୀଙ୍କ ଜନ୍ମ ଦିବସକୁ 'ଆୟୁର୍ବେଦ ଦିବସ' ଭାବେ ପାଳନ କରାଯାଇଆସୁଛି । ଦେବତା ଓ ଅସୁରଙ୍କର ସମୁଦ୍ର ମନ୍ଥନ ବେଳେ ଶୁଭ୍ରବସ୍ତ୍ର ପରିହିତ ଧନ୍ୱନ୍ତରୀ ହାତରେ ଅମୃତ କଳସ ଧରି ଆବିର୍ଭୂତ ହୋଇଥିଲେ । ପୁରାଣ ଶାସ୍ତ୍ରରେ ଧନ୍ୱନ୍ତରୀଙ୍କୁ ଭଗବାନ ବିଷ୍ଣୁଙ୍କର ଏକ ଅବତାର ଭାବେ ବର୍ଣ୍ଣନା କରାଯାଇଛି । ମଣିଷକୁ ରୋଗଯନ୍ତ୍ରଣାରୁ ଉପଶମ ଦେବା ନିମନ୍ତେ ଭଗବାନ ଧନ୍ୱନ୍ତରୀ ଆବିର୍ଭୂତ ହୋଇ ଆୟୁର୍ବେଦର ପ୍ରବର୍ତ୍ତନ କରିଥିଲେ । ଚଳିତ ବର୍ଷ ନଭେମ୍ବର ୧୦ ତାରିଖରେ 'ବିଶ୍ୱ ଆୟୁର୍ବେଦ ଦିବସ' ପାଳନ କରାଯାଉଛି ।



ଆମ ଦେଶରେ ୨୦୧୬ ମସିହାରୁ 'ଆୟୁର୍ବେଦ ଦିବସ' ପାଳିତ ହୋଇଆସୁଛି । ସେହି ବର୍ଷ ଅଖିଳ ଭାରତ ଆୟୁର୍ବେଦ ସଂସ୍ଥା (All India Institute for Ayurved) ଉଦ୍‌ଘାଟିତ ହୋଇଥିଲା । ଆୟୁର୍ବେଦ ଦିବସ ପାଳନ ଅବସରରେ କେନ୍ଦ୍ର ସରକାର ପ୍ରତିବର୍ଷ ଜାତୀୟ ଧନ୍ୱନ୍ତରୀ ଆୟୁର୍ବେଦ ପୁରସ୍କାର ପ୍ରଦାନ କରିଥାନ୍ତି । ଚଳିତ ବର୍ଷ ଅଷ୍ଟମ ଆୟୁର୍ବେଦ ଦିବସ ପାଳନ ନିମନ୍ତେ କେନ୍ଦ୍ର ସରକାରଙ୍କ ଆୟୁଷ ମନ୍ତ୍ରାଳୟ ପକ୍ଷରୁ ବିଶେଷ ବ୍ୟବସ୍ଥାମାନ ଗ୍ରହଣ କରାଯାଇଛି । କାର୍ତ୍ତିକ ମାସ କୃଷ୍ଣ ପକ୍ଷ ତ୍ରୟୋଦଶୀ ତିଥିରେ ପ୍ରତିବର୍ଷ ଧନ୍ୱନ୍ତରୀ ଜୟନ୍ତୀ ଓ ଆୟୁର୍ବେଦ ଦିବସ ପାଳନ କରାଯାଇଆସୁଛି । ଏହି ଦିବସ କେବଳ ଭାରତବର୍ଷରେ ସୀମିତ ହୋଇ ରହିନାହିଁ । ବିଶ୍ୱର ବିଭିନ୍ନ ଦେଶରେ ଏହା ପାଳିତ ହେଉଛି । ଚଳିତ ବର୍ଷ ଅଷ୍ଟମ ଆୟୁର୍ବେଦ ଦିବସ ବିଶ୍ୱର ପ୍ରାୟ ଏକଶହ ଦେଶରେ ପାଳନ କରାଯାଉଛି । ଚଳିତବର୍ଷ ବିଶ୍ୱ ଆୟୁର୍ବେଦ ଦିବସ ପାଳନ ପରିପ୍ରେକ୍ଷୀରେ ତିନୋଟି ବର୍ଗ ଉପରେ ଧ୍ୟାନ ଦିଆଯାଇଛି– ଛାତ୍ରଛାତ୍ରୀଙ୍କ ପାଇଁ ଆୟୁର୍ବେଦ, କୃଷକମାନଙ୍କ ପାଇଁ ଆୟୁର୍ବେଦ ଓ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ପାଇଁ ଆୟୁର୍ବେଦ । ଏହାର ଅସଲ ଉଦ୍ଦେଶ୍ୟ ହେଉଛି ଆନ୍ତର୍ଜାତିକ ସ୍ତରରେ ଆୟୁର୍ବେଦ ଜ୍ଞାନର ପ୍ରସାର ଏବଂ ମଣିଷ, ପଶୁ, ଉଦ୍ଭିଦ ଓ ପରିବେଶର କଲ୍ୟାଣରେ ଆୟୁର୍ବେଦର ଉପଯୋଗ । ଚଳିତ ବର୍ଷ ଆୟୁର୍ବେଦ ଦିବସର ବାର୍ତ୍ତା ହେଉଛି – 'ପ୍ରତ୍ୟେକଙ୍କ ପାଇଁ

ପ୍ରତ୍ୟେକ ଦିନ ଆୟୁର୍ବେଦ' (Ayurved for everyone everyday) । କେନ୍ଦ୍ର ସରକାରଙ୍କ ପ୍ରତ୍ୟେକ ମନ୍ତ୍ରାଳୟର ସହଯୋଗ ଓ ସମର୍ଥନରେ ଚଳିତବର୍ଷ ଆୟୁର୍ବେଦକୁ ଦେଶ ବିଦେଶରେ ଏକ ଉନ୍ନତ ସୋପାନରେ ପହଂଚାଇବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

ଚଳିତ ବର୍ଷ ଆୟୁର୍ବେଦ ଦିବସ ପାଳନ ପରିପ୍ରେକ୍ଷୀରେ କୃଷିଭିତ୍ତିକ ଆୟୁର୍ବେଦର ବିକାଶ, ଏହି ପ୍ରକ୍ରିୟାରେ ଜନତାଙ୍କ ଅଂଶଗ୍ରହଣ ଦ୍ୱାରା ସ୍ୱାସ୍ଥ୍ୟ ସଚେତନତାର ବିକାଶ ତଥା ଆୟୁର୍ବେଦର ସମସ୍ତ ପ୍ରକାର ଉପଯୋଗିତାକୁ ତ୍ୱରାନ୍ୱିତ କରାଯାଇ ଜନସେବାରେ ପ୍ରୟୋଗ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ସମଗ୍ର ବିଶ୍ୱରେ ଭାରତର ଏହି ପ୍ରାଚୀନ ପାରମ୍ପରିକ ନିଦାନ ବ୍ୟବସ୍ଥାର ମହତ୍ତ୍ୱ ଓ ଆବଶ୍ୟକତା ଯେ ସଂପ୍ରତି ଆଧୁନିକ ଭେଷଜ ବିଜ୍ଞାନ ଯୁଗରେ ରହିଛି, ଏହି ତତ୍ତ୍ୱର ପ୍ରଚାର ଓ ପ୍ରସାର ହିଁ ଆୟୁର୍ବେଦ ଦିବସର ଆଭିମୁଖ୍ୟ, ଏଥିରେ ଦ୍ୱିମତ ନାହିଁ । ଭାରତର ପ୍ରାଚୀନ ଔଷଧୀୟ ବ୍ୟବସ୍ଥା ଓ ଚିକିତ୍ସା ପଦ୍ଧତି ଆୟୁର୍ବେଦ ଏବେ ସମଗ୍ର ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି ।

ଆୟୁର୍ବେଦ ଚିକିତ୍ସା ବିଜ୍ଞାନର ପରିସର ଯେତିକି ବ୍ୟାପକ, ଏହାର ପରମ୍ପରା ସେତିକି ବଳିଷ୍ଠ ଓ ଗୌରବମୟ ଅଟେ । ଆୟୁର୍ବେଦ ଚିକିତ୍ସାର ଏହି ପରମ୍ପରା ୫୦୦୦ ବର୍ଷ ପ୍ରାଚୀନ ବୋଲି ଆଧୁନିକ ଚିକିତ୍ସା ବିଜ୍ଞାନ ମନେକରେ, କିନ୍ତୁ ବେଦ ତଥା ହିନ୍ଦୁକାଳ ଗଣନା ଅନୁସାରେ ଏହାର ପରମ୍ପରା ଲକ୍ଷାଧିକ ବର୍ଷ ପ୍ରାଚୀନ । 'ରାମାୟଣ'ର ଲଙ୍କାକାଣ୍ଡରେ ବର୍ଣ୍ଣିତ ଲକ୍ଷ୍ମଣଙ୍କ ଶକ୍ତିଭେଦ ପ୍ରସଙ୍ଗରେ ଯୁଦ୍ଧରେ ମୃତ ସମାନ ମୂର୍ଚ୍ଛିତ ଲକ୍ଷ୍ମଣଙ୍କୁ ବୈଦ୍ୟ ସୁଷେଣଙ୍କ ସଞ୍ଜୀବନୀ ବୁଟି ପ୍ରୟୋଗ ଦ୍ୱାରା ପୁନର୍ଜୀବିତ କରିଥିବାର ଉଲ୍ଲେଖରୁ ସେ କାଳରେ ଆୟୁର୍ବେଦର ପ୍ରଚଳନ ସମ୍ବନ୍ଧରେ ପ୍ରମାଣ ଦିଏ । ସମୟର ଅଶେଷ ଉତ୍‌ଥାନ ପତନ ମଧ୍ୟରେ ଗତି କରି ଆୟୁର୍ବେଦ ଚିକିତ୍ସାର ପ୍ରଚଳନ ଆଧୁନିକ ଏଲୋପାଥି ଚିକିତ୍ସାର ପ୍ରସାର ଯୋଗୁଁ ବିଗତ ଶତାବ୍ଦୀରେ କମିଯାଇଥିଲେ ମଧ୍ୟ ଏହାର ଲୋକପ୍ରିୟତା ଓ ଗ୍ରହଣୀୟତା ପୂର୍ବବତ୍ ରହିଛି। ଆଧୁନିକ ଡାକ୍ତରୀ ଔଷଧର ବହୁଳ ପ୍ରୟୋଗ ଯୋଗୁଁ ଦେଖାଦେଉଥିବା ପାର୍ଶ୍ୱ ପ୍ରତିକ୍ରିୟାଜନିତ କୁପ୍ରଭାବ (Side effect), ବ୍ୟୟବହୁଳତା ଏବଂ କେତେକ ବିଶେଷ ଅଂଚଳ ମୁଖ୍ୟତଃ ଗମନାଗମନ ଓ ପରିବହନ ସୁବିଧା ନଥିବା ଦୁର୍ଗମ ଅଂଚଳମାନଙ୍କରେ ଏବେ ଏହାର ଅନୁପଲବ୍ଧତା ପ୍ରଭୃତି କାରଣରୁ ବିକଳ୍ପ ଔଷଧ (Alternative medicne) ରୂପେ ସହଜ ଉପଲବ୍ଧ ଆୟୁର୍ବେଦ ଔଷଧଗୁଡ଼ିକର ଚାହିଦା ବୃଦ୍ଧି ପାଇବାରେ ଲାଗିଛି । ସମ୍ପ୍ରତି ଉଭୟ ଦେଶୀୟ ଓ ଆନ୍ତର୍ଜାତୀୟ ବଜାରରେ ବିଭିନ୍ନ ପ୍ରକାର କୃତ୍ରିମ ସାମଗ୍ରୀ ପରିବର୍ତ୍ତେ ବିଭିନ୍ନ ପ୍ରକାର ହର୍ବାଲ ସାମଗ୍ରୀର ଉପଭୋକ୍ତାଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଉଥିବାର ପରିଲକ୍ଷିତ ହେଉଛି । ସୁତରାଂ ଆଗାମୀ ଦିନମାନଙ୍କରେ ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଆୟୁର୍ବେଦ ଯେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିବ, ଏଥିରେ ସନ୍ଦେହ ନାହିଁ ।

ଏକବିଂଶ ଶତାବ୍ଦୀରେ ଉପନୀତ ମାନବ ସମାଜ ପାଇଁ ଜଳ, ବାୟୁ, ମୃତ୍ତିକା ପ୍ରଦୂଷଣ, ବିଭିନ୍ନ ପ୍ରକାରର ରୋଗ ଜୀବାଣୁ ସଂକ୍ରମଣ, ଦାରିଦ୍ର୍ୟ କାରଣରୁ ଭାରତ ଭଳି ବିକାଶଶୀଳ ଦେଶମାନଙ୍କରେ ଖାଦ୍ୟାଭାବଜନିତ ଅପପୁଷ୍ଟି ରୋଗ ଭୋଗୁଥିବା ଜନସାଧାରଣଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ଛୋଟବଡ଼ ରୋଗ ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ମୁଖ୍ୟ ପ୍ରତିବନ୍ଧକ ହେଉଛି । ଏଥିପାଇଁ ଚିକିତ୍ସା ସୁବିଧା ସହ ଆବଶ୍ୟକ ହେଉଛି ଏହିସବୁ ଜଟିଳ ରୋଗ ବ୍ୟାଧିର କାରଣ ଓ ନିବାରଣ ତଥା ପ୍ରତିକାର ସମ୍ବନ୍ଧୀୟ ଜ୍ଞାନର ପ୍ରଚାର ପ୍ରସାର ଓ ବ୍ୟାପକ ସ୍ୱାସ୍ଥ୍ୟ ସଚେତନତା ସୃଷ୍ଟି କରିବା ।

ଏହି ପରିପ୍ରେକ୍ଷୀରେ ଜନସାଧାରଣଙ୍କ ମଧ୍ୟରେ ଆୟୁର୍ବେଦ ସ୍ୱାସ୍ଥ୍ୟ ଜ୍ଞାନର ପ୍ରଚାର –ପ୍ରସାର ସହିତ ବିଭିନ୍ନ ରୋଗ ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏହି ସବୁ ରୋଗର ଉତ୍ପତ୍ତିର କାରଣ, ରୋଗର ଲକ୍ଷଣ, ରୋଗର ବିଭିନ୍ନ ଉପସର୍ଗ, ସରଳ ଚିକିତ୍ସା ତଥା ପ୍ରତିକାର ଉପାୟ ଇତ୍ୟାଦି ସ୍ୱାସ୍ଥ୍ୟଜ୍ଞାନ ବିଷୟରେସ୍ୱାସ୍ଥ୍ୟପ୍ରେମୀମାନଙ୍କୁ ଅବଗତ କରାଇବାର ଆବଶ୍ୟକତା ରହିଛି ।

ସମଗ୍ର ସୃଷ୍ଟିରେ କେବଳ ମନୁଷ୍ୟ ହିଁ ଏକମାତ୍ର ପ୍ରାଣୀ ଯାହାର ବୁଦ୍ଧି, ବିବେକ, ଭାବନା, ଅଭିଳାଷ, ମହତ୍ତ୍ୱାକାଂକ୍ଷା, ଅଭାବବୋଧ ଓ ସଚେତନତା ଜ୍ଞାନ ରହିଛି । ପଶୁ ଓ ଅନ୍ୟପ୍ରାଣୀଙ୍କଠାରେ ଏହା ପରିଲକ୍ଷିତ ହୁଏ ନାହିଁ । ଏହି ଦୃଷ୍ଟିରୁ ପ୍ରତ୍ୟେକ ମନୁଷ୍ୟର ତିନିଗୋଟି ଅନ୍ତର୍ନିହିତ ଇଚ୍ଛା ବା କାମନା ରହିଛି, ଯଥା – ଅମରତ୍ୱର ଇଚ୍ଛା, ଅଜରତ୍ୱର ଇଚ୍ଛା ଏବଂ ଐଶ୍ୱର୍ଯ୍ୟର ଇଚ୍ଛା । ପ୍ରଥମତଃ ଅମରତ୍ୱ ପ୍ରାପ୍ତି କୌଣସି ସମୟରେ ସମ୍ଭବ ନୁହେଁ । ଦ୍ୱିତୀୟରେ ଅଜରତ୍ୱର କାମନା । ଜରତ୍ୱର ଅର୍ଥ ବାର୍ଦ୍ଧକ୍ୟ ବା ବୃଦ୍ଧାବସ୍ଥା ଜନିତ ସନ୍ତାପ । ଏହା ଏକ ନିଶ୍ଚିତ ସତ୍ୟ ଯେ ଜରତ୍ୱ ବା ବାର୍ଦ୍ଧକ୍ୟକୁ କେହି ଇଚ୍ଛା କରିନଥାନ୍ତି, କାରଣ ଏହା ଦୁଃଖର ସ୍ୱରୂପ ହୋଇଥାଏ । ତେଣୁ ମାନବ ଅଜରତ୍ୱ ଇଚ୍ଛା କରିଥାଏ । ତୃତୀୟରେ, ମନୁଷ୍ୟର ଆଉ ଏକ ଚରମ ଅନ୍ତର୍ନିହିତ ଅଭିଳାଷ ହେଉଛି ଐଶ୍ୱର୍ଯ୍ୟର କାମନା । ସଂସାରରେ ଜରାବସ୍ଥା ସଦୃଶ ରୋଗ ବ୍ୟାଧି, କ୍ଷୁଧା-ଉପବାସ, ଶୀତ-ଉଷ୍ଣ ଏବଂ ଯାବତୀୟ ଦୁଃଖ –କଷ୍ଟ ମନୁଷ୍ୟ ଜୀବନରେ ଆସିଥାଏ । ଏହି ସାଂସାରିକ ଦୁଃଖ ଐଶ୍ୱର୍ଯ୍ୟ ପ୍ରାପ୍ତି ହେଲେ ପ୍ରଶମିତ ହୋଇଥାଏ । ସୁତରାଂ ମନୁଷ୍ୟ ଅମରତ୍ୱ ଓ ଅଜରତ୍ୱ କାମନା କଲେ ମଧ ତାହା ଫଳବତୀ ହୋଇପାରେ ନାହିଁ । କିନ୍ତୁ ମନୁଷ୍ୟ ଇଚ୍ଛା କଲେ ଅମରତ୍ୱ ପରିବର୍ତ୍ତେ ଏକ ସୁଦୀର୍ଘ ନିରାମୟ ଜୀବନ ଅତିବାହିତ କରିପାରିବ ଏବଂ ବାର୍ଦ୍ଧକ୍ୟାବସ୍ଥାକୁ ପ୍ରତିହତ କରାଯାଇପାରିବ । ଏହି ଆଭିମୁଖ୍ୟର ସଫଳ ରୂପାୟନ ହେବା କ୍ଷେତ୍ରରେ ଆମ ଦେଶର ସୁମହାନ୍ ଚିକିତ୍ସା ବିଜ୍ଞାନ ତଥା ବିଶ୍ୱର ପ୍ରାଚୀନତମ ଚିକିତ୍ସା ଶାସ୍ତ୍ର ''ଆୟୁର୍ବେଦ'' ସବୁ ସମୟରେ, ସବୁ ଯୁଗରେ ଏକ ବଳିଷ୍ଠ ଦିଗ୍‌ଦର୍ଶନ ଦେଇଆସିଛି । ଭାରତୀୟ ସଂସ୍କୃତିରେ ମନୁଷ୍ୟର ଚାରିଗୋଟି ଆବଶ୍ୟକତା ବା ପୁରୁଷାର୍ଥ ଚତୁଷ୍ଟୟ – ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ଜୀବନର ସର୍ବୋତ୍କୃଷ୍ଟ ଲକ୍ଷ୍ୟ ରୂପେ ବିବେଚନା କରାଯାଇଛି । ପ୍ରତ୍ୟେକ ମନୁଷ୍ୟଙ୍କ ପାଇଁ ଏହା ହିଁ ହେଉଛି ଜୀବନର ସର୍ବୋତ୍ତମ ଆଭିମୁଖ୍ୟ । ତେବେ ଏହି ପୁରୁଷାର୍ଥ ଚତୁଷ୍ଟୟ ପ୍ରାପ୍ତି ମୂଳରେ ରହିଛି ସୁସ୍ଥ ଓ ଦୀର୍ଘ ଜୀବନ । ଏହି ସମ୍ପର୍କରେ ଶାସ୍ତ୍ର କହେ :-

''ଧର୍ମାର୍ଥକାମମୋକ୍ଷାଣାଂ ଆରୋଗ୍ୟଂ ମୂଳମୁତମମ୍ ।
ରୋଗସ୍ଥସ୍ୟାପହର୍ତାରଃ ଶ୍ରେୟସୋ ଜୀବିତରସ୍ୟ ଚ ।।''

ଅର୍ଥାତ୍ ଧର୍ମ, ଅର୍ଥ, କାମ ତଥା ମୋକ୍ଷ – ଏହି ଚାରିଗୋଟି ମୌଳିକ ତଥା ଅନ୍ତିମ ଲକ୍ଷ୍ୟର ପ୍ରାପ୍ତି କେବଳ ନୀରୋଗ ଶରୀର ଦ୍ୱାରା ହିଁ ସମ୍ଭବ । ତେଣୁ ପ୍ରତ୍ୟେକ ମନୁଷ୍ୟ ଜୀବନରେ ଦୀର୍ଘାୟୁ ଓ ଆରୋଗ୍ୟ ପ୍ରାପ୍ତି ନିମନ୍ତେ ପ୍ରଯତ୍ନ କରିବା ଉଚିତ । ପୁନଶ୍ଚ, ସୁସ୍ଥ ଶରୀରର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ କୁହାଯାଇଛି – ''ଶରୀର ମାଦ୍ୟଂ ଖଳୁଧର୍ମ ସାଧନମ୍ ।'' ଅର୍ଥାତ୍ ଶରୀର, ମାନବ ଜୀବନର ସମସ୍ତ କାର୍ଯ୍ୟକୁ ସମ୍ପାଦିତ କରିବା ଦିଗରେ ପ୍ରମୁଖ ଧର୍ମ ସାଧନ ଅଟେ । ତେଣୁ ସୁସ୍ଥ ଶରୀର ଓ ଦୀର୍ଘ ଜୀବନ ହିଁ ପ୍ରାଣୀ ମାତ୍ରକେ ଚରମ ଲକ୍ଷ୍ୟ ଓ ଅନିବାର୍ଯ୍ୟ ଆବଶ୍ୟକତା ଅଟେ । ତେବେ ସ୍ୱତଃ ପ୍ରଶ୍ନ ଆସେ ଯେ ମନୁଷ୍ୟର ଆରୋଗ୍ୟ ଓ ଦୀର୍ଘ ଆୟୁପ୍ରାପ୍ତିର ବାସ୍ତବ ବା ଯଥାର୍ଥ ମାର୍ଗ କ'ଣ? ଅର୍ଥାତ୍ ମନୁଷ୍ୟ ଦୀର୍ଘାୟୁଷ ବା ଶତାୟୁଷ ତଥା ନିରାମୟ ଜୀବନ କିପରି ପ୍ରାପ୍ତ କରିପାରିବ ? ଏହାର ଏକମାତ୍ର ସାଧନ ହେଉଛି ଆୟୁର୍ବେଦ, ଯାହାକି ଆୟୁ ସମ୍ପର୍କିତ ବିଜ୍ଞାନ (Sciecne of Life) ଅଟେ ଏବଂ ଏହାର ଉପଦେଶ ଓ ନିର୍ଦ୍ଦେଶରେ ପରିଚାଳିତ ହୋଇ ମନୁଷ୍ୟ ନିଶ୍ଚିତ ଭାବେ ଦୀର୍ଘାୟୁ ପ୍ରାପ୍ତି କରିପାରିବ ।

ଆୟୁର୍ବେଦ ହିଁ ସମସ୍ତ ଚିକିତ୍ସା ବିଜ୍ଞାନର ମୂଳଭିତ୍ତି, ଏହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ସମୟ ପ୍ରବାହର ବିଭିନ୍ନ ଉତ୍‌ଥାନ ପତନ ମଧ୍ୟରେ, କାଳର ଘାତ-ପ୍ରତିଘାତ ମଧ୍ୟରେ ଭାରତର ମହାନ୍ ଆୟୁର୍ବେଦ ଚିକିତ୍ସା ବିଜ୍ଞାନ ସବୁ ସମୟରେ ମନୁଷ୍ୟର ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଏକ ଯୁଗୋପଯୋଗୀ ଭୂମିକା ନିର୍ବାହ କରିଆସିଛି । ସମ୍ପ୍ରତି ବିଭିନ୍ନ କାରଣରୁ କେବଳ ଭାରତ କାହିଁକି, ସମଗ୍ର ବିଶ୍ୱରେ ଏହାର ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଛି ।

ସର୍ବପ୍ରଥମେ ଭଗବାନ ଧନ୍ୱନ୍ତରୀ ଯେଉଁ ଆୟୁର୍ବେଦକୁ ଦେବଗଣଙ୍କୁ ପ୍ରଦାନ କରିଥିଲେ ତାହା ବ୍ରହ୍ମାଙ୍କ ନିକଟରେ ରହିଥିଲା । ବ୍ରହ୍ମା ତାହାକୁ ପାଞ୍ଚ ଭାଗରେ ବିଭକ୍ତ କରି ଦକ୍ଷ ପ୍ରଜାପତିଙ୍କୁ ଶିକ୍ଷା ଦେଇଥିଲେ । ପରେ ଦକ୍ଷ

ପ୍ରଜାପତି ସୂର୍ଯ୍ୟବଂଶସମ୍ଭୂତ ବିଦ୍ୱାନ୍ ଅଶ୍ୱିନୀ କୁମାରଦ୍ୱୟଙ୍କୁ ଏହି ଆୟୁର୍ବେଦ ଶିକ୍ଷା ପ୍ରଦାନ କରିଥିଲେ । ଏହି ଅଶ୍ୱିନୀ କୁମାରଦ୍ୱୟ ସ୍ୱର୍ଗର ଦେବଗଣଙ୍କ ଚିକିତ୍ସକ ଥିଲେ । ଶାସ୍ତ୍ରରେ ଉଲ୍ଲେଖ ରହିଛି – ଯେତେବେଳେ ରୁଦ୍ର କ୍ରୋଧାନ୍ୱିତ ହୋଇ ବ୍ରହ୍ମାଙ୍କ ମସ୍ତକ ଛେଦନ କରିଥିଲେ ସେହି ଛିନ୍ନ ମସ୍ତକକୁ ଅଶ୍ୱିନୀ କୁମାରଦ୍ୱୟ ଏହି ଆୟୁର୍ବେଦ ଚିକିତ୍ସା ଦ୍ୱାରା ସଂଯୋଗ କରିଥିଲେ । ଆୟୁର୍ବେଦ ବିଦ୍ୟାର ଏହି ଚମତ୍କାରିତାକୁ ଦେଖି ଦେବରାଜ ଇନ୍ଦ୍ର ଅଶ୍ୱିନୀ କୁମାରଦ୍ୱୟଙ୍କଠାରୁ ଏହି ଚିକିତ୍ସା ବିଦ୍ୟା ଶିକ୍ଷା କରିଥିଲେ । ଏହି ପର୍ଯ୍ୟନ୍ତ ଆୟୁର୍ବେଦ ସ୍ୱର୍ଗରାଜ୍ୟରେ ସୀମିତ ଥିଲା ।

ଧରାପୃଷ୍ଠରେ ଯେତେବେଳେ ମୁନିଋଷିମାନଙ୍କ ଶରୀର ରୋଗ ଦ୍ୱାରା ଆକ୍ରାନ୍ତ ହେଲା, ସେତେବେଳେ ତାଙ୍କର ନିତ୍ୟ ନୈମିତ୍ତିକ ଯଥା– ବେଦାଧ୍ୟୟନ, ତପସ୍ୟା ଓ ଧର୍ମ କାର୍ଯ୍ୟରେ ବାଧା ସୃଷ୍ଟି କଲା । ଏହାର ପ୍ରତିକାର ପାଇଁ ସମସ୍ତ ମୁନିଋଷିଗଣ ମିଳିତ ହୋଇ ହିମାଳୟ ପାଦଦେଶରେ ଏକ ସମ୍ମେଳନ ଡକାଇଲେ । ସେଠାରେ ସମସ୍ତେ ମତବ୍ୟକ୍ତ କଲେ ଯେ ଚତୁର୍ବର୍ଗ ସାଧନା ମାନବର ମୂଳ ଲକ୍ଷ୍ୟ । ଏହି ଧର୍ମ, ଅର୍ଥ, କାମ, ମୋକ୍ଷ ଶରୀର ମାଧ୍ୟମରେ ସାଧନ ହୋଇଥାଏ । ଶରୀର ରୋଗଗ୍ରସ୍ତ ହେଲେ ଚତୁର୍ବର୍ଗ ସାଧନ ହୋଇପାରେ ନାହିଁ । ତେଣୁ ଏହାର ପ୍ରତିକାର ନିହାତି ଆବଶ୍ୟକ । ଶେଷରେ ମହର୍ଷି ଭରଦ୍ୱାଜ ଧ୍ୟାନରେ ଉପବିଷ୍ଟ ହୋଇ ଜାଣିବାକୁ ପାଇଲେ ଯେ ଅତ୍ୟନ୍ତ ପୀଡ଼ାଦାୟକ ରୋଗବ୍ୟାଧି ଉପଶମ ପାଇଁ ଆୟୁର୍ବେଦ ବିଦ୍ୟା ସ୍ୱର୍ଗର ଇନ୍ଦ୍ରଙ୍କ ପାଖରେ ରହିଛି । ଏହା ଶୁଣି ସମସ୍ତ ମୁନିଋଷିଗଣଙ୍କ ସହିତ ଭରଦ୍ୱାଜ ସ୍ୱର୍ଗପୁର ଯାଇ ଇନ୍ଦ୍ରଙ୍କଠାରୁ ଆୟୁର୍ବେଦର ତିନିସୂତ୍ର (ହେତୁ, ଲିଙ୍ଗ, ଔଷଧ) ବିଦ୍ୟା ଆହରଣ କଲେ । ଏହା ପରେ ଭରଦ୍ୱାଜ ମୁନି ମର୍ତ୍ତ୍ୟପୁରକୁ ଆସି ''ଭରଦ୍ୱାଜ ତନ୍ତ୍ର'' ନାମକ ଆୟୁର୍ବେଦ ଶାସ୍ତ୍ର ରଚନା କଲେ ଏବଂ ପୁନର୍ବସୁ ଆତ୍ରେୟଙ୍କୁ ଶିଷ୍ୟ ରୂପେ ଗ୍ରହଣ କରି ଏହି ଆୟୁର୍ବେଦ ଶିକ୍ଷା ପ୍ରଦାନ କଲେ । ପୁନର୍ବସୁ ଆତ୍ରେୟ ନିଜ ନାମାନୁସାରେ ''ଆତ୍ରେୟ ସଂହିତା'' ପ୍ରଣୟନ କଲେ ଏବଂ ତାଙ୍କର ଛଅଜଣ ଶିଷ୍ୟଙ୍କୁ ଆୟୁର୍ବେଦ ଶିକ୍ଷା ପ୍ରଦାନ କଲେ । ସେହି ଛଅଜଣ ଶିଷ୍ୟ ହେଲେ – ଅଗ୍ନିବେଶ, ଭେଳ, ତତକର୍ଣ୍ଣ, ପରାଶର, ହାରିତ ଓ କ୍ଷାରପାଣି ନାମରେ ପରିଚିତ । ଏମାନେ ସମସ୍ତେ ଗୋଟିଏ ଗୋଟିଏ ତନ୍ତ୍ର ରଚନା କରିଥିଲେ । ତହା ମଧ୍ୟରୁ ଅଗ୍ନିବେଶ କୃତ ତନ୍ତ୍ର ଶ୍ରେଷ୍ଠ ବିବେଚିତ ହୋଇଥିଲା । ପରବର୍ତ୍ତୀ ସମୟରେ ସେହି ତନ୍ତ୍ର ମହର୍ଷି ଚରକଙ୍କ ଦ୍ୱାରା ସଂସ୍କାରିତ ହୋଇ ଚରକ ସଂହିତା ନାମରେ ପରିଚିତ ଓ ପ୍ରସିଦ୍ଧ ହୋଇଛି । ବର୍ତ୍ତମାନ ଆୟୁର୍ବେଦ ବିଦ୍ୟାରେ 'ଚରକ ସଂହିତା ଓ ସୁଶ୍ରୁତ ସଂହିତା' ନାମକ ଦୁଇଟି ମୁଖ୍ୟ ଗ୍ରନ୍ଥ ରୂପେ ବିବେଚିତ ହୋଇଛି । ଯେଉଁ ପ୍ରାଚୀନ ମହର୍ଷିଗଣ ସମୁଦାୟ ଚିକିତ୍ସା ଶାସ୍ତ୍ରକୁ ୮ ଭାଗରେ ବିଭକ୍ତ କରିଥିଲେ ବର୍ତ୍ତମାନ ତାହା ମଧ୍ୟ ୮ଗୋଟି ଅଙ୍ଗ ରୂପେ ସ୍ୱୀକୃତ ହୋଇଛି । ଯଥା – ଶଲ୍ୟ ଚିକିତ୍ସା, ଶାଲକ୍ୟ ଚିକିତ୍ସା, କାୟ ଚିକିତ୍ସା, ସ୍ତ୍ରୀରୋଗ ଓ କୌମାରଭୃତ୍ୟ, ଭୂତ ବିଦ୍ୟା, ଅଗଦ ତନ୍ତ୍ର, ରସାୟନ ଓ ବାଜୀକରଣ ନାମରେ ପରିଚିତ ।

୧. ଶଲ୍ୟ ଚିକିତ୍ସାରେ ବହୁବିଧ ଶସ୍ତ୍ର, ଅଗ୍ନିକର୍ମ ଓ କ୍ଷାରକର୍ମ ଦ୍ୱାରା ବ୍ରଣ ଶୋଥର ଚିକିତ୍ସା କରିବା ବ୍ୟବସ୍ଥା ରହିଛି ।

୨. ଶାଲ୍ୟକ ଚିକିତ୍ସାରେ ଗ୍ରୀବାର ଉପର ଭାଗରେ ଥିବା ଚକ୍ଷୁ କର୍ଣ୍ଣ ନାସା ଦନ୍ତ ଓ ମସ୍ତକରେ ବିକାର ଏବଂ ସେହିସବୁ ଚିକିତ୍ସାରେ ବ୍ୟବହୃତ ବିବିଧ ଧାତୁ ନିର୍ମିତ ଶଲାଙ୍କ ଅଭ୍ୟଙ୍ଗ, ଗଣ୍ଡୁଧାରଣ ଓ ଶିଳକା ଦ୍ୱାରା ଦାହ କର୍ମ ଇତ୍ୟାଦିର ବର୍ଣ୍ଣନା କରଯାଇଛି ।

୩. କାୟ ଚିକିତ୍ସାରେ ସମ୍ପୂର୍ଣ୍ଣ ଶରୀର ସମ୍ବନ୍ଧୀୟ ବିକାର, ବିଭିନ୍ନ ରୋଗର ନିଦାନ, ଲକ୍ଷଣ, ଉପଦ୍ରବ, ସାଧ୍ୟ ଅସାଧ୍ୟର ବିଚାର ଓ ଚିକିତ୍ସା ବିଷୟରେ ବର୍ଣ୍ଣିତ ହୋଇଛି ।

୪. ସ୍ତ୍ରୀରୋଗ ଓ କୌମାର ଭୃତ୍ୟରେ ସମସ୍ତ ପ୍ରକାର ସ୍ତ୍ରୀ ରୋଗର ବର୍ଣ୍ଣନା ସହିତ ଶିଶୁ ଜନ୍ମ ଓ ପାଳନ, କ୍ଷର ଦୋଷ, ଗ୍ରହଦୋଷର ବର୍ଣ୍ଣନା ଓ ତାହାର ପ୍ରତିକାର ପାଇଁ ମନ୍ତ୍ର ଔଷଧର ବର୍ଣ୍ଣନା କରାଯାଇଛି ।

୫. ଭୂତ ବିଦ୍ୟାରେ – ଦେବତା, ଅସୁର, ଗନ୍ଧର୍ବ, ପିଶାଚ ଭୂତ, ପ୍ରେତ, ଯକ୍ଷ ଓ ବେତାଳ ଇତ୍ୟାଦି ଦେବ ଯୋନି ଏବଂ ଶରୀରଧାରୀ ପ୍ରାଣୀମାନଙ୍କର ପରିଚୟ ଏବଂ ସେମାନଙ୍କ ଦ୍ୱାରା ଆକ୍ରାନ୍ତ ରୋଗର ଲକ୍ଷଣ ତଥା ସେସବୁ ଦୂର କରିବାର ଉପାୟ ବର୍ଣ୍ଣନା କରାଯାଇଛି ।

୬. ଆଗଦ ତନ୍ତ୍ରରେ କୁକୁର, ଶୃଗାଳ, ସର୍ପ, ବିଛା ଇତ୍ୟାଦି ଜୀବଜନ୍ତୁ ଆକ୍ରମଣଜନିତ ବିଷକାରକ ଲକ୍ଷଣ, ସ୍ଥାବର ଜଙ୍ଗମ ବିଷ ନିରୂପଣ ଓ ଚିକିତ୍ସା ବ୍ୟବସ୍ଥା ସହିତ ସଂଯୋଗ ବିଷୟ ପରିଚୟ ବର୍ଣ୍ଣନା କରାଯାଇଛି ।

୭. ରସାୟନ ବିଭାଗରେ ଆୟୁ, ବଳ, ମେଧା ବର୍ଦ୍ଧକ ଓ ଅକାଳ ବାର୍ଦ୍ଧକ୍ୟରୁ ରକ୍ଷା ପାଇବାର ଉପାୟ ଓ ରସାୟନ ଔଷଧର ବର୍ଣ୍ଣନା ରହିଛି ।

୮. ବାଜୀକରଣ ବିଭାଗରେ କ୍ଷୀଣ ଶୁକ୍ର, ନଷ୍ଟ ଶୁକ୍ର, ଦୂଷିତ ଶୁକ୍ର, ନପୁଂସକ, ଧ୍ୱଜଭଙ୍ଗ ଓ ସହବାସରେ ଅକ୍ଷମ ପୁରୁଷ ବ୍ୟକ୍ତିର ଚିକିତ୍ସା ନିରୂପଣ କରାଯାଇଛି ।

ପୃଥିବୀରେ ଯେତେପ୍ରକାର ଚିକିତ୍ସା ପଦ୍ଧତି ରହିଛି ସେଥିରେ କେବଳ ଗୋଟିଏ ଚିକିତ୍ସା ଓ ନିଦାନ ବିଷୟରେ ଦିଗ୍‌ଦର୍ଶନ ଦିଆଯାଇଛି । କିନ୍ତୁ ଏହି ଦେବ ସୃଷ୍ଟି ଶାଶ୍ୱତ ଆୟୁର୍ବେଦ ବିଜ୍ଞାନରେ ରୋଗର ଚିକିତ୍ସା ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ହେବା ସଙ୍ଗେ ସଙ୍ଗେ ଆୟୁଷ ରକ୍ଷା ଓ ଆୟୁଷ ବୃଦ୍ଧି ପାଇଁ ସର୍ବଶ୍ରେଷ୍ଠ ଉପାୟ ବର୍ଣ୍ଣିତ ହୋଇଥିବାରୁ ସବୁ ଚିକିତ୍ସା ବିଜ୍ଞାନଠାରୁ ଏହା ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୁଏ । ମହର୍ଷି ସୁଶ୍ରୁତ ତାଙ୍କ ସଂହିତା ଗ୍ରନ୍ଥରେ ଲେଖିଛନ୍ତି–

'' ଯାହ୍ୟୁ ଜୀର୍ଣ୍ଣ ଶମୟତ ନାନ୍ୟଂ ବ୍ୟଧିଂ କରୋତି ଚ ।
ସକ୍ରିୟା ନରଯାବ୍ୟାତ୍ ହରତନ୍ୟ ମଦାରୟେତ୍ ।''

ଅର୍ଥାତ୍ – ଯାହା ଉତ୍କଟ ରୋଗକୁ ଶାନ୍ତ କରେ ଏବଂ ଅନ୍ୟରୋଗ ସୃଷ୍ଟି କରେ ନାହିଁ ତାହାହିଁ ସଫଳ ଔଷଧ ଓ ଉତ୍ତମ ଚିକିତ୍ସା । କିନ୍ତୁ ଯାହା ଗୋଟିଏ ରୋଗକୁ ନାଶ କରି ଅନ୍ୟ ଏକ ପ୍ରତିକ୍ରିୟା ସୃଷ୍ଟି କରେ ତାହା ସଫଳ ଔଷଧ ଓ ଚିକିତ୍ସା ନୁହେଁ । ଏହା ହିଁ ଆୟୁର୍ବେଦ ଚିକିତ୍ସାର ମୌଳିକ ସୂତ୍ର । ସମୟର କଷଟି ପଥରରେ ବହୁ ପରୀକ୍ଷିତ ହୋଇ ଭାରତୀୟ ଚିକିତ୍ସା ବିଜ୍ଞାନ ଆୟୁର୍ବେଦ ସ୍ୱଗୁଣରେ ବଳବାନ୍ ଓ ସମୁଜ୍ଜ୍ୱଳ ହୋଇ ରହିଛି । ଏହା ବିଶ୍ୱର ଜନତା ସ୍ୱୀକାର କରିଛନ୍ତି । ଅନେକ ଘାତ ପ୍ରତିଘାତ ମଧ୍ୟରେ ଆୟୁର୍ବେଦ ଶିକ୍ଷା ଓ ଏହାର ବିକାଶ ପ୍ରକ୍ରିୟା ଗତି ମନ୍ଥର ହେଉଥିଲେ ମଧ୍ୟ ଆୟୁର୍ବେଦର ଗୌରବ ଓ ଗରିମା ବଜାୟ ରହିଛି । ଏଥିପାଇଁ ଆୟୁର୍ବେଦର ଆଦିସ୍ରଷ୍ଟା ଭଗବାନ ଧନ୍ୱନ୍ତରୀ ଆମର ଚିରସ୍ମରଣୀୟ ଓ ବରଣୀୟ ହୋଇ ରହିଛନ୍ତି ଓ ରହିବେ ।

ଓଡ଼ିଶା ଆୟୁର୍ବେଦ ସେବା ସଂସ୍ଥା
ରୁମ୍ ନଂ–୩୩ (ଉପର ମହଲା)
ଇନ୍ଦ୍ରଧନୁ ମାର୍କେଟ୍, ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର –୧୫



# ଉତ୍କଳର ପ୍ରାଚୀନ ଲୋକକଳା : ଘୁମୁରା ନୃତ୍ୟ

ରମାକାନ୍ତ ନାୟକ

ଇତିହାସ ହେଉଛି ଗୋଟିଏ ସମଷ୍ଟିଗତ ସ୍ମୃତି ଏବଂ ସଂସ୍କୃତି ହେଉଛି ଜାତୀୟ ଅସ୍ମିତାର ପରିଚୟ । ଭାଷା, ଲିପି, ସାହିତ୍ୟ, ସଂଗୀତ, ନୃତ୍ୟ, ଧର୍ମଧାରା, କଳା-ସ୍ଥାପତ୍ୟ, ପରମ୍ପରା, ପର୍ବପର୍ବାଣି, ଚାଲିଚଳଣ ଓ ସର୍ବୋପରି ଜୀବନଶୈଳୀ ମଧ୍ୟରେ ସଂସ୍କୃତିର ସ୍ୱାତନ୍ତ୍ର୍ୟ ଉପଲବ୍ଧ ହୋଇଥାଏ । ସଂସ୍କୃତି ଏକ ସ୍ରୋତସ୍ୱିନୀ ସଦୃଶ ପ୍ରବହମାନ, ଚଳଚଞ୍ଚଳ ଓ ପରିବର୍ତ୍ତନଶୀଳ ଏବଂ ଇନ୍ଦ୍ରଧନୁ ସଦୃଶ ବହୁବର୍ଣ୍ଣା । ପ୍ରାଚୀନ ଯୁଗରୁ ଉତ୍କଳୀୟ କଳାସଂସ୍କୃତିର ଉତ୍କର୍ଷତା ତଥା ସାଂସ୍କୃତିକ ସ୍ୱାଭିମାନର ସୌରଭ ସମଗ୍ର ବିଶ୍ୱକୁ ବିମୁଗ୍ଧ କରିଆସିଛି । ସାଧାରଣ ଜନସମୂହଙ୍କର ମୌଳିକ କଳା, ସାହିତ୍ୟ, ସଂଗୀତ, ଲୋକାଚାର ତଥା ନିତ୍ୟ ଜୀବନଧାରା ଉପରେ ପର୍ଯ୍ୟବସିତ ହୋଇ ଲୋକ ସଂସ୍କୃତିର ବିକାଶ ଘଟେ । ଓଡ଼ିଶାର ବିଶେଷତଃ କଳାହାଣ୍ଡିର ଲୋକପ୍ରିୟ ଘୁମୁରା ବାଦ୍ୟ ଓ ନୃତ୍ୟ ଉତ୍କଳୀୟ ସମୃଦ୍ଧ ଲୋକନୃତ୍ୟ ପରମ୍ପରାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଅଟେ ।



ଭାଷାର ଉଚ୍ଚାରଣ ସହିତ ଶରୀର ଅଙ୍ଗଭଙ୍ଗୀ ମାଧ୍ୟମରେ ମଣିଷ ନିଜର ଭାବକୁ ଅଧିକ ନିଖୁଣ ଭାବରେ ଅଭିବ୍ୟକ୍ତ କରିବାର ପରିକଳ୍ପନା ମଧ୍ୟରୁ ନୃତ୍ୟ ଜନ୍ମଲାଭ କରେ । ଯେତେବେଳେ ଏକ ନିର୍ଦ୍ଦିଷ୍ଟ ନୃତ୍ୟ ଗୋଷ୍ଠୀଗତ ଭାବରେ ଗ୍ରହଣୀୟ ହୁଏ ଏବଂ ତାହାପ୍ରତି ସାମାଜିକ ସ୍ୱୀକୃତି ଉପଲବ୍ଧ ହୁଏ, ସେତେବେଳେ ତାହା ଲୋକନୃତ୍ୟ ଭାବରେ ପରିଚିତ ହୁଏ । ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରଦର୍ଶିତ ଏହି ଲୋକକଳା ମନୋରଞ୍ଜନର ଏକ ବଳିଷ୍ଠ ଉପାଦାନ ହୋଇଥିବା ବେଳେ ଅଧିକାଂଶ ଆଦିମ ଅଧିବାସୀମାନଙ୍କ ପାଇଁ ଏହା ଜୀବନଧାରାର ଏକ ଅବିଚ୍ଛେଦ୍ୟ ଅଙ୍ଗଭାବରେ ବିବେଚିତ ହୁଏ । ଧର୍ମୀୟ ପରମ୍ପରା ସହିତ ସଂଯୋଜିତ ଲୋକନୃତ୍ୟ କାଳକ୍ରମେ ଆଦିବାସୀ ସମାଜରେ ସାମାଜିକ ପରମ୍ପରା ଏବଂ ଅବସର ବିନୋଦନର ସାନନ୍ଦ ସ୍ପନ୍ଦନରେ ପ୍ରତିଭାତ ହୋଇଯାଏ । ସେହି ଗୌରବୋଜ୍ଜ୍ୱଳ ସାଂସ୍କୃତିକ ସ୍ୱର୍ଣ୍ଣାକ୍ଷର ବହନ କରିଥିବା ଅଗଣିତ ଲୋକନୃତ୍ୟ ମଧ୍ୟରେ କଳାହାଣ୍ଡିର ''ଘୁମୁରା ନୃତ୍ୟ'' ଅନ୍ୟତମ । ଓଡ଼ିଶାର ଏହି ଲୋକନୃତ୍ୟ ପରମ୍ପରା ଧର୍ମୀୟ ରୀତିନୀତି ସହିତ ସମର, କୃଷି, ବିବାହ ଓ ବିଭିନ୍ନ ଉତ୍ସବ ପାଳନରେ ସନ୍ନିବେଶିତ ହୋଇ ଏକ ନିଜସ୍ୱ ପରିଚିତି ସୃଷ୍ଟି କରିପାରିଛି ।

ସମୟର କାଳସ୍ରୋତରେ ଅଜସ୍ର ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ କାଳଜୟୀ 'ଘୁମୁରା ନୃତ୍ୟ' ତାହାର ସ୍ଥାନ ଅକ୍ଷୁଣ୍ଣ ରଖିପାରିଛି । ଯୁଦ୍ଧକାଳୀନ ନୃତ୍ୟ ଭାବରେ ଜନ୍ମଲାଭ କରିଥିବା ଏହି ଭାରତୀୟ ଲୋକନୃତ୍ୟ ସମୟାନୁକ୍ରମେ ସମଗ୍ର ବିଶ୍ୱରେ ଦର୍ଶକମାନଙ୍କ ଦ୍ୱାରା ବିପୁଳ ଆଦୃତି ଲାଭ କରିଛି । ଏକଦା ଶତ୍ରୁପକ୍ଷ ବିରୁଦ୍ଧରେ ସମର ସମୟରେ ସୈନ୍ୟବାହିନୀଙ୍କୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ଘୁମୁରା ବାଦ୍ୟ ବ୍ୟବହୃତ ହେଉଥିବା ବେଳେ, ଯୁଦ୍ଧ ବିରତି ସମୟରେ ସୈନ୍ୟମାନଙ୍କ ମନୋରଞ୍ଜନ ପାଇଁ ଏହା ପରିବେଷଣ କରାଯାଉଥିଲା । ତେବେ ବିଶେଷତଃ ବିଗତ ଦୁଇ ଦଶନ୍ଧିରୁ ଅଧିକ କାଳ ମଧ୍ୟରେ କଳାହାଣ୍ଡିର ଏହି ମୌଳିକ ତଥା ପ୍ରାଚୀନ ଲୋକନୃତ୍ୟ ଓ ଲୋକସଂଗୀତ ସମଗ୍ର ଓଡ଼ିଶାର ହୃଦୟକୁ ସ୍ପର୍ଶ କରିପାରିଛି । ବିଶ୍ୱାସ କରାଯାଏ, ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ଇନ୍ଦ୍ରାବତୀ ନଦୀ ଉପତ୍ୟକା ଥିଲା 'ଘୁମୁରା ନୃତ୍ୟ'ର ଆଦିଭୂମି, ଯାହା ପରବର୍ତ୍ତୀ ସମୟରେ ମହାନଦୀ ପର୍ଯ୍ୟନ୍ତ ବିସ୍ତୃତିଲାଭ କରିଥିଲା । ଗବେଷକମାନଙ୍କ ମତରେ ୧୦୦୫ ଖ୍ରୀଷ୍ଟାବ୍ଦରେ ନାଗବଂଶର ଶାସନ କାଳରେ ଯୁଗଶାଇପାଟଣାଠାରୁ ଜୁନାଗଡ଼କୁ ରାଜଧାନୀ ସ୍ଥାନାନ୍ତର ସମୟରେ କଲମପୁରର ପାଇକମାନେ ଏକ ବିଶାଳ ଘୁମୁରା ଶୋଭାଯାତ୍ରାରେ ଯାଇ ଲଙ୍କେଶ୍ୱରୀ ଦେବୀଙ୍କୁ ଜୁନାଗଡ଼ଠାରେ ପ୍ରତିଷ୍ଠା କରିଥିଲେ । କୋଣାର୍କ ସୂର୍ଯ୍ୟମନ୍ଦିରର ଶିଳାଗାତ୍ରରେ ଖୋଦିତ ଘୁମୁରା ସଂଗୀତ ପରିବେଷଣରେ ଲିପ୍ତ ଜନୈକ ବ୍ୟକ୍ତିଙ୍କର ଚିତ୍ର ଦ୍ୱାଦଶ ଶତାବ୍ଦୀରେ ଏହି ଲୋକସଂଗୀତର ଲୋକପ୍ରିୟତାକୁ ପ୍ରତିପାଦନ କରେ । ଆହୁରି ମଧ୍ୟ ଭୁବନେଶ୍ୱରସ୍ଥିତ ଭୀମେଶ୍ୱର ମନ୍ଦିରରେ ପ୍ରଦର୍ଶିତ ଚିତ୍ର ଏହି ତଥ୍ୟକୁ ଅଧିକ ପ୍ରମାଣିତ କରେ । ବିଭିନ୍ନ ପ୍ରାଚୀନ ପୁରାଣଶାସ୍ତ୍ରରେ ମଧ୍ୟ ଘୁମୁରା ଲୋକସଂଗୀତ ଓ ଲୋକନୃତ୍ୟର ସୂଚନା ଉପଲବ୍ଧ ହୁଏ । ୧୯୫୪ ମସିହାରେ ଯଶସ୍ୱୀକବି କନ୍ଦର୍ପ ପଣ୍ଡାଙ୍କ ରଚିତ ''ଘୁମୁରା ଜନ୍ମ ବିଧାନ''ରେ ଏ ସମ୍ବନ୍ଧରେ ବିଶେଷ ଭାବରେ ବର୍ଣ୍ଣନା ଦେଖିବାକୁ ମିଳେ । ଆଦିକବି ସାରଳା ଦାସ କୃତ 'ଚଣ୍ଡୀ ପୁରାଣ' ଅନୁଯାୟୀ ମାଆ ଦୁର୍ଗା ମହିଷାସୁରକୁ ନିଧନ କରିବା ସମୟରେ ସମସ୍ତ ଦେବାଦେବୀମାନଙ୍କଠାରୁ ଯେଉଁ ସବୁ ଅସ୍ତ୍ରଶସ୍ତ୍ର ଓ ବାଦ୍ୟ ସଂଗୀତ ଯନ୍ତ୍ରମାନ ପ୍ରଦତ୍ତ ହୋଇଥିଲେ, ସେଥିମଧ୍ୟରୁ ଘୁମୁରା ବାଦ୍ୟ ଅନ୍ୟତମ । ଏଥିରେ ଉଲ୍ଲେଖ ଅଛି,

'ବାଜଇ କମକାହାଳୀ ଦାଉଣ୍ଡି ଘୁମୁରା<br>
କାଦମ୍ବରୀ ପାନକରି ନାଚନ୍ତି ଅସୁରା ।

ଏକଦିନେ ଆଜ୍ଞା ଦେଲା ମୈଷାସର ରାଜ<br>
ଅମରାବତୀପୁରକୁ ଦଣ୍ଡ ମୋର ସାଜ' ।

ଘୁମୁରା ମହାଦେବ ଶିବଙ୍କର ଡମ୍ବରୁ ଏବଂ ଦେବୀ ସରସ୍ୱତୀଙ୍କର ବୀଣାର ସମ୍ମିଶ୍ରଣରେ ନିର୍ମିତ ହୋଇଥିଲା । ସାରଳା ଦାସଙ୍କ 'ମହାଭାରତ' ବ୍ୟକ୍ତ କରେ, ସତ୍ୟଯୁଗରେ ଜେନାବଳୀପାଟଣା ଥିଲା ମହିଷାସୁରର ପୌତ୍ର ଗୋଗିଙ୍ଗ ଦୈତ୍ୟର ରାଜଧାନୀ । ତାହାର ନିଧନ ସମୟରେ ରଣବାଦ୍ୟ ଭାବରେ ଘୁମୁରା ବାଦ୍ୟ ମୁଖରିତ ହୋଇଥିଲା । ସୁପ୍ରସିଦ୍ଧ ଔପନ୍ୟାସିକ ପରଶୁରାମ ମୁଣ୍ଡା ଉଲ୍ଲେଖ କରିଛନ୍ତି, ଲଙ୍କା ନରେଶ ରାବଣର ସମରବାଦ୍ୟ ଥିଲା ଘୁମୁରା । ରାବଣ ଉପାସିତ ଦେବୀ ଲଙ୍କେଶ୍ୱରୀଙ୍କର ସବୁଠାରୁ ପ୍ରିୟ ବାଦ୍ୟ ଥିଲା ଘୁମୁରା ବାଦ୍ୟ । ଖଡ଼ିଆଳର ନରପତି ଆର୍ତ୍ତତ୍ରାଣ ଦେଓ ଘୁମୁରାକୁ ଲଙ୍କାଗଡ଼ର ବାଦ୍ୟ ଭାବରେ ବିବେଚନା କରୁଥିଲେ । ଯୋଗେଶଚନ୍ଦ୍ର ସିଂହଦେଓଙ୍କ ମତରେ, ଯେତେବେଳେ ରାବଣର ମୃତ୍ୟୁ ଏବଂ ହନୁମାନ ଦ୍ୱାରା ଲଙ୍କାଗଡ଼ ବିଧ୍ୱଂସ ହେଲା ସେତେବେଳେ ଦେବୀ ଲଙ୍କେଶ୍ୱରୀ ଲଙ୍କା ପରିତ୍ୟାଗ କରି ଜେନାବଳୀପାଟଣାକୁ ଚାଲି ଆସିଥିଲେ । ପୁରାଣବର୍ଣ୍ଣିତ ଜେନାବଳୀପାଟଣା ଆଧୁନିକ ଜୁନାଗଡ଼ ବୋଲି ଐତିହାସିକମାନେ ଏକମତ ହୁଅନ୍ତି । ଏଠାରେ ଅଧୁନା ଏହି ଦେବୀଙ୍କର ଉପାସନା ପରିଦୃଷ୍ଟ ହୁଏ । କଳାହାଣ୍ଡି ଜିଲ୍ଲା ଅନ୍ତର୍ଗତ ଗୁଡ଼ହାଣ୍ଡି ଓ ଯୋଗୀମଠର ଗୁମ୍ଫାମାନଙ୍କରୁ ଆବିଷ୍କୃତ ଡମ୍ବରୁ ଓ ଘୁମୁରାର ଚିତ୍ର ଏହି

ଲୋକସଂଗୀତର ପ୍ରାଚୀନତାକୁ ସମର୍ଥନ କରେ । ଏକଦା ସମ୍ବଲପୁର, କଳାହାଣ୍ଡି, ବସ୍ତର ଓ ରାଇପୁର ଅଞ୍ଚଳକୁ ନେଇ ଗଠିତ କୋଶଳ ସାମ୍ରାଜ୍ୟରେ ଘୁମୁରା ନୃତ୍ୟସଂଗୀତ ଥିଲା ସବୁଠାରୁ ଲୋକପ୍ରିୟ କଳା । ଏହି ଅଞ୍ଚଳ ଅନ୍ତର୍ଗତ ଦେହନାଠାରୁ ଆବିଷ୍କୃତ ଘୁମୁରା ଖଡ଼ିଆଳ ସଂଗ୍ରହାଳୟରେ ସଂରକ୍ଷିତ ରହିଥିବା ଦେଖିବାକୁ ମିଳେ ।

ପୁରାଣ ଯୁଗରେ ଦେବାଦେବୀମାନଙ୍କ ସର୍ବଶ୍ରେଷ୍ଠ ମୌଳିକ ସଂଗୀତଯନ୍ତ୍ର ଥିଲା ଘୁମୁରା । ସେଥିପାଇଁ କଳାହାଣ୍ଡିର ଦୁର୍ଗା, କାଳୀ, ଲଙ୍କେଶ୍ୱରୀ ପ୍ରଭୃତି ଶକ୍ତିପୀଠଗୁଡ଼ିକରେ ଶକ୍ତି ଉପାସନା କାଳରେ ମହାଦେବ ଶିବଙ୍କ ତାଣ୍ଡବନୃତ୍ୟ ଅନୁସରଣରେ ଏହା ପରିବେଷଣ କରାଯାଇଥାଏ । ବିଶେଷତଃ ଦଶହରା ସମେତ ବିଭିନ୍ନ ଧର୍ମ ଓ ସଂସ୍କୃତି ସମ୍ପର୍କିତ ଉତ୍ସବ ଅବସରରେ ଘୁମୁରା ବାଦ୍ୟ ପୁରପଲ୍ଲୀରେ ନିନାଦିତ ହୁଏ । ଘୁମୁରାର ସୃଷ୍ଟି ରହସ୍ୟ ସଦୃଶ 'ନିଶାଣ' ଓ 'ତାଳ' ମଧ୍ୟ ଅନୁରୂପ ଭାବରେ ପୁରାଣଶାସ୍ତ୍ର ସହିତ ସହବନ୍ଧିତ । ବିନ୍ଧ୍ୟଗିରୀ ପର୍ବତରୁ ଉଦ୍ଧାର ହୋଇଥିବା ଲୌହଖଣ୍ଡରେ ନିର୍ମିତ ଏବଂ ଚର୍ମ ଆଚ୍ଛାଦିତ ହୋଇ ପଞ୍ଚାକ୍ଷର ମନ୍ତ୍ରରେ ପବିତ୍ର କରାଯାଇ ଗୌରବ ଗନ୍ଧର୍ବ ଓ ଉର୍ବଶୀଙ୍କ ଦ୍ୱାରା 'ନିଶାଣ' ପ୍ରସ୍ତୁତ ହୋଇଥିବା ବେଳେ କଶ୍ୟପ ଋଷିଙ୍କ ଦ୍ୱାରା 'ତାଳ'ର ସୃଷ୍ଟି ହୋଇଥିଲା । ଉଭୟ ନିଶାଣ ଓ ତାଳ ରାଧାକୃଷ୍ଣଙ୍କର ଦିବ୍ୟସ୍ୱରୂପ ଭାବରେ ବିବେଚିତ ହୁଏ ।

ପୁରାଣ ଯୁଗରେ ଉଭୟ ଦେବ ଓ ଦାନବଙ୍କ ପ୍ରିୟ ସଂଗୀତବାଦ୍ୟ 'ଘୁମୁରା' ପରବର୍ତ୍ତୀ ଯୁଗରେ କଳାହାଣ୍ଡିର ରାଜନ୍ୟବର୍ଗ ଓ ସୈନ୍ୟମାନଙ୍କ ଦ୍ୱାରା ବୀରତ୍ୱପୂର୍ଣ୍ଣ ଯୁଦ୍ଧବାଦ୍ୟ ଭାବରେ ବ୍ୟବହୃତ ହୋଇଥିଲା । ୧୦୦୮ ଖ୍ରୀଷ୍ଟାବ୍ଦ ବେଳକୁ କଳାହାଣ୍ଡିରେ ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ଶାସକ ତଥା ସେମାନଙ୍କର ଅଷ୍ଟାଦଶ ସାମନ୍ତରାଜାଙ୍କର ବିଶାଳ ସୁସଂଗଠିତ ସେନାବାହିନୀ ଥିଲା । ଏହି ସୈନ୍ୟଦଳର ମୁଖ୍ୟ ଯୁଦ୍ଧବାଦ୍ୟ ଥିଲା ଘୁମୁରା ବାଦ୍ୟ । ଏହି ସଂଗୀତ ଓ ନୃତ୍ୟର ଗମ୍ଭୀର ଝଙ୍କାର ବୀର ଯୋଦ୍ଧାବୃନ୍ଦଙ୍କ ପ୍ରାଣରେ ଅପୂର୍ବ ବୀରତ୍ୱର ଉନ୍ମାଦନା ସଞ୍ଚାର କରୁଥିଲା । ପୁନଶ୍ଚ ଏହା ପାଇକ ତଥା ସୈନ୍ୟମାନଙ୍କ ଅବସର ବିନୋଦନ ପାଇଁ ସହାୟକ ହେଉଥିଲା । ଇଂରେଜ ଶାସନ କାଳରେ ଯେତେବେଳେ ଯୁଦ୍ଧର ଅବକାଶ ନଥିଲା, ସେତେବେଳେ ପାଇକମାନେ ନିଷ୍କ୍ରିୟ ହୋଇପଡ଼ିଥିଲେ । ସେହି ସମୟରେ ଉପଲବ୍ଧ ପର୍ଯ୍ୟାପ୍ତ ବିଶ୍ରାମ ସମୟକୁ ଘୁମୁରା ବାଦ୍ୟ ଓ ନୃତ୍ୟ ଚଳଚଞ୍ଚଳ କରିଦେବା ସହିତ ଅମାପ ମନୋରଞ୍ଜନର ଖୋରାକ ଯୋଗାଉଥିଲା । ଏହି ଅବଧି ଥିଲା ଘୁମୁରା ଲୋକନୃତ୍ୟର ବିକାଶର ଯୁଗ ।

ପରବର୍ତ୍ତୀ କାଳରେ କଳାହାଣ୍ଡିର କେତେକ ଲବ୍ଧପ୍ରତିଷ୍ଠ ସାରସ୍ୱତ ସ୍ରଷ୍ଟାଙ୍କ ଲେଖନୀରୁ ନିଃସୃତ ହେଲା ଅସୁମାରି ଦେବୀ ବନ୍ଦନା, ରାଜବଂଶର ପ୍ରଶସ୍ତିମୂଳକ ଗାଥା, ପୌରାଣିକ ଆଖ୍ୟାୟିକା ସମ୍ବଳିତ ଗୀତିକବିତା ସମୂହ । ଏଥିସହିତ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତ ସିଂହାର ପ୍ରଭୃତିଙ୍କ ରଚିତ ଛାନ୍ଦ, ଚୌପଦୀ ଘୁମୁରା ସଂଗୀତର ସୌଷ୍ଠବକୁ ଚିତ୍ତାକର୍ଷକ କରିଦେଲେ । କ୍ରମଶଃ ଘୁମୁରା ଲୋକନୃତ୍ୟ କୋଟି ଜନମନ ଓ ହୃଦୟକୁ ବିଜୟ କରିଦେଲା । ନଗରଠାରୁ ପୁରପଲ୍ଲୀ ପର୍ଯ୍ୟନ୍ତ ଏହି ନୃତ୍ୟ ସଂଗୀତ ବିପୁଳ ଜନପ୍ରିୟତା ହାସଲକଲା । ନିଭୃତ ପଲ୍ଲୀ ଅଞ୍ଚଳର ସାଧାରଣ ଜନତା ଏହାପ୍ରତି ଅହେତୁକ ଭାବରେ ଆକର୍ଷିତ ହେବାରୁ ଅସଂଖ୍ୟ ଘୁମୁରା ଦଳମାନ ଜନ୍ମନେଲା । ଭବାନୀପାଟଣା, ଜୟପାଟଣା, ମଦନପୁର-ରାମପୁର, ଖଡ଼ିଆଳ ପ୍ରଭୃତି ଶାସକ ପରିବାରଗଣଙ୍କର ଅସୀମ ପ୍ରୋତ୍ସାହନ ଓ ଆନ୍ତରିକ ପୃଷ୍ଠପୋଷକତା ଯୋଗୁଁ ଘୁମୁରା ସବୁଠାରୁ ଲୋକପ୍ରିୟ ଲୋକକଳା ଭାବରେ ଆବିର୍ଭୂତ ହେଲା । ଭବାନୀପାଟଣା, ମାଣିକେଶ୍ୱରୀ, ଜୁନାଗଡ଼ର ଲଙ୍କେଶ୍ୱରୀ, ଆମପାଣିର ବୁଢ଼ାରାଜା, ଖଡ଼ିଆଳର ରକ୍ତାମ୍ବରୀ, ମଦନପୁର ରାମପୁରର ଦକ୍ଷେଶ୍ୱରୀ ମନ୍ଦିରରେ ଦଶହରା ସମେତ ବିଭିନ୍ନ ପର୍ବପର୍ବାଣିରେ ଘୁମୁରା ବାଦ୍ୟ ଓ ସଂଗୀତ ପରିବେଷଣ କରାଯିବାର ବିଧିବ୍ୟବସ୍ଥା ପ୍ରଚଳିତ ହେଲା । ସମୟାନୁକ୍ରମେ

ଘୁମୁରା ନୃତ୍ୟ ସମୟରେ ଗୋଟିଏ ଗୋଷ୍ଠୀ ଅନ୍ୟଗୋଷ୍ଠୀକୁ ସଂଗୀତ ମାଧ୍ୟମରେ ଖୁବ୍ ଜଟିଳ ପ୍ରଶ୍ନ ପଚାରିବାର ରୀତି ଆରମ୍ଭ ହେଲା । ଏଥିରୁ ସୃଷ୍ଟି ହେଲା, ‘‘ଘୁମୁରା ଲଢ଼େଇ’’ ବା ‘‘ବାଦୀ ଘୁମୁରା’’ ପରମ୍ପରା ।

‘‘ଘୁମୁରା’’ ଶବ୍ଦର ପାରିଭାଷିକ ଶବ୍ଦ ସମ୍ବନ୍ଧରେ ଗବେଷକମାନଙ୍କ ମଧ୍ୟରେ ମତଦ୍ୱନ୍ଦ୍ୱ ଦେଖାଯାଏ । କେତେକଙ୍କ ମତରେ ଏହି ବାଦ୍ୟରୁ ‘‘ଘୁମ୍ ଘୁମ୍’’ ଶବ୍ଦ ଧ୍ୱନିତ ହେଉଥିବାରୁ ଏହାକୁ ଘୁମରା କୁହାଯାଏ । କିନ୍ତୁ ଅନ୍ୟମାନଙ୍କ ମତରେ ଶିବଙ୍କର ଡମ୍ବରୁ ଯେହେତୁ ‘ନାଦବ୍ରହ୍ମ’ର ସଙ୍କେତ, ପରବର୍ତ୍ତୀ ସମୟରେ ଏହାର ବିକାଶ ସାଧିତ ହୋଇ ଘୁମୁରାରେ ରୂପାନ୍ତର ହେଲା । ‘ଘୁମ୍’–‘ଉ’–‘ରା’ର ସଂଯୋଗରେ ଘୁମୁରା ଶବ୍ଦର ବ୍ୟୁତ୍ପତ୍ତି ହୋଇଥିବା କେତେକ ମତପୋଷଣ କରନ୍ତି । ସଂକୀର୍ଣ୍ଣ ମୁଖ ଓ ବୃହତ୍ ଉଦର ବିଶିଷ୍ଟ କୁମ୍ଭାକୃତି ମୃତ୍ତିକା ପାତ୍ରକୁ ଘୁମ କୁହାଯାଏ । ‘ଉ’ ହେଉଛି ‘ଉଗ୍ର’ ଶବ୍ଦର ପ୍ରତିଧ୍ୱନିତ୍ୱ କରେ, ଯାହାର ଅର୍ଥ ପ୍ରଭୁ ମହାଦେବ ଶିବ ଏବଂ ‘ରା’ ପ୍ରତିନିଧିତ୍ୱ କରେ ‘ରାବ’ ଶବ୍ଦର, ଯାହାର ମର୍ମାର୍ଥ ସ୍ପନ୍ଦିତ ଧ୍ୱନି । ତେବେ କଳାହାଣ୍ଡିର ମାରଗୁଡ଼ା ଉପତ୍ୟକାରୁ ଘୁମୁରା ଆବିଷ୍କୃତ ହୋଇଥିବାରୁ ଏହି ଯୁକ୍ତି ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ ।

ଘୁମୁରା ହେଉଛି ମୃତ୍ତିକା ବା କର୍ଦ୍ଦମ ନିର୍ମିତ କଳସୀ ଆକୃତିର ଏକ ସଂଗୀତ ବାଦ୍ୟଯନ୍ତ୍ର, ଯାହାର ନିମ୍ନଭାଗ ବୀଣାର ତୁମ୍ବିଭଳି ଓ ଊର୍ଦ୍ଧ୍ୱଦେଶ ଅର୍ଦ୍ଧାକାର ଡମ୍ବରୁ ଭଳି ଦୃଶ୍ୟମାନ ହୁଏ । ଏହାର ଅନ୍ତସ୍ଥଳୀ ଏକ ଫମ୍ପାପାତ୍ର ଏବଂ ଊର୍ଦ୍ଧ୍ୱରେ ଥିବା ଅର୍ଦ୍ଧାକୃତ ଡମ୍ବରୁ ଚର୍ମଦ୍ୱାରା ଆଚ୍ଛାଦିତ ହୋଇଥାଏ । ଏହାର ଗ୍ରୀବା ଏବଂ ଉଦରର ଦୈର୍ଘ୍ୟ ନଅଇଞ୍ଚ ହୋଇଥିବା ବେଳେ ଏହାର ମୁଖ ଚାରିଇଞ୍ଚ ପ୍ରସ୍ଥ ବିଶିଷ୍ଟ । ଏକ ଶକ୍ତ ରଜ୍ଜୁ ବା ବସ୍ତ୍ରରେ ଏହାକୁ ତୁମ୍ବି ଓ ମୁଖର ମଧ୍ୟବର୍ତ୍ତୀ ଅଂଶରେ ବନ୍ଧାଯାଇ ବାଦକର ଦକ୍ଷିଣ ସ୍କନ୍ଧ ଏବଂ ବାମ କଟିଦେଶ ମଧ୍ୟରେ ଏହା ଦୋଳାୟମାନ ରହେ । ଫଳରେ ଘୁମୁରାନର୍ତ୍ତକ ତାଙ୍କର ହସ୍ତଚାଳନ କରି ଅନାୟାସରେ ଘୁମୁରା ବାଦନ କରିପାରେ । ଏଥିସହିତ ‘ତାଳ’, ‘ନିଶାଣ’ ଓ ‘ମୃଦଙ୍ଗ’ର ବାଦନ ଏକ ସମବେତ ସଂଗୀତର ମୂର୍ଚ୍ଛନା ସୃଷ୍ଟି କରେ । କେତେକ ଅଞ୍ଚଳରେ ଭେରୀ ମହୁରୀ ପ୍ରଭୃତି ବାଦ୍ୟଯନ୍ତ୍ର ମଧ୍ୟ ଏହା ସହିତ ସମବେତ ହୁଏ । ଚଣ୍ଡୀପୁରାଣ, ରାମାୟଣ ଓ ମହାଭାରତରେ ବର୍ଣ୍ଣିତ ହୋଇଛି ଯେ, ଘୁମୁରା ସହିତ କେବଳ ‘ନିଶାଣ’ ଓ ‘ତାଳ’ ନୁହେଁ, ବରଂ ଏଥିସହିତ ମୃଦଙ୍ଗ, ମାର୍ଦ୍ଦଳ, କାଂସଳ, ଢ଼ୋଲ, ଦୁନ୍ଦୁଭି, ପ୍ରଣବ, ଶଙ୍ଖ, ଭେରୀ, ବୀରତୂରୀ, ଦାମୀମା, ଟମକ, କାହାଳୀ, ବିଜୟଘୋଷ, କ୍ଷୀରମହ୍ଲାର, ମହୁରୀ, ଝାଞ୍ଜ ପ୍ରଭୃତିର ଏକତ୍ରୀଭୂତ ନିନାଦ ଶ୍ରୋତୃମଣ୍ଡଳିଙ୍କ ମନରେ ଅଫୁରନ୍ତ ଭାବାବେଗ ସୃଷ୍ଟି କରୁଥିଲା ।

ପୌରାଣିକ ଯୁଗରେ ଦେବୀଦୁର୍ଗାଙ୍କର ଚଉଷଠି ଯୋଗିନୀଙ୍କ ଦ୍ୱାରା ଘୁମୁରା ନୃତ୍ୟ ପରିବେଷିତ ହେଉଥିବାର ପରିକଳ୍ପନାକୁ ଅଧାର କରି ସାମ୍ପ୍ରତିକ ସମୟରେ ଚଉଷଠିର ଏକ ଅଷ୍ଟମାଂଶ ଅର୍ଥାତ୍ ଅତି କମ୍‌ରେ ଆଠଜଣ ନର୍ତ୍ତକଙ୍କୁ ନେଇ ଗୋଟିଏ ଘୁମୁରା ଦଳ ଗଠିତ ହୁଏ । ଅବଶ୍ୟ ଏହି ନିୟମକୁ ସମସ୍ତ କ୍ଷେତ୍ରରେ କଠୋର ଭାବରେ ପାଳନ କରାଯାଏ ନାହିଁ । କିନ୍ତୁ ଏହି ନୃତ୍ୟରେ ଯୋଗିନୀମାନଙ୍କ ରୂପ ଓ ପରିଧାନକୁ ଅନୁସରଣ କରି ନର୍ତ୍ତକମାନେ ପ୍ରସାଧନ ଓ ପରିପାଟୀରେ ନିଜକୁ ସଜ୍ଜିତ କରନ୍ତି । ସାଧାରଣତଃ ରଙ୍ଗ ବେରଙ୍ଗର ଶାଢ଼ି, ଧୋତିକୁ ଚୁଡ଼ିଦାର ସଦୃଶ ଅଣ୍ଟାଠାରୁ ପାଦ ପର୍ଯ୍ୟନ୍ତ ପରିଧାନ କରି କାର୍ଯ୍ୟକ୍ରମ ପରିବେଷଣ କରିବା ଘୁମୁରା ନୃତ୍ୟର ଏକ ଅନବଦ୍ୟ ବୈଶିଷ୍ଟ୍ୟ ।

ଘୁମୁରା ସଂଗୀତ ଓ ଚଉପଦୀର ରଚନା କ୍ଷେତ୍ରରେ ଦାମୋଦର ପାତ୍ର, ରାମଚନ୍ଦ୍ର ରାଜଗୁରୁ ଓ ବାଣୀଭୂଷଣଙ୍କ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । ପରବର୍ତ୍ତୀ ସମୟରେ କନ୍ଦର୍ପ ପଣ୍ଡା, ମନମୋହନ ମେହେର, ଧନେଶ୍ୱର, ସୋମନାଥ ବାରିକ, ବିଶ୍ୱନାଥ ପ୍ରଧାନ, ଜିତ ପ୍ରଧାନ, ଲମ୍ଭୁ ଗୌଡ଼, ଘାସିରାମ ପ୍ରଧାନ, ମଦନ ଘୋଗିଆ,

ବାନାମ୍ବର ସାହୁ ପ୍ରଭୃତିଙ୍କ ରଚିତ ଗୀତିକବିତା ଯୋଗୁଁ ଘୁମୁରା ସଂଗୀତ ସାଧାରଣ ଜନତାଙ୍କ ହୃଦୟକୁ ସ୍ପର୍ଶ କରିବା ସହିତ ଏକ ଲୋକକଳା ଭାବରେ ଆଦୃତ ହୋଇପାରିଛି । ଚିତ୍ତାକର୍ଷକ ସଂଗୀତ ମାଧୁର୍ଯ୍ୟର ତାଳେତାଳେ ଘୁମୁରା ନୃତ୍ୟର ଭଙ୍ଗୀ ଓ ଠାଣି ମାଧ୍ୟମରେ ଏହାକୁ ଜନପ୍ରିୟ କରିବାରେ ରିଖିରାମ ତିୱାରୀ, ପବିତ୍ର ପଟ୍ଟନାୟକ, ଶୋଭାବନ ବାରିକ, ବନମାଳୀ ଠାକୁର, ବିପିନ ବିହାରୀ ପାଟଯୋଶୀ, ସୀମାଚଳ ପଣ୍ଡା, ସତ୍ୟାନନ୍ଦ ପଣ୍ଡା, ବଙ୍କିମ ବେହେରା, ପ୍ରହ୍ଲାଦ ବେହେରା, ଡ. ସୋମେଶ୍ୱର ବେହେରା ଓ ଗୌରାଙ୍ଗ ଚନ୍ଦ୍ର ମୁଣ୍ଡା ପ୍ରମୁଖଙ୍କର ଭୂମିକା ଚିରସ୍ମରଣୀୟ ।

ସମ୍ପ୍ରତି ଘୁମୁରା ନୃତ୍ୟକଳା ରାଜ୍ୟ ତଥା ରାଜ୍ୟ ବାହାରେ, ଏପରିକି ବିଦେଶରେ ମଧ୍ୟ ପରିବେଷିତ ହୋଇ ଯଥେଷ୍ଟ ଲୋକପ୍ରିୟତା ହାସଲ କରିପାରିଛି । ସରକାରଙ୍କ ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ସହିତ ବିଭିନ୍ନ ସାଂସ୍କୃତିକ ସଂଗଠନର ସକ୍ରିୟ ସମ୍ପୃକ୍ତି ଯୋଗୁଁ ଏହି ମହାନ୍ ଲୋକନୃତ୍ୟର ସଦର୍ପ ବିଜୟଯାତ୍ରା ଅବ୍ୟାହତ ଅଛି । କଳାହାଣ୍ଡି ଜିଲ୍ଲା ମହୋତ୍ସବକୁ 'ଘୁମୁରା' ଭାବରେ ନାମକରଣ କରାଯାଇଛି । ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ଘୁମୁରା ନୃତ୍ୟ ଏକ ପ୍ରମୁଖ କଳା ଭାବରେ ପ୍ରଦର୍ଶିତ ହେବା ସହିତ ଏହାର ଦୃଶ୍ୟଶ୍ରାବ୍ୟ ଚିତ୍ର ପ୍ରସାରିତ ହେଉଅଛି । ଏହି ପ୍ରାଚୀନ ଲୋକକଳା ଉପରେ ଅନେକ ଗବେଷଣାଲବ୍ଧ ନିବନ୍ଧ ପ୍ରକାଶିତ ହୋଇ ଏହି ଲୋକନୃତ୍ୟ ସମ୍ବନ୍ଧରେ ଅନେକ ଅଜ୍ଞାତ ତଥ୍ୟମାନ ଲୋକଲୋଚନକୁ ଆସିବା ସମ୍ଭବ ହୋଇଛି ।

ପ୍ରାକ୍ତନ ଅଧ୍ୟକ୍ଷ, ଆନନ୍ଦପୁର ମହାବିଦ୍ୟାଳୟ
ସିନେମା ହଲ୍ ଛକ, ଆନନ୍ଦପୁର
ଜିଲ୍ଲା–କେନ୍ଦୁଝର, ପିନ୍–୭୫୮୦୨୧



# କୃଷ୍ଣ ପ୍ରେମ ଓ କୃଷ୍ଣ ଭକ୍ତି

ସୁଚିତ୍ରା ବେହେରା

'ପ୍ରେମ' ଶବ୍ଦର ଅର୍ଥ ବ୍ୟାପକ ଅଟେ । ସାଧାରଣ ଭାବେ ଦେଖିଲେ ଏହି ଶବ୍ଦକୁ ଯେ କେହିବି ବହୁତ କ୍ଷୁଦ୍ର ବୋଲି ଭାବିବେ । ହେଲେ ଏହି ଶବ୍ଦଟା ଯେ ଜଗତରେ କେତେ ବିରାଟ ଶବ୍ଦ, ତାହା ବୁଝିବା ସମସ୍ତଙ୍କ ପକ୍ଷେ ସହଜ ହୋଇ ନଥାଏ । ସଂସାରରେ କେହି ନା କେହି କାହାକୁ ଅବଶ୍ୟ ପ୍ରେମ କରିଥା'ନ୍ତି । ମାତ୍ର ଏହି ପ୍ରେମକୁ ସମସ୍ତେ ଠିକ୍‌ରେ ବୁଝି ନଥା'ନ୍ତି । ତେବେ ମନରେ ଏହି ପ୍ରଶ୍ନ ଆସିବା ସ୍ୱାଭାବିକ ଯେ ବାସ୍ତବରେ ଏହି ପ୍ରେମର ସଂଜ୍ଞା କ'ଣ? କେହି କେହି ଭାବନ୍ତି, ମନ ଓ ଶରୀର ପୂର୍ଣ୍ଣଭାବେ କାହା ପ୍ରତି ଆକର୍ଷିତ ହେବା ହିଁ ପ୍ରେମ । ଆଉ କେହି କେହି ଏତିକି ବୁଝନ୍ତି ଯେ, ପରସ୍ପରର ରୂପ, ଗୁଣ ଓ କାର୍ଯ୍ୟ ପ୍ରତି ବିମୋହିତ ହୋଇ ପ୍ରତି ମୁହୂର୍ତ୍ତରେ ପରସ୍ପର ପାଇଁ ପରସ୍ପର ବିଚଳିତ ହେବା ହିଁ ପ୍ରେମ । ସଂସାର ଅର୍ଥରେ ନାରୀ ଓ ପୁରୁଷ ଉଭୟଙ୍କୁ ପ୍ରାପ୍ତ କରିବାରେ ହିଁ ପ୍ରେମ ସାର୍ଥକ ହୋଇଥାଏ ବୋଲି ଭାବନ୍ତି ।

ଯେଉଁ ପରମ ଈଶ୍ୱର ଏହି ପ୍ରେମର ପ୍ରତିଷ୍ଠା ଜଗତରେ କରିଥିଲେ ସେ ତାଙ୍କର ଲୀଳା ସଙ୍ଗିନୀକୁ ବିବାହ ନ କରି ଅନନ୍ତ ପ୍ରେମରେ ବ୍ରତୀ ହୋଇଥିଲେ । ତା'ହେଲେ ବାସ୍ତବରେ ଏହି ପ୍ରେମ କ'ଣ? ଯଦିବା ଏହି ପ୍ରେମର ଦେବୀ ଶ୍ରୀରାଧା ଓ ପ୍ରେମର ଦେବତା ଶ୍ରୀକୃଷ୍ଣ ପରସ୍ପର ସଂସାର ବନ୍ଧନରେ ଆବଦ୍ଧ ହୋଇନଥିଲେ, ତଥାପି ସେମାନଙ୍କର ପ୍ରେମ ବ୍ରହ୍ମାଣ୍ଡରେ ଶାଶ୍ୱତ, ଚିରନ୍ତନ ଓ ଶ୍ରେଷ୍ଠ ପ୍ରେମ ରୂପେ ବିବେଚିତ ହେଲା । ଏହାର କାରଣ ହେଉଛି, ଦୁଇ ହୃଦୟର ମିଳନ ଓ ମନର ସମର୍ପଣ ହିଁ କେବଳ ପ୍ରେମର ଯଥାର୍ଥ ସଂଜ୍ଞା ଅଟେ । ତାହା ପୁଣି ସ୍ୱାର୍ଥ ଓ କାମନାଠାରୁ ମୁକ୍ତ ହୋଇ ସମର୍ପଣ କରିବାର ପ୍ରେମ । ଭଗବାନ ଶ୍ରୀକୃଷ୍ଣ ଜଗତରେ ଯେଉଁ ଶାଶ୍ୱତ ଓ ଅନନ୍ତ ପ୍ରେମର ପ୍ରତିଷ୍ଠା କରିଥିଲେ ସେହି ପ୍ରେମ ସଂସାରର ସମସ୍ତ ବାଧା ବନ୍ଧନରୁ ମୁକ୍ତ ଥିଲା । ଏହାହିଁ ପ୍ରକୃତ କୃଷ୍ଣପ୍ରେମ ।

ସେହିପରି ଦୁଇ ଅକ୍ଷର ବିଶିଷ୍ଟ 'ଭକ୍ତି' ଶବ୍ଦଟି ବହୁତ କ୍ଷୁଦ୍ର । ଭଜ୍ ଧାତୁରୁ ନିଷ୍ପନ୍ନ ଏହି ଶବ୍ଦଟିରେ ଅନେକ ଶକ୍ତି ବା ସତ୍ତା ଲୁକ୍‌କାୟିତ ହୋଇ ରହିଛି, ଯାହା ଉଚିତ ସମୟରେ ପ୍ରକାଶ ପାଇଥାଏ । ଈଶ୍ୱର ଭକ୍ତି, ଗୁରୁଭକ୍ତି, ଗୁରୁଜନ ଭକ୍ତି ଆଦି ଏମିତି କେତେ ଭକ୍ତି ଅଛି, ଯାହା କେବଳ ମର୍ତ୍ତ୍ୟରେ ନୁହେଁ, ଦେବଲୋକରେ ଓ ଦୈତ୍ୟଲୋକରେ ମଧ୍ୟ ଦେଖାଯାଏ । ସାଧାରଣ ଅର୍ଥରେ ଭକ୍ତି କହିଲେ, ଈଶ୍ୱରଙ୍କୁ ପ୍ରାର୍ଥନା, ଜଣାଣ, ଭଜନ, ଓ କୀର୍ତ୍ତନ ଆଦିକୁ ବୁଝାଏ । ଏହା ବ୍ୟତୀତ ନିଜର ଗୁରୁ ଓ ଗୁରୁଜନଙ୍କ ପ୍ରତି ସମ୍ମାନ, ତାଙ୍କର ଅନୁଗାମୀ ହେବା ବି ଭକ୍ତି ହିଁ ଅଟେ । ମର୍ତ୍ତ୍ୟରେ ଏହି ଭକ୍ତି ବଳରେ ଦାସିଆ ବାଉରୀ, ସାଲବେଗ, ବନ୍ଧୁ ମହାନ୍ତି, ପ୍ରହ୍ଲାଦ, କବୀର, ଶଙ୍କରାଚାର୍ଯ୍ୟ ଓ ଚୈତନ୍ୟ ପ୍ରମୁଖ ଈଶ୍ୱର ଦର୍ଶନ ପ୍ରାପ୍ତି ସହିତ ତାଙ୍କର ସତ୍ତାକୁ ଅନୁଭବ କରିପାରିଥିଲେ । ଦୈତ୍ୟ ଲୋକରେ କଂସ, ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ଆଦି ଦେବ ଦେବ ମହାଦେବଙ୍କୁ ଭକ୍ତି କରି ବରପ୍ରାପ୍ତ ହୋଇଥିଲେ । ଏପରିକି ରାକ୍ଷସରାଜ ମହିଷାସୁର ମଧ୍ୟ

ବ୍ରହ୍ମାଙ୍କ ବରରେ ବଳୀୟାନ୍ ହୋଇଥିଲେ । ଏହିପରି ଅନେକ ଅସୁର ନିଜର ଭକ୍ତିସାଧନା ବଳରେ ବରପ୍ରାପ୍ତ ହୋଇଛନ୍ତି ।

ଯେତେବେଳେ ଭକ୍ତି ସହିତ ପ୍ରେମ ମିଶିଯାଏ ସେତେବେଳେ ଏକ ଅଦ୍‌ଭୁତ ଶକ୍ତିର ପରିପ୍ରକାଶ ଘଟେ । ପରମ ପୁରୁଷ ଶ୍ରୀକୃଷ୍ଣଙ୍କୁ ଅନନ୍ତ ପ୍ରେମ କରୁଥିଲେ ଶ୍ରୀରାଧା । ମାତ୍ର ସେହି ପ୍ରେମ ସେ ଭକ୍ତିର ସହିତ କରୁଥିଲେ । ମୀରାବାଈ ଶ୍ରୀକୃଷ୍ଣଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ମାତ୍ର ସେହି ଭକ୍ତି ସେ ପ୍ରେମର ସହିତ କରୁଥିଲେ । ଏହି ହେତୁ ଜଗତରେ ଶ୍ରୀରାଧା ଶ୍ରେଷ୍ଠ ପ୍ରେମିକା ରୂପରେ ପରିଚିତ ହେଲେ ଓ ମୀରାବାଈ ଶ୍ରେଷ୍ଠ ଭକ୍ତ ରୂପରେ ପରିଚିତ ହେଲେ ।

ଶ୍ରୀକୃଷ୍ଣ ହେଉଛନ୍ତି ପ୍ରେମମୟ ଶ୍ରେଷ୍ଠ ପୁରୁଷ । କୃଷ୍ଣ ପ୍ରେମ ଓ କୃଷ୍ଣ ଭକ୍ତି ବ୍ରହ୍ମାଣ୍ଡରେ ସର୍ବଶ୍ରେଷ୍ଠ, ଯେଉଁଥିରେ ପରମାନନ୍ଦ ପ୍ରାପ୍ତ ହୋଇଥାଏ । ଏହି ପ୍ରେମ ଓ ଭକ୍ତି ଗୋଟିଏ ସୂତ୍ରରେ ବନ୍ଧା । ପ୍ରେମ ବିହୀନ ଭକ୍ତି ପୂର୍ଣ୍ଣଭକ୍ତି ନୁହେଁ ଏବଂ ଭକ୍ତିବିହୀନ ପ୍ରେମ ପୂର୍ଣ୍ଣ ପ୍ରେମ ନୁହେଁ । ଏହି ପ୍ରେମଭକ୍ତି ଏକାକାର ହେବା ହିଁ କୃଷ୍ଣ ପ୍ରାପ୍ତିର ମାର୍ଗ ଅଟେ । ଏହି ମଧୁମୟ ପବିତ୍ର ଭାବନାରେ ସହସ୍ର ଗୋପୀକା କୃଷ୍ଣ ପ୍ରେମକୁ ପ୍ରାପ୍ତ କରିପାରିଥିଲେ ।

କୃଷ୍ଣ ପ୍ରେମରେ ଜଗତର ସର୍ବତ୍ର କୃଷ୍ଣମୟ ଦିଶେ । କୃଷ୍ଣ ଭକ୍ତିରେ କୃଷ୍ଣ ସର୍ବସମୟରେ ନିଜ ସମ୍ମୁଖରେ ଉପସ୍ଥିତ ଥିବାର ଅନୁଭବ ଆସେ । କୃଷ୍ଣ ହେଉଛନ୍ତି ପ୍ରେମ ସ୍ୱରୂପ ଓ ରାଧା ହେଉଛନ୍ତି ପ୍ରେମ ସ୍ୱରୂପା । ଶ୍ରୀରାଧା ହ୍ଲାଦିନୀ ଶକ୍ତି ଓ ଶ୍ରୀକୃଷ୍ଣ ଶକ୍ତିମାନ୍ । ଏହି ଦୁଇ ଭାବରୂପ କୃଷ୍ଣଭକ୍ତ ଚୈତନ୍ୟଙ୍କଠାରେ ସମ୍ମିଳିତ । ପ୍ରେମଭକ୍ତି ବିତରଣ ପାଇଁ ଶ୍ରୀଚୈତନ୍ୟଙ୍କର ଅବତାର ହୋଇଥିଲା । ଶ୍ରୀଚୈତନ୍ୟ ରାଧା ଭାବରେ ଉଦ୍‌ବୁଦ୍ଧ ହୋଇ ଅବତାର ଗ୍ରହଣ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଶ୍ରୀରାଧାଙ୍କର ପ୍ରଣୟ ମହିମା ପ୍ରକାଶ କରିବା, ଶ୍ରୀକୃଷ୍ଣଙ୍କର ମଧୁରିମା ଓ ଶ୍ରୀରାଧାଙ୍କର ସୁଖସୀମା ବ୍ୟକ୍ତ କରିବା । ଏହି ସମସ୍ତ ଭାବ ମଧ ଦେଇ ଅନାବିଳ ପ୍ରେମ ଭକ୍ତି ହିଁ ପ୍ରକାଶିତ । ଶ୍ରୀକୃଷ୍ଣ ଲୀଳା–କଲ୍ଲୋଳ–ବାରିଧି । ତାଙ୍କର ଲୀଳା–ମାଧୁର୍ଯ୍ୟ–ଅନୁଭବ ହିଁ ପ୍ରେମଭକ୍ତି । ଏହା ଅନୁରାଗ ରଞ୍ଜିତ । ଏହି ଅନୁରାଗରେ ଥାଏ ପ୍ରିୟବ୍ୟକ୍ତିଙ୍କୁ ପ୍ରତି ମୁହୂର୍ତ୍ତରେ ନୂତନ ନୂତନ ରୂପରେ ଅନୁଭବ କରିବା । ବୈଷ୍ଣବ ଗ୍ରନ୍ଥରେ ଏହି ପ୍ରିୟ ବ୍ୟକ୍ତି ହିଁ ଶ୍ରୀକୃଷ୍ଣ । ଯେତେବେଳେ କୃଷ୍ଣକଥା ଶ୍ରବଣରେ ଭକ୍ତି ସୃଷ୍ଟି ହୁଏ ସେତେବେଳେ ଅନ୍ୟ କୌଣସି ବସ୍ତୁ କିମ୍ବା ଭାବର ପ୍ରୟୋଜନ ନଥାଏ । 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଏହି ପ୍ରସଙ୍ଗର ବର୍ଣ୍ଣନା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଅଛି । କବିଙ୍କ ବର୍ଣ୍ଣନାରେ :–

" କୀର୍ତ୍ତିଗନ ମଧ୍ୟେ ଜୀବେର କୋନ ବଡ କୀର୍ତ୍ତି  
କୃଷ୍ଣ – ପ୍ରେମ – ଭକ୍ତ ବଲେ ଯାର ହୟ ଖ୍ୟାତି  
ସମ୍ପତ୍ତି ମଧ୍ୟେ ଜୀବେର କୋନ ସମ୍ପତ୍ତି ଗନି  
ରାଧାକୃଷ୍ଣ ପ୍ରେମ ସାର, ସେଇ ବଡ ଧନୀ "।

ଶ୍ରୀରାଧାଙ୍କ ହ୍ଲାଦିନୀ ଶକ୍ତି ହେଉଛି କୃଷ୍ଣଙ୍କର ପ୍ରଧାନ ଶକ୍ତି । ଭଗବାନଙ୍କ ଶକ୍ତିକୁ 'ଭାଗବତ ସନ୍ଦର୍ଭ'ରେ ଅନ୍ତରଙ୍ଗା, ବହିରଙ୍ଗା ଓ ତଟସ୍ଥା ଆଦି ତିନି ଭାବରେ ବିଭକ୍ତ କରାଯାଇଛି ।

" ସଚ୍ଚିଦାନନ୍ଦମୟ କୃଷ୍ଣର ସ୍ୱରୂପ  
ଅତଏବ ସ୍ୱରୂପ ଶକ୍ତି ହୟ ତିନି ରୂପ ।  
ଆନନ୍ଦାଂଶେ ହ୍ଲାଦିନୀ ସଦଂଶେ ସନ୍ଧିନୀ  
ଚିଦଂଶେ ସମ୍ବିତ୍ ଯାରେ ଜ୍ଞାନ କରମାନି "।

*(ଚୈତନ୍ୟ ଚରିତାମୃତ)*

ହ୍ଲାଦିନୀ ଶକ୍ତି ହେଉଛି କୃଷ୍ଣଙ୍କର ସୁଖ ରୂପ । ଏଥିରୁ କୃଷ୍ଣ ଓ ରାଧା, କର୍ତ୍ତା ଓ କର୍ମ ମଧରେ ତଦାତ୍ମ୍ୟ ଭାବ ଜଣାଯାଏ । ଅନ୍ତରଙ୍ଗା ଓ ବହିରଙ୍ଗା ଶକ୍ତିର ମଧବର୍ତ୍ତୀ ଶକ୍ତି ହେଉଛି ତଟସ୍ଥା । ତଟସ୍ଥାର ଏକ ପକ୍ଷରେ ଚିନ୍ମୟୀ ଅନ୍ତରଙ୍ଗା ଓ ଅନ୍ୟ ପକ୍ଷରେ ବହିରଙ୍ଗା । ଚିନ୍ମୟୀ ଅନ୍ତରଙ୍ଗାରେ ଆସେ ଆନନ୍ଦ । ଶ୍ରୀରାଧା ହିଁ ଏହି ଆନନ୍ଦ ସ୍ୱରୂପ । ଏହି କାରଣରୁ ରାଧା ହେଉଛନ୍ତି କୃଷ୍ଣଙ୍କର ସ୍ୱରୂପ ରୂପ । ତେଣୁ କୃଷ୍ଣପ୍ରେମ ଓ କୃଷ୍ଣଭକ୍ତିରେ ରାଧା ହିଁ ମୁଖ୍ୟ ।

" ହ୍ଲାଦିନୀର ସାର ଅଂଶ ତାର ପ୍ରେମ ନାମ
ଆନନ୍ଦ ଚିନ୍ମୟ ରସ ପ୍ରେମେର ଆଖ୍ୟାନ ।
ପ୍ରେମେର ପରମ ସାର ମହାଭାବ ଜାନି
ସେଇ ମହାଭାବ ରୂପ ରାଧା ଠାକୁରାଣୀ "।

*('ଚୈତନ୍ୟ ଚରିତାମୃତ', ମଧ୍ୟଲୀଳା)*

ଶ୍ରୀରାଧା ମହାଭାବ ସ୍ୱରୂପିଣୀ । ସେ ପ୍ରେମର ସମୟ କୃଷ୍ଣଙ୍କ ସ୍ୱରୂପ ରାଧାପ୍ରେମ ଆତ୍ମେନ୍ଦ୍ରିୟ ତୃପ୍ତି ପାଇଁ ଅଭିପ୍ରେତ ନୁହେଁ । ପରମ ପୁରୁଷ ଶ୍ରୀକୃଷ୍ଣଙ୍କ ଆତ୍ମାନନ୍ଦ ପାଇଁ ରାଧାପ୍ରେମ ଉଦ୍ଦିଷ୍ଟ । ଏହି ପ୍ରେମ ସମର୍ଥାରତି ଅନ୍ତର୍ଭୁକ୍ତ । ସାଧାରଣୀ, ସମଞ୍ଜସା ଓ ସମର୍ଥା ରତି ମଧ୍ୟରେ ସମର୍ଥା ରତି ହେଉଛି ବ୍ରଜାଙ୍ଗନା ମାନଙ୍କର । ସାଧାରଣୀ ହେଉଛି ମଣି ସଦୃଶ । କୁବ୍ଜାଦି ନାୟିକାଙ୍କଠାରେ ଏହି ରତି ବିଦ୍ୟମାନ । ସମଞ୍ଜସା ହେଉଛି ଚିନ୍ତାମଣି ସଦୃଶ । ଅଷ୍ଟପାଦ ମହିଷୀଗଣ ଏହି ରତିର ଅନ୍ତର୍ଭୁକ୍ତ । ସମର୍ଥା ରତି କୌସ୍ତୁଭ ମଣି ସଦୃଶ ଅନନ୍ୟ ଓ ସୁଦୁର୍ଲଭ । ବ୍ରଜାଙ୍ଗନାମାନେ ଏହି ରତିର ଅଧିକାରିଣୀ । ଏହି ସମର୍ଥା ରତିରେ ଆତ୍ମସୁଖର ଅଭିଳାଷ ନଥାଏ । ଏଥିରେ ଥାଏ ପ୍ରିୟଜନର ଅଭିଳାଷ ପୂର୍ଣ୍ଣ କରିବାର ବାସନା । କୃଷ୍ଣସୁଖ ପାଇଁ ଏହି ରତି ଏକାନ୍ତ ଉଦ୍ଦିଷ୍ଟ । କୃଷ୍ଣ ସୁଖ ହିଁ ଏହି ରତିର ମୂଳ ଲକ୍ଷ୍ୟ ।

କୃଷ୍ଣଙ୍କୁ ପ୍ରେମ କରିବା ହେଉ କିମ୍ବା ଭକ୍ତି କରିବା ହେଉ, ଉଭୟରେ ପ୍ରେମଭକ୍ତି ହିଁ ସାର ଅଟେ । ସେହି ପରମପୁରୁଷ ଯେହେତୁ ପ୍ରକୃତି ସ୍ୱରୂପା ଶ୍ରୀରାଧାଙ୍କ ପ୍ରେମରେ ପରମାନନ୍ଦ ଲାଭ କରନ୍ତି ସେଇ ହେତୁ କୃଷ୍ଣଙ୍କୁ ପ୍ରେମ ଓ ଭକ୍ତି କରିବାର ମୂଳରେ ରହିଛନ୍ତି ସ୍ୱୟଂ ପ୍ରେମର ଦେବୀ ରାଧା । ଶ୍ରୀରାଧାଙ୍କୁ ଆରାଧନାରେ ହିଁ କୃଷ୍ଣ ସନ୍ତୁଷ୍ଟ ହୁଅନ୍ତି । ରାଧା ହେଉଛନ୍ତି କୃଷ୍ଣଙ୍କ ଶକ୍ତି । ତେଣୁ ଏହି ଦୁଇଜଣଙ୍କୁ ଅଲଗା କରି ଭକ୍ତି କରିହୁଏନା ଓ ପ୍ରେମ କରିହୁଏନା । ଭକ୍ତ ପୁରୁଷ ହେଉ ଅବା ନାରୀ, ନିଜ ଭିତରେ ରାଧାଭାବ ରଖି କୃଷ୍ଣଙ୍କୁ ପ୍ରେମଭକ୍ତି କରିବା ଆବଶ୍ୟକ । କାରଣ ଏହି ଭାବରେ କୃଷ୍ଣଙ୍କୁ ପ୍ରେମ ଓ ଭକ୍ତି କଲେ ଜୀବନରେ କୃଷ୍ଣପ୍ରାପ୍ତି ସମ୍ଭବ ହୋଇଥାଏ ଏବଂ ଜୀବ ପରମପଦ ଲାଭ କରିଥାଏ ।

ପ୍ଲଟ୍ ନଂ. – ୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର – ୧୮



# ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ

ନବ ଉତ୍କଳର ନିର୍ମାତାମାନଙ୍କ ମଧ୍ୟରୁ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ହେଉଛନ୍ତି ଅନ୍ୟତମ । ଖଣ୍ଡବିଖଣ୍ଡିତ ଉତ୍କଳର ଏକୀକରଣ ତଥା ଭାଷାଭିତ୍ତିରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପାଇଁ ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏବଂ ଉକ୍ତ କାର୍ଯ୍ୟରେ ଉତ୍କଳଗୌରବ ମଧୁସୂଦନଙ୍କୁ ଯେଉଁ କେତେଜଣ ମନୀଷୀ ସହାୟତା କରିଥିଲେ, ସେମାନଙ୍କ ମଧ୍ୟରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଥିଲେ ଅଗ୍ରଗଣ୍ୟ ।



ଉତ୍କଳର ଏହି ବରପୁତ୍ର ତଥା ନବଉତ୍କଳର ଅନ୍ୟତମ ନିର୍ମାତା ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ୧୮୭୧ ମସିହା ଡିସେମ୍ବର ୧୭ ତାରିଖରେ ମୟୂରଭଞ୍ଜ ରାଜପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା କୃଷ୍ଣଚନ୍ଦ୍ର ଭଞ୍ଜ । ମହାରାଜାଙ୍କ ବାଲ୍ୟଶିକ୍ଷା ବାରିପଦାରେ ସମାପ୍ତ ହୋଇଥିଲା । ମାତ୍ର ୯ ବର୍ଷ ବୟସରେ ସେ ପିତୃହରା ହୋଇଥିଲେ । ପିତାଙ୍କ ମୃତ୍ୟୁ ପରେ ତତ୍କାଳୀନ ବଙ୍ଗ-ବିହାର-ଓଡ଼ିଶାର ଛୋଟ ଲାଟ୍‌ସାହେବଙ୍କ ସହାୟତାରେ ସେ ବିଦ୍ୟା ଅଧ୍ୟୟନ କରିଥିଲେ । ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜରୁ ଯାଇ କଟକରେ ଥିବା 'ମୟୂରଭଞ୍ଜ ଭବନ'ରେ ଗୁରୁ ବ୍ରେଟାମ୍ କିଡେଲ୍ ସାହେବଙ୍କ ପାଖରେ ଦୀର୍ଘ ୧୨ ବର୍ଷ କାଳ ରହି ବିଦ୍ୟା ଅଧ୍ୟୟନ କରିଥିଲେ । ସେ ଉଭୟ ଗୋବିନ୍ଦଚନ୍ଦ୍ର ମହାପାତ୍ର ଓ ମିଷ୍ଟର କିଡେଲ୍‌ଙ୍କ ତତ୍ତ୍ୱାବଧାନରେ ଅଧ୍ୟୟନ କରି ୧୮୮୮ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ଏହା ପରେ ସେ ରେଭେନ୍ସା କଲେଜରେ ଏଫ.ଏ. ପଢ଼ି ପାଶ୍ କରିଥିଲେ । ବି.ଏ. ପଢୁଥିବା ସମୟରେ ସେ ସାବାଳକ ହୋଇ ରାଜଗାଦିରେ ବସିବାରୁ ସେ ବି.ଏ. ପରୀକ୍ଷା ଦେଇ ପାରିନଥିଲେ । ତାଙ୍କର ଇଂରାଜୀରେ ବଡ଼ ଦକ୍ଷତା ଥିଲା, ଖେଳିବା ଏବଂ ଶିକାର କରିବାରେ ତାଙ୍କର ପିଲାଦିନୁ ପ୍ରିୟତା ଥିଲା । ସେ ଜଣେ ନିର୍ଭୀକ ସାହସୀ ରାଜକୁମାର ହିସାବରେ ଓଡ଼ିଶାରେ ପରିଚିତ ଥିଲେ ।

୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜ ରାଜ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ସେ ରାଜ୍ୟର ମଙ୍ଗଳ ତଥା ପ୍ରଜାଙ୍କ ହିତ ପାଇଁ ସର୍ବଦା ଚେଷ୍ଟିତ ଥିଲେ । ଶ୍ରୀରାମଚନ୍ଦ୍ର ଜଣେ ସରଳ

ଓ ଅମାୟିକ ବ୍ୟକ୍ତି ଭାବେ ପରିଚିତ ଥିଲେ । ଗର୍ବ, ଅହଙ୍କାର ତାଙ୍କ ହୃଦୟରେ ସ୍ଥାନ ପାଇ ନଥିଲା । ଛାତ୍ର ବୟସରେ ସହପାଠୀଙ୍କ ସହିତ ସରଳ ଭାବରେ ମିଶୁଥିଲେ । ପାଠ ପଢୁଥିବା ସମୟରେ ସେ ଅନେକ ସ୍ଥାନ ବୁଲି ଯାଇଥିଲେ । ମାତ୍ର ରାଜବେଶ ବା ରାଜ ଢଙ୍ଗଢ଼ାଙ୍ଗରେ ସେ ଯିବାକୁ ଇଚ୍ଛା କରୁନଥିଲେ । ତାଙ୍କର ଏହି ସରଳ ପ୍ରକୃତି ଯୋଗୁଁ ସେ ସବୁଠାରେ ସମସ୍ତଙ୍କର ଅତି ପ୍ରିୟପାତ୍ର ହୋଇଥିଲେ । ପ୍ରଜା ପାଳନ ରାଜାର ଧର୍ମ, ଏ କଥା ଶ୍ରୀରାମଚନ୍ଦ୍ରଙ୍କୁ ଖୁବ୍ ଭଲଭାବେ ଜଣାଥିଲା । ରାଜଦଣ୍ଡ ଧରିବା ପରେ ଶ୍ରୀରାମଚନ୍ଦ୍ର ରାଜନୀତି ଓ ଦର୍ଶନଶାସ୍ତ୍ରକୁ ଭଲକରି ପଢ଼ିବାରେ ଲାଗିଲେ । ନିଜ ରାଜ୍ୟକୁ ଏକ ଆଦର୍ଶ ରାଜ୍ୟ କରି ଗଢ଼ିବା ପାଇଁ ସେ ବରାବର ଚେଷ୍ଟା କରୁଥିଲେ । ଗୁଣୀ ଓ ଉଦାର ଲୋକଙ୍କୁ ପାଖରେ ରଖି ସୁଚାରୁରୂପେ ରାଜ୍ୟ ଶାସନ କରୁଥିଲେ । ଏହି ସମୟରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ କାର୍ଯ୍ୟଶୈଳୀ ସମଗ୍ର ରାଜ୍ୟରେ ଗୁଞ୍ଜରିତ ହେଉଥିଲା । ତାଙ୍କ ଗୁଣରେ ମୁଗ୍ଧ ହୋଇ ଶ୍ରୀରାମଚନ୍ଦ୍ର ତାଙ୍କୁ ରାଜ୍ୟ ସରକାରଙ୍କ ଓକିଲ ପଦରେ ନିଯୁକ୍ତ କରିଥିଲେ । ପଣ୍ଡିତ ଗୋପବନ୍ଧୁ ସେତେବେଳେ ସକଳ କାର୍ଯ୍ୟରେ ତାଙ୍କର ପରମ ସଖା ରୂପେ ପରାମର୍ଶଦାତା ଥିଲେ । ଶ୍ରୀରାମଚନ୍ଦ୍ର ଓ ଗୋପବନ୍ଧୁଙ୍କ ମଧ୍ୟରେ ଏପରି ଘନିଷ୍ଠ ବନ୍ଧୁତା ଥିଲା, ଯେକୌଣସି କାର୍ଯ୍ୟ କଲାବେଳେ ଶ୍ରୀରାମଚନ୍ଦ୍ର ଗୋପବନ୍ଧୁଙ୍କ ପରାମର୍ଶ ନେଉଥିଲେ ।

ରାଜା ହେବାର ୪ ବର୍ଷ ପରେ ୧୮୯୬ ମସିହାରେ ଶ୍ରୀରାମଚନ୍ଦ୍ରଙ୍କର ବିବାହ ଲକ୍ଷ୍ମୀ କୁମାରୀଙ୍କ ସହିତ ହୋଇଥିଲା । ଗଣତାନ୍ତ୍ରିକ ଉପାୟରେ ଶାସନ ପରିଚାଳନା ପାଇଁ ସେ ଷ୍ଟେଟ୍ କାଉନ୍‌ସିଲ୍ ଗଠନ କରିଥିଲେ ଏବଂ ସେଥିରେ ସେ ସରକାରୀ ଓ ବେସରକାରୀ ବ୍ୟକ୍ତିବିଶେଷଙ୍କୁ ସଦସ୍ୟଭାବେ ଗ୍ରହଣ କରିଥିଲେ । ପ୍ରଜା ହିତକର ସମସ୍ତ କାର୍ଯ୍ୟ ପାଇଁ କାଉନ୍‌ସିଲ୍ ମାଧ୍ୟମରେ ଆଇନର ସଂଶୋଧନ କରିଥିଲେ । ରାଜ୍ୟ ଶାସନର ସୁବିଧା ପାଇଁ ସେ ପ୍ରଥମ କରି ସମଗ୍ର ରାଜ୍ୟକୁ ୪ଟି ବିଭାଗରେ ବିଭକ୍ତ କରିଥିଲେ । ଇଂରେଜ ଶାସନ ଢାଞ୍ଚାରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ପୋଲିସ୍ ବିଭାଗରେ ନୂତନ ସଂସ୍କାର ଆଣିଥିଲେ । ତାଙ୍କର ପିତାଙ୍କ ଅମଳରେ ରାଜ୍ୟର ରାଜସ୍ୱ ୪ ଲକ୍ଷ ଟଙ୍କା ଥିଲା କିନ୍ତୁ ଶାସନକୁ ସୁନିୟନ୍ତ୍ରିତ କରିବା ପରେ ରାଜସ୍ୱ ପରିମାଣ ୧୪ ଲକ୍ଷ ଟଙ୍କାକୁ ବୃଦ୍ଧି ପାଇଥିଲା ।

ମୟୂରଭଞ୍ଜର ଅରଣ୍ୟ ସମ୍ପଦ ଓ ଖଣିଜ ସମ୍ପଦର ସେ ପୁନର୍ମୂଲ୍ୟାୟନ କରିଥିଲେ ଏବଂ ତାଙ୍କ ଅମଳରେ ବୈଜ୍ଞାନିକ ଉପାୟରେ ଲୌହ ଉତ୍ପାଦନ ଆରମ୍ଭ ହୋଇଥିଲା । ରାଜକୋଷରୁ ୬ ଲକ୍ଷ ଟଙ୍କା ବ୍ୟୟ କରି ସେ ହଳଡିହ ଓ ହଳଦିଆ ନାମକ ୨ଟି ସ୍ଥାନରେ ଦୁଇଟି ବୃହତ୍ ଜଳଭଣ୍ଡାର ସ୍ଥାପନ କରିଥିଲେ । ତାଙ୍କ ରାଜ୍ୟରେ ଥିବା ଜଳପ୍ରପାତମାନଙ୍କରୁ ବିଦ୍ୟୁତ୍ ଉତ୍ପାଦନ କରିବା ପାଇଁ ସେ ପ୍ରୟାସୀ ହୋଇଥିଲେ । ରୂପ୍‌ସାଠାରୁ ବାରିପଦା ପର୍ଯ୍ୟନ୍ତ ଯେଉଁ ରେଳଲାଇନ୍ ଅଛି, ତାହା ମହାରାଜା ଶ୍ରୀରାମଚନ୍ଦ୍ରଙ୍କର କୀର୍ତ୍ତି । ଏଥିପାଇଁ ୬ ଲକ୍ଷ ଟଙ୍କା ବ୍ୟୟ ହୋଇଥିଲା ଏବଂ ଏହାର ଶୁଭ ଉଦ୍‌ଘାଟନ ପାଇଁ ସେତେବେଳର ଛୋଟ ଲାଟ୍‌ସାହେବ ବାରିପଦା ଆସିଥିଲେ । ଶାସନର ଅଳ୍ପ ଦିନ ମଧ୍ୟରେ ରାଜ୍ୟରେ ୫୦୦ ମାଇଲ ରାସ୍ତା ନିର୍ମାଣ କରାଇଥିଲେ । ଶିକ୍ଷା କ୍ଷେତ୍ରରେ ସେ ପର୍ଯ୍ୟାପ୍ତ ଧନ ବ୍ୟୟ କରିଥିଲେ ଓ ପ୍ରାଇମେରୀ ସ୍କୁଲ ସଂଖ୍ୟା ୪୪ରୁ ୪୦୦କୁ ବୃଦ୍ଧି କରାଇଥିଲେ । କାଠ, ପଥର, ମଠା, ଟସର ଶିଳ୍ପ ଆଦି ବିଷୟରେ ସେ ଯଥେଷ୍ଟ ଆଗ୍ରହ ପ୍ରକାଶ କରି ପ୍ରଜାମାନଙ୍କୁ ଅର୍ଥ ସାହାଯ୍ୟ ଦେଇ କଳକାରଖାନାମାନ ବସାଇଥିଲେ । ସେ ରାଜଧାନୀ ବାରିପଦାରେ ଏକ ଦୁଷ୍ପ୍ରାପ୍ୟ ପୁସ୍ତକାଳୟ, ଡାକ୍ତରଖାନା ଆଦି ବହୁ ଲୋକହିତକର କାର୍ଯ୍ୟ କରିଥିଲେ । ଜମି ବନ୍ଦୋବସ୍ତ ଓ ସ୍ୱତ୍ୱ ନିର୍ଦ୍ଧାରଣରେ ଚାଷୀ ଓ କୃଷକ ଯେପରି ଉପକୃତ ହେବେ ସେ ଦିଗରେ ପ୍ରଗାଢ଼ ଉଦ୍ୟମ ଚଳାଇଥିଲେ । ମାତ୍ର ୨୦ ବର୍ଷ ଶାସନକାଳ ମଧ୍ୟରେ ଜଣେ ପ୍ରଜାନୁରଞ୍ଜନ ରାଜା ହିସାବରେ ସେ ସମଗ୍ର ଭାରତରେ ଖ୍ୟାତିଲାଭ କରିଥିଲେ । ଶ୍ରୀରାମଚନ୍ଦ୍ରଙ୍କର

ଏହି ଶାସନ ପ୍ରଣାଳୀ ଦେଖି ଇଂରେଜ ସରକାର ତାଙ୍କୁ 'ମହାରାଜା' ଉପାଧି ପ୍ରଦାନ କରିଥିଲେ । ଏକ ଆଦର୍ଶ ରାଜ୍ୟ ଗଠନ କରିବା ପାଇଁ ସେ ପୃଥିବୀ ଭ୍ରମଣରେ ବାହାରି ଥିଲେ । ୧୯୧୦ ମସିହା ମେ ମାସ ୮ ତାରିଖରେ ଏହି ଯାତ୍ରା ଆରମ୍ଭ ହେଲା । ପ୍ରଥମେ ସେ ଚୀନ୍ ପରିଭ୍ରମଣ କରି ତା'ପରେ ଜାପାନ, ଆମେରିକା ଓ ଇଂଲଣ୍ଡ ପ୍ରଭୃତି ସ୍ଥାନକୁ ଯାଇ ସେଠାରୁ ସବିଶେଷ ଜ୍ଞାନ ଆହରଣ କରିବା ପରେ ତାହା କିଭଳି ଭାବରେ ଲୋକହିତକର କାର୍ଯ୍ୟରେ କାର୍ଯ୍ୟକାରୀ କରାଯାଇ ପାରିବ, ସେ ଦିଗରେ ପ୍ରଗାଢ଼ ଉଦ୍ୟମ କରିଥିଲେ ।

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶାକୁ ଅଧିକାର କରିଥିଲେ । ଠିକ୍ ତା'ର ୧୦୦ ବର୍ଷ ପରେ ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ ଏକାଠି କରିବା ପାଇଁ ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖରେ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ ବସିଲା । ମୟୂରଭଞ୍ଜର ମୁକୁଟମଣି ଉତ୍କଳ ଜନନୀର ଆଶା ଭରସାର ପାତ୍ର ମହାରାଜା ଶ୍ରୀରାମଚନ୍ଦ୍ର ଏହି ସମ୍ମିଳନୀର ସଭାପତି ହେଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ମାତୃଭୂମି ଓଡ଼ିଶାକୁ ଏପରି ପ୍ରାଣର ସହିତ ଭଲ ପାଉଥିଲେ ତାହା ତାଙ୍କର ସେହି ସମୟର ବକ୍ତୃତାରୁ ଜଣାପଡ଼େ । ସେ କହିଥିଲେ, ''ସ୍ୱଦେଶ ପ୍ରତି ଯେପରି ସ୍ନେହ, ସେହିପରି ମାତୃଭାଷା ପ୍ରତି ସ୍ନେହ କରିବା ଦରକାର । ଓଡ଼ିଆ ଭାଷାର ଯେତେଦୂର ଉନ୍ନତି ହେବା କଥା ସେତେଦୂର ଉନ୍ନତି ହୋଇନାହିଁ ତଥାପି ଉତ୍କଳର ସାହିତ୍ୟାକାଶରେ ଉଜ୍ଜ୍ୱଳ ତାରକାର ଅଭାବ ନାହିଁ ।'' ଏଥିରୁ ଶ୍ରୀରାମଚନ୍ଦ୍ରଙ୍କର ସ୍ୱଦେଶ ପ୍ରୀତି ଫୁଟି ଉଠିଛି । ଓଡ଼ିଶାର ଅନ୍ଧକାରମୟ ଯୁଗରେ ଜାତିପ୍ରାଣର ଆଶାର ଦୀପ ଜାଳିବା ପାଇଁ ଜାତିକୁ ନୂଆ ଭାବରେ ନୂଆ ବାଟରେ ଚଳେଇବା ପାଇଁ ସେ ଉଦ୍ୟମ ଆରମ୍ଭ କରିଥିଲେ । ତାଙ୍କର ଆଶା ପୂର୍ଣ୍ଣ ହେବା ପୂର୍ବରୁ ଆଶାଦୀପ ଲିଭିଗଲା । ଉତ୍କଳ ଜନନୀର ଲୁହ ସେ ପୋଛି ପାରିଲେ ନାହିଁ । ୧୯୧୨ ମସିହା ଫେବୃଆରୀ ମାସ ୨୨ ତାରିଖରେ ତାଙ୍କର ଜୀବନଦୀପ ଲିଭିଗଲା । ରାଜକୁଳରେ ଜନ୍ମ ହୋଇ ମଧ୍ୟ ସେ ଅତ୍ୟନ୍ତ ସରଳ, ନମ୍ର, ସାହସୀ ଓ ପରମ ଜ୍ଞାନୀ ଥିଲେ । ଧନ-ସମ୍ପଦ ମଧ୍ୟରେ ବଢ଼ି ରାଜ ସିଂହାସନରେ ବସି ମଧ୍ୟ ଶ୍ରୀରାମଚନ୍ଦ୍ର ଦିନେହେଲେ ଦେଶବାସୀଙ୍କଠାରୁ ଅଲଗା ବୋଲି ମନେ କରୁ ନଥିଲେ । ତାଙ୍କର ଦେଶପ୍ରୀତିର ପଟ୍ଟାନ୍ତର ନାହିଁ । ସର୍ବଧର୍ମ ସମନ୍ୱୟ ମତବାଦ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ସେ କହୁଥିଲେ, '' ହିନ୍ଦୁ ହେଉ ଅଥବା ମୁସଲମାନ ହେଉ, କି ଖ୍ରୀଷ୍ଟିଆନ କି ବୌଦ୍ଧ ବା ଅପର ଧର୍ମାବଲମ୍ବୀ ହେଉ, ସମସ୍ତେ ଏକ ପରମେଶ୍ୱରଙ୍କ ସନ୍ତାନ ।''

ଶ୍ରୀରାମଚନ୍ଦ୍ର ଭଞ୍ଜ ଜଣେ ଦେଶ ହିତୈଷୀ, ଜାତୀୟତାବାଦୀ ଜନନାୟକ ଥିଲେ । ବାସ୍ତବିକ୍, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଖାଲି ମୟୂରଭଞ୍ଜର ନୁହନ୍ତି, ସମଗ୍ର ଓଡ଼ିଶାର ଆଶା ଭରସାର ପାତ୍ର ଥିଲେ । ଓଡ଼ିଆ ଜାତିର ଉନ୍ନତି ନିମିତ୍ତ ତାଙ୍କର ବହୁବିଧ ଉଦ୍ୟମ ଅବିସ୍ମରଣୀୟ । ଓଡ଼ିଶାର ବହୁ ଲୋକହିତକର ଅନୁଷ୍ଠାନ ତାଙ୍କ ଅମୂଲ୍ୟ ଅବଦାନରେ ସୁପ୍ରତିଷ୍ଠିତ ଓ ପବିତ୍ର ସ୍ମୃତିରେ ମହିମାମଣ୍ଡିତ । ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଆଦର୍ଶ ଚରିତ୍ରବତ୍ତା, ସରଳତା, ନମ୍ରତା, ସ୍ୱଭାବ ଓ ବ୍ୟକ୍ତିତ୍ୱ ସର୍ବାଧିକ ପ୍ରଶଂସନୀୟ । ଉତ୍କଳ ଜନନୀର ଏହି ଯୋଗଜନ୍ମା ସୁଯୋଗ୍ୟ ସନ୍ତାନ ଆଜି ସମଗ୍ର ଓଡ଼ିଆ ଜାତିର ଚିର ନମସ୍ୟ ।



# ବାର୍ଷିକ ସୂଚୀ – ୨୦୨୩

## ଜାନୁଆରୀ–୨୦୨୩

## ଫେବୃଆରୀ–ମାର୍ଚ୍ଚ–୨୦୨୩

## ଅପ୍ରେଲ–୨୦୨୩

## ମଇ–ଜୁନ୍–୨୦୨୩
## (ରଥଯାତ୍ରା ବିଶେଷାଙ୍କ)

## ଜୁଲାଇ–ଅଗଷ୍ଟ–୨୦୨୩

## ସେପ୍ଟେମ୍ବର–ଅକ୍ଟୋବର–୨୦୨୩

## ନଭେମ୍ବର–୨୦୨୩
## (ମିଲେଟ୍ସ ବିଶେଷାଙ୍କ)

## ନଭେମ୍ବର–୨୦୨୩





# ଜିଲ୍ଲା ସ୍ତରରେ ଥିବା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁ ପୁସ୍ତକର ବିକ୍ରୟ କେନ୍ଦ୍ର

| କ୍ରମିକ ସଂଖ୍ୟା | ଜିଲ୍ଲାର ନାମ | ପୁସ୍ତକ ବିକ୍ରୟ କେନ୍ଦ୍ର |
|---|---|---|
| ୧. | ଅନୁଗୋଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଅନୁଗୋଳ<br>ଯୋଗାଯୋଗ ନଂ–୯୯୩୭୨୩୫୯୯୫ |
| ୨. | ବାଲେଶ୍ୱର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଚେରିହତା, ବାଲେଶ୍ୱର<br>ଯୋଗାଯୋଗ ନଂ–୯୮୬୧୧୫୩୩୯୯ |
| ୩. | ବରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ,ଗାନ୍ଧୀ ଛକ ପାଖ, ବରଗଡ଼<br>ଯୋଗାଯୋଗ ନଂ–୯୪୩୭୨୪୦୫୩୦ |
| ୪. | ଭଦ୍ରକ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଆପାଟବିନ୍ଧ ଛକ, ବାଲେଶ୍ୱର<br>ଯୋଗାଯୋଗ ନଂ–୯୪୩୭୩୨୦୭୬୨ |
| ୫. | ବଲାଙ୍ଗିର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବଲାଙ୍ଗିର ମନୋହରପୁର ରୋଡ଼<br>ଯୋଗାଯୋଗ ନଂ–୯୪୩୭୦୮୩୨୫୯/ ୭୦୦୮୮୬୯୬୭୫ |
| ୬. | ବୌଦ୍ଧ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବୌଦ୍ଧ<br>ଯୋଗାଯୋଗ ନଂ–୯୯୩୮୦୪୮୫୦୦ |
| ୭. | କଟକ | ପଢ଼ିଆରି ପାଠାଗାର, ଚୌଧୁରୀ ବଜାର, କଟକ<br>ଯୋଗାଯୋଗ ନଂ–୯୮୨୭୯୬୧୨୪୧ |
| ୮. | ଦେବଗଡ଼ | ସୂଚନା କେନ୍ଦ୍ର ଓ ପାଠାଗାର, ଦେବଗଡ଼<br>ଯୋଗାଯୋଗ ନଂ–୯୪୩୭୮୩୨୯୫୦ |
| ୯. | ଢେଙ୍କାନାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଢେଙ୍କାନାଳ<br>ଯୋଗାଯୋଗ ନଂ–୮୫୯୬୦୬୦୪୦୯ |

| | | |
|---|---|---|
| ୧୦. | ଗଜପତି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାରଳାଖେମୁଣ୍ଡି |
| | | ଯୋଗାଯୋଗ ନଂ– ୯୪୩୮୭୬୫୭୨୭ |
| ୧୧. | ଗଞ୍ଜାମ | କ) ସୂଚନା କେନ୍ଦ୍ର ଓ ପାଠାଗାର, ବ୍ରହ୍ମପୁର |
| | | ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଛତ୍ରପୁର |
| | | ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଭଞ୍ଜନଗର |
| | | ଘ) ସୂଚନା କେନ୍ଦ୍ର ଓ ପାଠାଗାର, ଆସିକା |
| | | ଙ) ସୂଚନା କେନ୍ଦ୍ର ଓ ପାଠାଗାର, ଦିଗପହଣ୍ଡି |
| | | ଯୋଗାଯୋଗ ନଂ– ୯୪୩୮୫୪୧୨୨୨ |
| ୧୨. | ଜଗତସିଂହପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଜଗତସିଂହପୁର |
| | | ଯୋଗାଯୋଗ ନଂ–୯୮୫୩୩୪୫୩୧୪ |
| ୧୩. | ଯାଜପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଯାଜପୁର |
| | | ଯୋଗାଯୋଗ ନଂ– ୯୪୩୭୨୨୭୬୪୬ |
| ୧୪. | ଝାରସୁଗୁଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଝାରସୁଗୁଡ଼ା |
| | | ଯୋଗାଯୋଗ ନଂ– ୮୭୬୩୭୯୬୭୪୭ |
| ୧୫. | କଳାହାଣ୍ଡି | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଳାହାଣ୍ଡି |
| | | ଖ) ସୂଚନା କେନ୍ଦ୍ର ଓ ପାଠାଗାର, କେସିଙ୍ଗା |
| | | ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଧର୍ମଗଡ଼ |
| | | ଯୋଗାଯୋଗ ନଂ–୮୨୪୯୪୨୦୦୨୬ |
| ୧୬. | କନ୍ଧମାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କନ୍ଧମାଳ |
| | | ଯୋଗାଯୋଗ ନଂ–୯୪୩୭୪୯୨୪୫୯ |
| ୧୭. | କେନ୍ଦ୍ରାପଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦ୍ରାପଡ଼ା |
| | | ଯୋଗାଯୋଗ ନଂ–୬୩୭୧୮୬୧୫୭୨ |
| ୧୮. | କେନ୍ଦୁଝର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦୁଝର |
| | | ଯୋଗାଯୋଗ ନଂ–୯୪୩୭୩୩୫୨୬୩ |

| | | |
|---|---|---|
| ୧୯. | ଖୋର୍ଦ୍ଧା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାଲାହାଟ, ଖୋର୍ଦ୍ଧା<br>ଯୋଗାଯୋଗ ନଂ–୬୩୭୦୨୭୦୮୭୬ |
| ୨୦. | କୋରାପୁଟ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କୋରାପୁଟ<br>ଯୋଗାଯୋଗ ନଂ–୯୪୩୯୫୯୧୪୭୩ |
| ୨୧. | ମାଲକାନଗିରି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମାଲକାନଗିରି<br>ଯୋଗାଯୋଗ ନଂ–୮୨୬୦୬୪୨୫୧୪ |
| ୨୨. | ମୟୂରଭଞ୍ଜ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମୟୂରଭଞ୍ଜ<br>ଯୋଗାଯୋଗ ନଂ–୯୮୬୧୭୦୪୭୫୭ |
| ୨୩. | ନୂଆପଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ନୂଆପଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଖରିଆର<br>ଯୋଗାଯୋଗ ନଂ–୯୪୩୭୨୧୭୬୧୧ |
| ୨୪. | ନବରଙ୍ଗପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନବରଙ୍ଗପୁର<br>ଯୋଗାଯୋଗ ନଂ– ୯୪୩୭୪୨୭୧୫୫ |
| ୨୫. | ନୟାଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ନୟାଗଡ଼<br>ଯୋଗାଯୋଗ ନଂ–୯୦୪୦୨୫୮୮୫୮ |
| ୨୬. | ପୁରୀ | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପୁରୀ<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ସିଂହଦ୍ୱାର, ପୁରୀ<br>ଯୋଗାଯୋଗ ନଂ–୯୪୩୭୩୦୨୬୧୮ |
| ୨୭. | ରାୟଗଡ଼ା | କ) ସୂଚନା କେନ୍ଦ୍ର ଓ ପାଠାଗାର, ରାୟଗଡ଼ା<br>ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଗୁଣୁପୁର<br>ଯୋଗାଯୋଗ ନଂ–୯୪୩୮୬୪୧୭୮୫ |
| ୨୮. | ସମ୍ବଲପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସମ୍ବଲପୁର<br>ଯୋଗାଯୋଗ ନଂ–୯୦୯୦୫୦୮୫୨୮ |

| | | |
|---|---|---|
| ୨୯. | ସୁବର୍ଣ୍ଣପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁବର୍ଣ୍ଣପୁର |
| | | ଯୋଗାଯୋଗ ନଂ–୯୯୩୮୩୪୬୬୮ |
| ୩୦. | ସୁନ୍ଦରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ସୁନ୍ଦରଗଡ଼ |
| | | ଯୋଗାଯୋଗ ନଂ–୯୭୭୬୧୦୯୭୭୨ |
| ୩୧. | ରାଉରକେଲା | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ରାଉରକେଲା |
| | | ଖ) ସିଟି ପାଠାଗାର, ମ୍ୟୁନିସିପାଲିଟି କର୍ପୋରେସନ୍ |
| | | ଯୋଗାଯୋଗ ନଂ–୮୮୯୫୫୫୨୮୭୪ |
| ୩୨. | ଜୟଦେବ ଭବନ | ରାଜ୍ୟ ସୂଚନା କେନ୍ଦ୍ର, ଭୁବନେଶ୍ୱର |
| | | ଯୋଗାଯୋଗ ନଂ–୭୦୬୪୬୭୩୪୩୮ |






ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଭାସି ମାଧ୍ୟମରେ ମୟୂରଭଞ୍ଜ, ସମ୍ବଲପୁର ଓ ମାଲକାନଗିରି ଜିଲ୍ଲାରେ **ଆମ ଓଡ଼ିଶା ନବୀନ ଓଡ଼ିଶା** କାର୍ଯ୍ୟକ୍ରମର ଶୁଭାରମ୍ଭ କରୁଛନ୍ତି । ଏହି ଅବସରରେ ୫–ଟି ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍ ଉପସ୍ଥିତ ଅଛନ୍ତି ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଭାସି ମାଧ୍ୟମରେ
ପ୍ରଦ୍ୟୁମ୍ନ ବଳ ରାଜ୍ୟସ୍ତରୀୟ ଜନ୍ମବାର୍ଷିକୀ ପାଳନ ଉତ୍ସବରେ ଯୋଗ ଦେଇଛନ୍ତି ।



ନୂଆଦିଲ୍ଲୀର ରାଷ୍ଟ୍ରପତି ଭବନଠାରେ ମାନ୍ୟବର ରାଷ୍ଟ୍ରପତି ଶ୍ରୀମତୀ ଦ୍ରୌପଦୀ ମୁର୍ମୁଙ୍କୁ
ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ରଘୁବର ଦାସ ।



ନବୀନ ନିବାସଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ସିଙ୍ଗାପୁରରୁ ଆସିଥିବା
ୱାର୍ଲ୍ଡ ସ୍କିଲ୍ ସେଣ୍ଟରର ୧୨ ଜଣିଆ ପ୍ରତିନିଧିମଣ୍ଡଳୀ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।




ଭୁବନେଶ୍ୱରର ଜନତା ମଇଦାନଠାରେ ଅନ୍ତର୍ଜାତୀୟ ମିଲେଟ୍ସ ସମ୍ମିଳନୀ ୨୦୨୩ ଉଦ୍‌ଘାଟନ ଅବସରରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।




ଭୁବନେଶ୍ୱର ୟୁନିଟ୍ ୯ ଠାରେ ଆୟୋଜିତ **ସୁରଭି ୨୦୨୩**ର ଉଦ୍‌ଯାପନୀ ଉତ୍ସବରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।




ଭୁବନେଶ୍ୱରଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ରଘୁବର ଦାସ ଅନ୍ତର୍ଜାତୀୟ ମିଲେଟ୍ସ ସମ୍ମିଳନୀର ଉଦ୍‌ଯାପନୀ ଉତ୍ସବରେ **ଉତ୍କଳ ପ୍ରସଙ୍ଗ** ଓ **ଓଡ଼ିଶା ରିଭ୍ୟୁ**ର ସ୍ୱତନ୍ତ୍ର ବିଶେଷାଙ୍କ ଉନ୍ମୋଚନ କରୁଛନ୍ତି ।



ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମ୍‌ଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପତାକା ଦେଖାଇ ୩୪୯ଟି ନୂତନ ଆମ୍ବୁଲାନ୍ସର ଶୁଭାରମ୍ଭ କରୁଛନ୍ତି ।



ଓଡ଼ିଶା ବିଧାନସଭା ପରିସରରେ ଡ. ହରେକୃଷ୍ଣ ମହତାବଙ୍କ ଜନ୍ମବାର୍ଷିକୀ ପାଳନ ଅବସରରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି ।




ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ ଭୁବନେଶ୍ୱର ମେଟ୍ରୋ ରେଲ୍ କର୍ପୋରେସନ୍
ଲିଃ. (ବି.ଏମ୍.ଆର୍.ସି.ଏଲ୍) ଏବଂ ଦିଲ୍ଲୀ ମେଟ୍ରୋ ରେଲ୍ କର୍ପୋରେସନ୍ ଲିଃ. (ଡି.ଏମ୍.ଆର୍.ସି.ଏଲ୍)
ମଧ୍ୟରେ ରାଜିନାମା ସ୍ୱାକ୍ଷରିତ ।




ଭୁବନେଶ୍ୱର ଚନ୍ଦ୍ରଶେଖରପୁରସ୍ଥିତ ବୁଦ୍ଧବିହାରଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା **ସୁଲଭ ବାସଗୃହ ପ୍ରକଳ୍ପ**ର ଶୁଭ ଉଦ୍‌ଘାଟନ ।




ନବୀନ ନିବାସଠାରେ ଦୁବାଇ ଗସ୍ତ ପୂର୍ବରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ମିଶନ ଶକ୍ତି ବ୍ଲକ୍ ସ୍ତରୀୟ ମହାସଂଘ ଗୋଷ୍ଠୀର ପ୍ରତିନିଧିମଣ୍ଡଳୀ  ସାକ୍ଷାତ କରୁଛନ୍ତି ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଆଭାସି ମାଧ୍ୟମରେ ରାୟଗଡ଼ା ଜିଲ୍ଲାରେ **ଲକ୍ଷ୍ମୀ ବସ୍ ଯୋଜନା**ର ଶୁଭାରମ୍ଭ କରୁଛନ୍ତି ।



ପୁରୀଠାରେ **ଶ୍ରୀମନ୍ଦିର ପରିକ୍ରମା ପ୍ରକଳ୍ପ**ର ଅଗ୍ରଗତି ସଂପର୍କରେ ସମୀକ୍ଷା କରୁଛନ୍ତି ୫-ଟି ଅଧ୍ୟକ୍ଷ ଶ୍ରୀ ଭି.କେ. ପାଣ୍ଡିଆନ୍ ।




ଭୁବନେଶ୍ୱର କଳିଙ୍ଗ ଷ୍ଟାଡିୟମ୍‌ଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ
ନବନିଯୁକ୍ତ ୩୭୩୨ ଜଣ ନର୍ସିଂ ଅଫିସରଙ୍କୁ ନିଯୁକ୍ତି ପତ୍ର ପ୍ରଦାନ କରୁଛନ୍ତି ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ନବୀନ ନିବାସଠାରେ ତାମିଲନାଡୁ ଟେଙ୍କାସିର
ମାନ୍ୟବର ସାଂସଦ ମିଃ. ଧନୁଷ୍ ଏମ୍. କୁମାର ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।




ନବୀନ ନିବାସଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜର୍ମାନୀର କନ୍ସୁଲ୍ ଜେନେରାଲ୍  ବାର୍ବରା ଭୋସ୍‌ଙ୍କୁ **କୋଣାର୍କ ଚକର ଏକ ସ୍ମରଣିକା ପ୍ରଦାନ କରୁଛନ୍ତି ।**




ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଆୟୋଜିତ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୨୩ରେ ଓଡ଼ିଶା ମଣ୍ଡପ ।



ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଆୟୋଜିତ ଭାରତ ଅନ୍ତର୍ଜାତୀୟ ବାଣିଜ୍ୟ ମେଳା–୨୦୨୩ ଅବସରରେ ଓଡ଼ିଶା ମଣ୍ଡପ ଉଦ୍‌ଘାଟନ କରୁଛନ୍ତି ମାନ୍ୟବର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା, ସାଧାରଣ ଉଦ୍ୟୋଗ ଏବଂ ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା । ଏହି ଅବସରରେ ସୂଚନା ଓ ଲୋକସଂପର୍କ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସଂଜୟ କୁମାର ସିଂ, ନୂଆଦିଲ୍ଲୀଠାରେ ଅବସ୍ଥାପିତ ସ୍ୱତନ୍ତ୍ର ଆବାସିକ ଆୟୁକ୍ତ ଶ୍ରୀ ରବି କାନ୍ତ, ନିର୍ଦ୍ଦେଶକ ଶ୍ରୀ ସରୋଜ କୁମାର ସାମଲ ଏବଂ ବରିଷ୍ଠ ପଦାଧିକାରୀ ଉପସ୍ଥିତ ଅଛନ୍ତି ।

*Printed by the Director,Printing,Stationery & Publication, Government of Odisha,Cuttack.
Published by the Director, Information & Public Relations Department
on behalf of Government of Odisha in Information & Public Relations Department
and Printed at Odisha Government Press, Madhupatana,Cuttack.* ***Editor : Kasturi Mohapatra.***